

# କବି ପ୍ରସନ୍ନ ପାଟ୍ଟଶାଣୀଙ୍କ କବିତାର କାବ୍ୟିକ ବିବର୍ତ୍ତନ

ଡଃ କାଳନ୍ଦୀ ଚରଣ ସାହୁ

# କବି ପ୍ରସନ୍ନ ପାଟଶାଣୀଙ୍କ କବିତାର କାବ୍ୟିକ ବିବର୍ତ୍ତନ

ଡଃ କାଳନ୍ଦୀ ଚରଣ ସାହୁ

ପଶ୍ଚିମା ପବ୍ଲିକେଶନ୍ସ
୮, ୟୁନିଟ୍ - ୬, ଭୁବନେଶ୍ୱର

# କବି ପ୍ରସନ୍ନ ପାଟ୍ଟଶାଣୀଙ୍କ
# କବିତାର କାବ୍ୟିକ ବିବର୍ତ୍ତନ

**ଡଃ କାଳନ୍ଦୀ ଚରଣ ସାହୁ**

ପ୍ରକାଶକ : ପଶ୍ଚିମା ପବ୍ଲିକେଶନ୍‌ସ, ୮, ୟୁନିଟ୍-୬, ଭୁବନେଶ୍ୱର-୧
ଅକ୍ଷର ବିନ୍ୟାସ : ପଶ୍ଚିମା ପବ୍ଲିକେଶନ୍‌ସ, ୮, ୟୁନିଟ୍-୬, ଭୁବନେଶ୍ୱର-୧
ପ୍ରଚ୍ଛଦ : ଅଶୋକ ମହାନ୍ତି
ମୁଦ୍ରଣ : ଡୁଡୁଲି ପ୍ରୋସେସ୍ ଏଣ୍ଡ୍ ଅଫ୍‌ସେଟ୍, ବାପୁଜୀ ନଗର,
ଫୋନ୍-୪୦୦୯୬୬
ପ୍ରଥମ ପ୍ରକାଶ : ଫେବୃଆରୀ, ୧୯୯୮
ମୂଲ୍ୟ : ୫୦ ଟଙ୍କା

KABI PRASANNA PATTASANINKA
KABITARA KABYIKA BIBARTANA

A thesis by Dr. Kalandi Charana Sahoo
Lecturer in Oriya, P.S.College, Balakati, Khurda

publisher : Paschima Publications.

" ବୋଉ, ବାପାଙ୍କ ଚରଣ ତଳେ
ସାନ ପୁଅ କାଳିଆର
ଏ ପ୍ରଥମ ଅର୍ଘ୍ୟ "

# ବିଷୟ ନିବେଶ

# ମୁଖବନ୍ଧ

ସତୁରୀ ଉତ୍ତର କାଳରେ ପାଶ୍ଚାତ୍ୟ କାବ୍ୟଶୈଳୀ ପ୍ରଭାବିତ ଓଡ଼ିଆ କବିତାକୁ ଏକ କାବ୍ୟିକ ସଙ୍କଟ ମଧ୍ୟରୁ ମୁକ୍ତି ଦେଇଥିବା କବିମାନଙ୍କ ମଧ୍ୟରୁ କବି ପ୍ରସନ୍ନ ପାଟ୍ଟଶାଣୀ ଅନ୍ୟତମ । କାବ୍ୟଧାରାରେ ରୁଚିଗତ ଓ ଭାବଗତ ପରିବର୍ତ୍ତନ କରି ଶଂସିତ କାଳରେ ସବୁ ଶ୍ରେଣୀର ପାଠକ ମାନ୍‌ଙ୍କର ହୃଦୟକୁ ସ୍ପର୍ଶ କରି ପାରୁଥିବା ଭଳି କବିତା ରଚନା ପ୍ରୟାସର ସୂତ୍ରପାତ ହୋଇଥିଲା । ଏହାକୁ ଏକ କାବ୍ୟିକ ଆନ୍ଦୋଳନ ସ୍ତରକୁ ଉନ୍ନୀତ କରିବା ପାଇଁ ଚେଷ୍ଟା କରାଯାଉଥିଲା । ଏହି କାବ୍ୟିକ ଆନ୍ଦୋଳନର ଅନ୍ୟତମ ପୁରୋଧା ଭାବରେ କବି ପ୍ରସନ୍ନ ପାଟ୍ଟଶାଣୀଙ୍କୁ ଦେଖିବାକୁ ମିଳେ । ଏହି ସମୟରେ ଯେଉଁ ଯୁବକବି ଗୋଷ୍ଠୀ ପାଶ୍ଚାତ୍ୟ କାବ୍ୟ ଶୃଙ୍ଖଳ ଭିତରୁ ବାହାରି ଆସି ନିଜସ୍ୱ ବିଚାର ଧାରାକୁ ସଜୀବ କରାଇଛନ୍ତି, ସେମାନଙ୍କ ସମ୍ମୁଖ ଭାଗରେ ଅଛନ୍ତି କବି ପ୍ରସନ୍ନ ପାଟ୍ଟଶାଣୀ । ଓଡ଼ିଆ କବିତାରେ ମୌଳିକ ଗୁଣ ଓ ସରଳ ରୂପର ଅନୁବର୍ତ୍ତନ କରାଇ ଏହାକୁ ବିପୁଳ ପାଠକୀୟ ଆବେଦନରେ ପରିପୁଷ୍ଟ କରିବା ପାଇଁ ତାଙ୍କ ଉଦ୍ୟମ ସମକାଳର କାବ୍ୟେତିହାସରେ ଏକ ଉଲ୍ଲେଖନୀୟ ବିଷୟ ।

କବି ଶ୍ରୀ ପ୍ରସନ୍ନ ପାଟ୍ଟଶାଣୀଙ୍କର ଦୀର୍ଘ ପଚିଶ ବର୍ଷରୁ ଊର୍ଦ୍ଧ୍ୱ (୧୯୬୮ ରୁ ୧୯୯୪ ପର୍ଯ୍ୟନ୍ତ) କାବ୍ୟ ସୃଷ୍ଟିକୁ ଆଧାର କରି ମୋର ଏହି ଗବେଷଣା ନିବନ୍ଧଟି ପାଞ୍ଚଗୋଟି ପରିଚ୍ଛେଦରେ ପରିକଳ୍ପିତ ।

ଏକକ କବିଙ୍କୁ ନେଇ ମୋର ଏହି ଗବେଷଣା ନିବନ୍ଧଟି ପରିକଳ୍ପିତ । ପାଶ୍ଚାତ୍ୟ ଦେଶର ଆଲୋଚକମାନେ କବି ଟି. ଏସ୍. ଏଲିଅଟ, ଏଜରା ପାଉଣ୍ଡ, ରବର୍ଟ ଫ୍ରଷ୍ଟ, ଫରାସୀ କବି ରାମ୍ବୋ ଓ ବଦ୍‌ଲେୟାର ପ୍ରଭୃତି କବିଙ୍କ ଜୀବନୀ ଓ ସେମାନଙ୍କର ସୃଷ୍ଟି କର୍ମ ସହିତ ଆନୁଷଙ୍ଗିକ ଭାବେ ଆଲୋଚନା କରିବା ପରମ୍ପରା ପ୍ରଚଳିତ ଅଛି ।

ଏହି ନିବନ୍ଧ ରଚନାର ପରିକଳ୍ପନା ପ୍ରଥମେ ମୋ ମନରେ ଜାତ ହୋଇଥିଲା ବିଶ୍ୱଭାରତୀରେ ସ୍ନାତକୋତ୍ତର ପାଠ୍ୟକ୍ରମରେ ସାମ୍ପ୍ରତିକ କବିତା ଅଧ୍ୟୟନ କାଳରେ । ପରବର୍ତ୍ତୀ ସମୟରେ ଓଡିଶାକୁ ଫେରି ଅଧ୍ୟାପନାରେ ନିଯୁକ୍ତ ହେବା ପରେ ସ୍ୱୟଂ କବି ଓ ନେତା ଶ୍ରୀଯୁକ୍ତ ପାଢଶାଣୀଙ୍କ ସୃଷ୍ଟିଶୀଳ ଓ ଚିରଚଞ୍ଚଳ ବ୍ୟକ୍ତିତ୍ୱର ଆକର୍ଷଣରେ କବିତାର ସଜୀବ ସ୍ୱାକ୍ଷରରେ ତାଙ୍କ ବହୁସ୍ତର ବ୍ୟାପୀ ବ୍ୟକ୍ତିତ୍ୱକୁ ପ୍ରତ୍ୟକ୍ଷ କରିବାର ଅଭିପ୍ରାୟ ଘେନି ମୁଁ ଏହି ନିବନ୍ଧର ଯୋଜନା କରିଥିଲି । ପ୍ରତାପ ଶାସନ ମହାବିଦ୍ୟାଳୟରେ ଅଧ୍ୟାପନା କରିବା ସମୟରେ ମହାବିଦ୍ୟାଳୟର ମାନ୍ୟବର ସଂପାଦକ ତଥା ରାଜନୀତିଜ୍ଞ ନେତା ଶ୍ରୀଯୁକ୍ତ ସନ୍ତୋଷ କୁମାର ମହାନ୍ତି ମୋତେ ବହୁଭାବରେ ପ୍ରେରଣା ଦେବା ସହିତ  ଅନୁମତି ପ୍ରଦାନ କରିଥିବାରୁ , ମୁଁ ମୋର ଗବେଷଣା କାର୍ଯ୍ୟ ଆରମ୍ଭ କଲି । ମହାବିଦ୍ୟାଳୟ ପରିଚାଳନା କମିଟିର ମାନ୍ୟବର ସଭାପତି ଶ୍ରୀଯୁକ୍ତ ବୀରକିଶୋର ଦାଶ , କୋଷାଧ୍ୟକ୍ଷ ଶ୍ରୀଯୁକ୍ତ ବେଣୁଧର ଭୋଇ,  ସଭ୍ୟ ଶ୍ରୀଯୁକ୍ତ ବସନ୍ତ କୁମାର ସାହୁ, ଶ୍ରୀଯୁକ୍ତ ପ୍ରଦୀପ୍ତ ମହାନ୍ତି, ଆଡ୍‌ଭୋକେଟ୍  ଆତ୍ମଜୀବନୀ ଲେଖକ ଶ୍ରୀଯୁକ୍ତ ବିଜୟ କୁମାର ମହାନ୍ତି ଏ ଦିଗରେ ମୋତେ ବହୁଭାବରେ ଉତ୍ସାହିତ କରିଛନ୍ତି । ଗବେଷଣା କାର୍ଯ୍ୟରେ  ଦିଗ୍‌ଦର୍ଶନ ଦେଇ ଓ ମୋର ଗବେଷଣା  ନିବନ୍ଧ ରଚନାକୁ ସଂଶୋଧନ କରି ମୋତେ ବହୁ ଭାବରେ ଅନୁଗୃହୀତ କରିଛନ୍ତି ଓଡିଶାର ବିଶିଷ୍ଟ କବି ଓ ଗବେଷିକା ଡକ୍ଟର ଗିରିବାଳା ମହାନ୍ତି ଏବଂ ବିଶିଷ୍ଟ ଗାଳ୍ପିକ ତଥା ଗବେଷକ ଡକ୍ଟର କଇଳାଶ ପଟ୍ଟନାୟକ । ଓଡିଶା ତଥା ଆନ୍ତର୍ଜାତିକ ସ୍ତରରେ ଖ୍ୟାତି ଅର୍ଜନ କରିଥିବା  ବାଶିଷ୍ଟ ଭାଷା ତତ୍ତ୍ୱବିତ୍ ଆଦିବାସୀ ଭାଷା ସାହିତ୍ୟ ସଂସ୍କୃତିର ଗବେଷକ,ପ୍ରାବଂଧିକ ମୋର ଗୁରୁ ଡଃ ଖଗେସ୍ୱର ମହାପାତ୍ରଙ୍କର ସୁପରାମର୍ଶରେ ନିବଂଧ କାର୍ଯ୍ୟଟିକୁ ମାର୍ଜିତ କରିପାରିଥିବାରୁ ତାଙ୍କ ଚରଣ ତଳେ ମୋର ପ୍ରଣାମ । ଓଡିଶାର ସୁପ୍ରତିଷ୍ଠିତ କାବ୍ୟସମାଲୋଚକ ତଥା ଭାଷାତତ୍ତ୍ୱବିତ ଉତ୍କଳ ବିଶ୍ୱବିଦ୍ୟାଳୟର ପ୍ରଫେସର ଡଃ ବାସୁଦେବ ସାହୁ ଏବଂ ସମ୍ବଲପୁର ବିଶ୍ୱବିଦ୍ୟାଳୟର ପ୍ରଫେସର ବିଶିଷ୍ଟ କାବ୍ୟସମାଲୋଚକ ଡଃ ବୈରାଗି ଚରଣ ଜେନା ମୋର ନିବନ୍ଧଟିକୁ ଯଥାର୍ଥ ମୂଲ୍ୟାୟନ କରିଥିବାରୁ ତାଙ୍କପାଖରେ ମୁଁ କୃତଜ୍ଞ ।

ସ୍ୱୟଂ କବି ତାଙ୍କର ନିଜସ୍ୱ ଜୀବନ ଯାପନ ତଥା କାବ୍ୟିକ ଅନୁଭବ ଓ ଅଭିଜ୍ଞତାକୁ ମୌଖିକ ଭାବେ ଶୁଣାଇବା ସହିତ କେତେକ ତଥ୍ୟ ଯୋଗାଇ ଦେଇଥିବାରୁ ଏ ନିବନ୍ଧ ପ୍ରସ୍ତୁତି କରିବା ସୁଗମ ହୋଇ ପାରିଛି । ତେଣୁ  ମୁଁ ତାଙ୍କୁ ଗଭୀର କୃତଜ୍ଞତା ଜ୍ଞାପନ କରୁଛି ।

ବିଶ୍ୱଭାରତୀ ବିଶ୍ୱବିଦ୍ୟାଳୟର କର୍ତ୍ତୃପକ୍ଷ ମୋତେ ଏହି ନିବନ୍ଧ ପ୍ରସ୍ତୁତି ପାଇଁ ଅନୁମତି ପ୍ରଦାନ କରିଛନ୍ତି । ବିଶ୍ୱଭାରତୀ ଓଡିଆ ବିଭାଗର ମୁଖ୍ୟ ଡକ୍ଟର ନୀଳାଦ୍ରିଭୂଷଣ ହରିଚନ୍ଦନ ମୋର ଗବେଷଣା କାର୍ଯ୍ୟକୁ ତ୍ୱରାନ୍ୱିତ କରିଛନ୍ତି । ଏଣୁ ମୁଁ ଏମାନଙ୍କ ନିକଟରେ ଚିର କୃତଜ୍ଞ । ମୁଁ ଅଧ୍ୟାପନା କରୁଥିବା ପ୍ରତାପଶାସନ ମହାବିଦ୍ୟାଳୟ ଓ ଡିଗ୍ରୀ କଲେଜର ବର୍ତ୍ତମାନର  ଅଧ୍ୟକ୍ଷ ସାହିତ୍ୟ ସମାଲୋଚକ ଡକ୍ଟର ଉମାଚରଣ ପୂଜାରୀ, ପୂର୍ବତନ ଅଧ୍ୟକ୍ଷ ଡକ୍ଟର ସରୋଜ ପଟ୍ଟନାୟକ ଏବଂ କବି, ଶିଶୁ ସାହିତ୍ୟିକ, ଗୀତିକାର, ଚଳଚିତ୍ର କାହାଣୀ ଲେଖକ ଶ୍ରୀଯୁକ୍ତ ରଜନୀରଞ୍ଜନ ଦାଶ,  ବୟୋଜ୍ୟେଷ୍ଠ ବନ୍ଧୁ କବି, ଗାଳ୍ପିକ ଔପନ୍ୟାସିକ ଅଧ୍ୟାପକ ଅଜୟ ସ୍ୱାଇଁ ମୋତେ ବହୁ ମୂଲ୍ୟବାନ୍ ପରାମର୍ଶ ଓ ସାହାଯ୍ୟ ପ୍ରଦାନ କରିଥିବାରୁ ମୁଁ ସେମାନଙ୍କ ନିକଟରେ କୃତଜ୍ଞତା ପ୍ରକାଶ କରୁଛି । ଗବେଷକ ଡକ୍ଟର ବସନ୍ତ ପଣ୍ଡା ପ୍ରସ୍ତୁତ ନିବନ୍ଧଟିକୁ ମାର୍ଜିତ କରିବାରେ ତାଙ୍କର

ବହୁମୂଲ୍ୟ ସମୟ ବିନିମୟରେ ମୋତେ ସାହାଯ୍ୟ ଓ ସହଯୋଗ କରିଛନ୍ତି । ତେଣୁ ଏହି ଅବସରରେ ମୁଁ ତାଙ୍କ ପାଖରେ ଗଭୀର କୃତଜ୍ଞତା ଜଣାଉଛି ।

ଏତଦ୍ ବ୍ୟତୀତ ବିଶ୍ୱଭାରତୀର ଗ୍ରନ୍ଥାଗାର, ଓଡିଶା ରାଜ୍ୟ ସଂଗ୍ରହାଳୟ, ଉତ୍କଳ ବିଶ୍ୱବିଦ୍ୟାଳୟର ପରିଜା ପାଠାଗାର, ଓଡିଶା ବିଧାନସଭା ସଂଗ୍ରହାଳୟ, ରାଜ୍ୟ ଅଭିଲେଖାଗାର ଓ କେଦାର ନାଥ ଗବେଷଣା ପ୍ରତିଷ୍ଠାନର ପାଠାଗାର ପ୍ରଭୃତି ପ୍ରମୁଖ ଅନୁଷ୍ଠାନ ଗୁଡିକର ବ୍ୟବହାର ଫଳରେ ପ୍ରସ୍ତୁତ ନିବନ୍ଧଲାଗି ମୁଁ ଆବଶ୍ୟକୀୟ ଉପାଦାନ ମାନ ସଂଗ୍ରହ କରିବାରେ ସମର୍ଥ ହୋଇପାରିଛି । ତେଣୁ ସେହି ଅନୁଷ୍ଠାନ ଗୁଡିକର ସମ୍ମାନନୀୟ କର୍ତ୍ତୃପକ୍ଷଙ୍କ ନିକଟରେ ମୁଁ ଗଭୀର କୃତଜ୍ଞତା ଜ୍ଞାପନ କରୁଛି ।

ପ୍ରସ୍ତୁତ ନିବନ୍ଧଟିକୁ ରଚନା କରିବାରେ କବି ବନ୍ଧୁ ଅଧ୍ୟାପକ ସୁଧାଦାସ, ଅଧ୍ୟାପକ ଶଶାଙ୍କ ଶେଖର ଚୂଡାମଣି, ''କ୍ରାନ୍ତିଧାରା'' ସମ୍ପାଦକ ସଂଜୟ ଦାସବର୍ମା, ନିବନ୍ଧରଚନା କରିବାରେ ଅକୁଣ୍ଠ ସାହାଯ୍ୟକରିଥିବାରୁ ସେମାନେ ମୋର ଚିରସ୍ମରଣୀୟ ହୋଇ ରହିବେ । ପ୍ରତାପ ଶାସନ ମହାବିଦ୍ୟାଳୟ, ବାଳକାଟୀର ଅଧ୍ୟାପକ ବନ୍ଧୁ ଶ୍ରୀଯୁକ୍ତ ଭରତ ସାମନ୍ତରାୟ ଓ ବରିଷ୍ଠ ସହାୟକ ଶ୍ରୀଯୁକ୍ତ ହେମନ୍ତ କୁମାର ମହାନ୍ତି ମୋତେ ବହୁ ଭାବରେ ଉତ୍ସାହିତ କରିଥିବାରୁ ମୁଁ ସେମାନଙ୍କୁ ଏହି ଅବସରରେ ଧନ୍ୟବାଦ୍ ଜଣାଉଛି ।

ପ୍ରସ୍ତୁତ ନିବନ୍ଧଟିକୁ ନିର୍ଭୁଲ ଭାବରେ ନକଲ କରିବାରେ କେଦାରନାଥ ଗବେଷଣା ପ୍ରତିଷ୍ଠାନର ଗ୍ରନ୍ଥାଗାର ସଂରକ୍ଷକ ତଥା ବନ୍ଧୁ ଶ୍ରୀଯୁକ୍ତ ମୁକୁନ୍ଦ କିଶୋର ସାହୁ ତାଙ୍କର ବହୁଶ୍ରମ ବିନିମୟରେ ଶେଷ କରିଥିବାରୁ ମୁଁ ତାଙ୍କୁ ବିଶେଷ ଧନ୍ୟବାଦ ଅର୍ପଣ କରୁଅଛି ।

**ଖୁବ୍ ଅଳ୍ପ ସମୟ ମଧ୍ୟରେ ଉଦୀୟମାନ ପ୍ରକାଶକ ଶ୍ରୀ ଅଶୋକ ମହାନ୍ତି 'ପଶ୍ଚିମା ପବ୍ଲିକେଶନ୍ସ' ତରଫରୁ ପୁସ୍ତକଟି ପ୍ରକାଶ କରିଥିବାର ଦାୟିତ୍ୱ ନେଇ ସୁଚାରୁରୂପେ ସଂପାଦିତ କରିଛନ୍ତି ଏବଂ ପ୍ରଚ୍ଛଦପଟ୍ଟ ମଧ୍ୟ ଅଂକନ କରିଛନ୍ତି । ସେଥିପାଇଁ ତାଂକୁ ହାର୍ଦ୍ଦିକ ଧନ୍ୟବାଦ ଜଣାଇବା ସହ ଶୁଭେଚ୍ଛା ଜଣାଉଛି ।**

ଯାହାର ସ୍ନେହ ଶ୍ରଦ୍ଧା ତଥା ଅର୍ଥ ବିନିଯୋଗରେ ଉଚ୍ଚଶିକ୍ଷା ଲାଭ କରିଛି ଓ ଏହି ଗବେଷଣା ନିବନ୍ଧଟିକୁ ରଚନା କରିବାରେ ସମର୍ଥ ହୋଇପାରିଛି ସେହି ମୋର ବଡଭାଇ ଶ୍ରୀଯୁକ୍ତ ବାବାଜୀ ଚରଣ ସାହୁଙ୍କ ନିକଟରେ ମୁଁ ଚିର ଋଣୀ ।

ଶେଷରେ ମୋର ସହଧର୍ମିଣୀ ଶ୍ରୀମତୀ ସବିତା ସ୍ୱାଇଁଙ୍କର ପ୍ରେରଣା ଓ ସହଯୋଗ ମୋର ଚିରଦିନ ପାଇଁ ଚିରସ୍ମରଣୀୟ ହୋଇ ରହିବ ।

**ବିନୀତ**

# ପ୍ରଥମ ପରିଚ୍ଛେଦ

## ସ୍ୱାଧୀନତା ପରବର୍ତ୍ତୀ ଆଧୁନିକ ଓଡିଆ କବିତା ଓ କବି ପ୍ରସନ୍ନ ପାଟ୍ଟଶାଣୀ

ସ୍ୱାଧୀନତା ପରବର୍ତ୍ତୀ ଓଡିଆ କବିତାରେ ଯେଉଁ ପରିବର୍ତ୍ତନ ଆସିଛି, ତାହାକୁ ଅସ୍ୱୀକାର କରାଯାଇ ପାରିବ ନାହିଁ, ମାତ୍ର କବିତା ବଦଳେ ନାହିଁ। କବିତା ଭିତର ଦେଇ ଯେଉଁ ନୂତନ ଅଭିରୁଚି, ନୂତନ ଦୃଷ୍ଟିକୋଣ ଓ ଦାର୍ଶନିକ ଚିନ୍ତାଧାରା ପାଠକ ପାଖରେ ପହଞ୍ଚେ ସେଥିରେ ପରିବର୍ତ୍ତନ ସମ୍ଭବ ହୁଏ। କାରଣ ଗୋଟିଏ ସମୟର କାବ୍ୟିକ ଦର୍ଶନ ଆଉ କିଛି ସମୟପରେ, କିଛି ଦିନ ପରେ, କିଛି ବର୍ଷପରେ ବଦଳିଯାଏ।

କାବ୍ୟିକ ବିବର୍ତ୍ତନ ସବୁବେଳେ ଜୀବନ ଓ ସମୟସାପେକ୍ଷ ହେବା ଅଧିକ ସମୀଚୀନ। କିନ୍ତୁ ଆମେ ଆଧୁନିକତା ନାଆଁରେ ପାଶ୍ଚାତ୍ୟ କାବ୍ୟ ଶୈଳୀକୁ ମାନିନେଇ ଆମ ନିଜର ଅସ୍ତିତ୍ୱଠାରୁ ଅନେକ ଦିନ ଧରି ବିଚ୍ଛିନ୍ନ ହୋଇଯାଇଛୁ।

ଜୀବନ କହିଲେ ଗୋଟେ ଗୋଷ୍ଠୀ ନୁହେଁ। ସମାଜର ସାମଗ୍ରିକ ଜୀବନ ବୋଧରେ ଯଦି ଜଟିଳତା ଦେଖା ଦେଇଥାଏ, ତେବେ ସେହି ଜଟିଳତାକୁ ସାଧାରଣ ଜନତା ଉପଲବ୍ଧି କରିବା ଉଚିତ୍। ତେବେ ସିନା କବିର ଜଟିଳ ଉପସ୍ଥାପନା ଭିତର ଦେଇ ପାଠକ ସମାଧାନର ପନ୍ଥାଟିଏ ଖୋଜିବ। ଅନ୍ୟଥା ଓଡିଆ କବିମାନେ ଜୋର କରି ଏହି ଅବକ୍ଷୟକୁ ଅନ୍ୟ ଉପରେ ଆରୋପ କରୁଛନ୍ତି ବୋଲି କୁହାଯିବ।

ପାଶ୍ଚାତ୍ୟ ସାହିତ୍ୟର ପ୍ରଭାବରୁ ଯାହା ଆମ ସାହିତ୍ୟକୁ ଆସିଲା, ତାହା ନବଜାଗରଣ ନୁହେଁ କିମ୍ୱା ତଦ୍ ପ୍ରଭାବିତ କୌଣସି ଆଦର୍ଶ ନୁହେଁ। ୟୁରୋପୀୟ ସାହିତ୍ୟର ଏହି ଆଧୁନିକତା ଆନ୍ଦୋଳନର ରୂପ ନେଇ ରୋମାଣ୍ଟିକ୍ ସାହିତ୍ୟ ଭିତର ଦେଇ ଆସିବା ସହିତ ବିଭିନ୍ନ ସାହିତ୍ୟିକ ମତବାଦକୁ ଗ୍ରହଣ କରିନେଇଛି। ଏହା ବିଶ୍ୱର ସମସ୍ତ ସାହିତ୍ୟକୁ ସଂକ୍ରମିତ ହୋଇଛି। ଓଡିଆ କବିତାରେ ଆମେ ଏଇ ଭାବରେ ଆଧୁନିକତାକୁ ଦେଖିବାକୁ ପାଇଥାଉଁ। ''ଆଧୁନିକ କବିତାକୁ ପରମ୍ପରା ପ୍ରଚଳିତ ଓଡିଆ କବିତା ସହିତ ମିଳାଇ ଦେଖିଲେ ତାର କ୍ରମ ବିବର୍ତ୍ତନ ଆଖିରେ

ପଡେ ନାହିଁ। ହଠାତ୍ ଅନ୍ୟ ଜଳବାୟୁରୁ ଆସି ରୋପିତ ହେଲା ପରି ଲାଗେ।'' ଧଳ, ଗୋଲୋକ ବିହାରୀ - ସାମ୍ପ୍ରତିକ ସାହିତ୍ୟ: ଏକ ବିଶେଷ ଦୃଷ୍ଟି କୋଣ । (ମୋ ଦୃଷ୍ଟିରେ ସାମ୍ପ୍ରତିକ ସାହିତ୍ୟ ପୃଷ୍ଠା-ର )

ହଠାତ୍ ଅନ୍ୟ ଜଳବାୟୁରୁ ଆସିଥିବା ଏଇ ଦର୍ଶନ ସ୍ୱାଧୀନତା ପରବର୍ତ୍ତୀ କାଳରେ ଓଡ଼ିଆ କବିତାରେ ଅଧିକ ଦେଖାଦେଇଛି । ବ୍ୟକ୍ତିଗତ ଚିନ୍ତାଧାରା ଓ ଜୀବନର ଅସ୍ଥିରତା ସାହିତ୍ୟକୁ ଆବୋରି ବସିଛି । ମଣିଷ ଭିତରେ ଜୀବନ ଦୃଷ୍ଟି ବଦଳରେ କ୍ଲାନ୍ତି ଓ ବିତୃଷ୍ଣା ଭରି ଦେଇଛି । କବିତାରେ ବୌଦ୍ଧିକ ଜଟିଳତା ଉପସ୍ଥାପନ କରିଛି କବି । କବିତା ରଚନା ପାଇଁ ବୁଦ୍ଧି ସବୁ କିଛି ନୁହେଁ, ଏଥିପାଇଁ ହୃଦୟାବେଗ ଓ ସମ୍ବେଦନଶୀଳତାର ମଧ୍ୟ ଆବଶ୍ୟକତା ରହିଛି । ପାଶ୍ଚାତ୍ୟ ଦର୍ଶନକୁ ଅନୁସରଣ କରି ଓଡ଼ିଆ କବିତାରେ ଅବକ୍ଷୟକୁ ସ୍ୱୀକାର କରିନେବା ଯୁକ୍ତିଯୁକ୍ତ ନୁହେଁ । ''ସାହିତ୍ୟ ଆଜି ବୃତ୍ତିନିଷ୍ଠତାର କର୍ତ୍ତବ୍ୟ ସମାଜ ପ୍ରତି କ'ଣ ହେବା ଉଚିତ୍ ? ଆଜି ସେ ଏକ ବୌଦ୍ଧିକ ଚିନ୍ତାର ଅର୍ଗଳି ଭିତରେ ପଶିଯାଇଛି । ପାଇବାର ହତାଶାରେ ଚିତ୍କାର କରେ, ତା'ହେଲେ ଫଳତଃ ସେ ପାଇବ କ'ଣ ? ସେଥିପାଇଁ ଭାରତୀୟ ସାହିତ୍ୟ ଗୋଡାଣିଆ ଇଉରୋପୀୟ ସାହିତ୍ୟର ଏବଂ ତାହା ସଙ୍ଗେ ସଙ୍ଗେ ଇଉରୋପୀୟ ସାହିତ୍ୟଠାରୁ ଜୀବନନିଷ୍ଠ ନୁହେଁ । ବୌଦ୍ଧିକ କ୍ଷେତ୍ରରେ ଏହା ଯେତିକି ସମାଲୋଚିତ ତା' ଅପେକ୍ଷା ବେଶୀ ଉପେକ୍ଷିତ ସାଧାରଣ ଜନଜୀବନ ଆଗରେ ।'' ପାଟ୍ଟଶାଣୀ ପ୍ରସନ୍ନ - ମୋ ଦୃଷ୍ଟିରେ ସାମ୍ପ୍ରତିକ ସାହିତ୍ୟର ଗୋଷ୍ଠୀ ବିଚାର । ( ମୋ ଦୃଷ୍ଟିରେ ସାମ୍ପ୍ରତିକ ସାହିତ୍ୟ ପୃଷ୍ଠା -୧୩୦ )

ତେଣୁ ପ୍ରାଚୀନ କବିତା ପରି କବିତା ପଛରେ ସବୁବେଳେ ସୌନ୍ଦର୍ଯ୍ୟ ବୋଧ ଓ ଆବେଗ ଆଦିକୁ ବେଶୀ ପରିମାଣରେ ଗୁରୁତ୍ୱ ଦେବା ଉଚିତ୍ ।

ଆଧୁନିକ କବିତା ବୋଲି ପ୍ରଚାର କରିଦେଲେ କବିତା ଆଧୁନିକ ହୁଏ ନାହିଁ । ଓଡ଼ିଆ କବିତା କ୍ଷେତ୍ରରେ ଏଇ ପ୍ରଚାରର ମାତ୍ରା ବେଶୀ । ଆଧୁନିକତାର ଅନୁଭବ ଅପେକ୍ଷା ଅନୁସରଣଟା ବେଶୀ । ଯେଉଁଥି ପାଇଁ ଓଡ଼ିଆ କବିତା ଏକ କ୍ଷୟିଷ୍ଣୁ ସ୍ଥିତିଉପରେ ଗତି କରିଛି । ''ଏଇ ପ୍ରକାର ବ୍ୟବଧାନ ହେତୁ ସାମ୍ପ୍ରତିକ ସାହିତ୍ୟ କ୍ରମଶଃ ଗୋଷ୍ଠୀ ଭିତ୍ତିକ ହୋଇ ପଡୁଛି । କିନ୍ତୁ ଗୋଷ୍ଠୀର ଆଭିମୁଖ୍ୟ, ଦର୍ଶନ ଏପରି କିଛି ବଳିଷ୍ଠ ସ୍ଥିତି ନେଇ ନାହିଁ, ଯାହାକି ଗୋଟିଏ ଧାରା ବା ମୁଭ୍‌ମେଣ୍ଟର ସୂତ୍ରପାତ କରିବ ।''( ନାୟକ କ୍ଷେତ୍ରବାସୀ - ସାମ୍ପ୍ରତିକ ଜୀବନ ଓ ସାହିତ୍ୟ-ସାମ୍ପ୍ରତିକ ସାହିତ୍ୟ ସମୀକ୍ଷା । ପୃଷ୍ଠା-୧୦୫ ।)

ନିହାତି ପାଖକୁ ଆସି ଜୀବନ ସହିତ ମିଶିଯିବାରେହିଁ ଯେଉଁ ଆନନ୍ଦବୋଧ ରହିଛି ତା'ର ସ୍ୱାଦ କବି ବୋଧେ ପାଇନାହିଁ । ଯେଉଁଥିପାଇଁ ଆଜି ପର୍ଯ୍ୟନ୍ତ ଗୁଡାଏ ଅସ୍ତିତ୍ୱହୀନ ବ୍ୟକ୍ତିଗତ ସମସ୍ୟା ଓ ଖଣ୍ଡ ଖଣ୍ଡ ଚିନ୍ତାଧାରାକୁ ପଶ୍ଚିମରୁ ଆହରଣକରି କବି ପାଠକ ନିକଟରେ ପରଶି ଯାଉଛି । ବର୍ତ୍ତମାନ କବିତାରେ କିନ୍ତୁ ଏ' ପ୍ରଭାବ ଦେଖିବାକୁ ମିଳେ ନାହିଁ । କାରଣ ଏବର ସଚେତନ କାବ୍ୟମାନସ ମୁହଁ ଫେରେଇଛି ନିଜ ଭିତରକୁ ।

କବିତାକୁ ଯଦି ଏକ ସତ୍ୟନିଷ୍ଠ ଅନୁଭବ ବୋଲି କହିବା ତେବେ କବି ଏହି ଅନୁଭବ ସହ ନିଜ ଭିତରେ ସାକ୍ଷାତ କରେ । କବିତାର ଏ ଅନୁଭବ ଏମିତି ଏକ ଚରମ ସତ୍ୟର ଅପେକ୍ଷା

ରଖେ ଯାହାକୁ ପ୍ରକାଶ କରିବା ପାଇଁ କବିକୁ ଚେତନାର ସ୍ତରରେ ଆମୂଖ ହେବାକୁ ପଡେ । ଆଧୁନିକ କବିତା ସେମିତି ଏକ ଅନୁଭବ । କେବଳ ସାମାଜିକ କିମ୍ବା ବ୍ୟକ୍ତିଗତ ଦୃଷ୍ଟିର ବହିରଙ୍ଗକୁ ଆଧୁନିକତା କହି ହେବ ନାହିଁ । ଆଧୁନିକତା ଏକାସମୟରେ କବି ଓ ପାଠକ ମନ ଉପରେ ଗଭୀର ପ୍ରଭାବ ପକାଏ । କବିତାରେ ଯାହା ସର୍ବକାଳିକ ଓ ସାର୍ବଜନୀନ ହୋଇ ଆତ୍ମପ୍ରକାଶ କରେ ତାହାହିଁ ଆଧୁନିକତା ।

ଆଧୁନିକତାର ଆପେକ୍ଷିକତାକୁ ଦେଖିଲେ ଏତିକି ନିଶ୍ଚିତ କୁହାଯିବ ଯେ ସ୍ୱାଧୀନତା ପୂର୍ବବର୍ତ୍ତୀ ଓ ପରବର୍ତ୍ତୀ ସମୟର କବିତା ଓ ଏବର କବିତାକୁ ତୁଳନା କଲେ ପ୍ରଚଳିତ ଚିନ୍ତାଧାରା ଓ ସମ୍ପ୍ରତି ପ୍ରତିଫଳିତ ଦର୍ଶନରେ ପ୍ରାଧାନ୍ୟ ପରିଲକ୍ଷିତ ହୁଏ । ଏବର କବିତାରେ ଆଉ ନିର୍ବେଦତା ନାହିଁ । କବିତା ଏବେ ପାଠକକୁ ଅନୁରୂପ ଭାବେ ଉଚ୍ଚାଟିତ କରିପାରୁଛି । ସ୍ୱାଧୀତନା ପରବର୍ତ୍ତୀ ସମୟରେ ଆମ କବିମାନେ ଯଦିଓ ଜାଣନ୍ତି ମଣିଷ ଜୀବନ ଯନ୍ତ୍ରଣାପୂର୍ଣ୍ଣ ଓ ବିଫଳତା ପୂର୍ଣ୍ଣ , ତଥାପି ଆମକୁ କୌଣସି ସମାଧାନର ପନ୍ଥା ଦେଖାଇନାହାନ୍ତି । କେବଳ ସେଇ ଦୁଃଖ ଯନ୍ତ୍ରଣାର ପ୍ରଚାର କରିଛନ୍ତି । ସମାଧାନର ଅନ୍ତର୍ନିହିତ ଦୃଷ୍ଟିଭଙ୍ଗୀଟିକୁ ଛାଡି କବି ଆଙ୍ଗିକର କାରିଗରୀ କୌଶଳ ପ୍ରତି ବିଶେଷ ଆକୃଷ୍ଟ ହୋଇଛନ୍ତି । କିନ୍ତୁ ନେତିବାଦ ଓ ଗ୍ଲାନି ସାମାଜିକ ଅଧୋପତନକୁ ବାଦ୍‌ଦେଇ କବିତାରେ ନୂତନ ଜୀବନ ଚିନ୍ତାଧାରା, ଭାବାବେଗ ପ୍ରକାଶ ପାଉଛି । ଅବଶ୍ୟ କେବେଠାରୁ ଏହା କବିତାକୁ ଅଧିକ ଆଶାବାଦୀ ସ୍ୱରରେ ପରିପୁଷ୍ଟ କରିଛି ତା'ର ନିର୍ଦ୍ଦିଷ୍ଟ ସମୟ କିମ୍ବା ତାରିଖ ଦେବା ସହଜ ନୁହେଁ । ତଥାପି ଏହା ଯେ ନୂତନ ଯୁବଗୋଷ୍ଠୀର ସଚେତନ କାବ୍ୟାନୁଚିନ୍ତାରୁ ଜନ୍ମ, ଏକଥା ନିଶ୍ଚିତ ।

ପରମ୍ପରା ଓ ଐତିହ୍ୟ ସଚେତନତା କବିକୁ ବହୁମାତ୍ରାରେ ଆଶାବାଦୀ କରିଛି । ଜୀବନକୁ ଭଲପାଇବା, ଜୀବନକୁ ବଞ୍ଚାଇବା ପାଇଁ ଯେ କୌଣସି ବିପରୀତ ପରିସ୍ଥିତି ସହ ଲଢିଯିବାର ଆତ୍ମପ୍ରତ୍ୟୟ ଦେଇଛି ଏହି କବିତା । ଗଭୀର ମାନବବାଦ ଏପରିକି ଧ୍ୱଂସସ୍ତୂପ ଉପରେ ସୌନ୍ଦର୍ଯ୍ୟର ଅଭିଷେକ କରିବାର ପ୍ରତ୍ୟୟ ଅନ୍ତତଃ ଏମାନଙ୍କ କବିତାରେ ରହିଛି ପୂର୍ବର ଆତ୍ମପ୍ରତ୍ୟୟ ହୀନ ପରିବେଶରୁ ଆଣି ମଣିଷକୁ ତା ନିଜସ୍ୱ ମାଟିରେ ଛିଡା କରେଇଛି । ଯେଉଁ ଦୃଷ୍ଟିଭଙ୍ଗୀ ଭିତରେ ମଣିଷ ନିଜକୁ ବୁଝିବାର ସୁଯୋଗ ପାଇଛି । ତାହାହିଁ ଆଧୁନିକ ଦୃଷ୍ଟିଭଙ୍ଗୀ । ଏହି ଦୃଷ୍ଟିଭଙ୍ଗୀରେ ପରିପୁଷ୍ଟ ସମସ୍ତ କବିତା ଆଧୁନିକ, ତାହା ନୂଆ ହେଉ କି ପୁରୁଣା ହେଉ ।

ଅବଶ୍ୟ ଓଡିଆ ସାହିତ୍ୟର ବିକାଶ ଓ ବିବର୍ତ୍ତନ ପଛରୁ ପାଶ୍ଚାତ୍ୟ ସାହିତ୍ୟ ଓ ସଭ୍ୟତାର ପ୍ରଭାବକୁ ବାଦ୍ ଦିଆଯିବ ନାହିଁ । କିନ୍ତୁ ଯାହା ମୌଳିକ ଅନୁଭବ ସେଥିରେ ଅଯଥା ବଳପ୍ରୟୋଗ କରାଯାଇ ବଦଳେଇଦେବା ଠିକ୍ ନୁହେଁ ।

ସ୍ୱାଧୀନତା ପରବର୍ତ୍ତୀ ଓଡିଆ କବିତା କ୍ଷେତ୍ରରେ ପାଠକ ଏମିତି କିଛି ପରିବର୍ତ୍ତନ ଲକ୍ଷ୍ୟକରେ । ପଶ୍ଚିମ ମଣିଷର ଅସହାୟତା, ତା'ର ବିଚ୍ଛିନ୍ନତା ଓ ଏକାକୀତ୍ୱ ଆଦିକୁ ଓଡିଆ କବିତାରେ ଭର୍ତ୍ତି କରିବା ପଛରେ କବିର ଆଧୁନିକ ହେବାର ଉଦ୍ଦେଶ୍ୟ ସହିତ ଓଡିଆ କବିତାକୁ ବିଶ୍ୱ କବିତାର ସମକକ୍ଷ କରାଇବାର ଉଦ୍ଦେଶ୍ୟ ଥାଇପାରେ । ତା'ର ଅର୍ଥ ନୁହେଁ ସମ୍ପୂର୍ଣ୍ଣରୂପେ ଅସମୟରେ ଏମିତି ଏକ ଅବକ୍ଷୟକୁ ମାନିନେବା । ପ୍ରତି ମଣିଷ ମୃତ୍ୟୁ ସମ୍ପର୍କରେ ସଚେତନ ।

ଅଥଚ ସେ କେବେ ଏତେ ଶୀଘ୍ର ମରିବାକୁ ଚାହେଁ ନାହିଁ । ଏଠାରେ ମୃତ୍ୟୁ ପ୍ରତି ମଣିଷର ଭୟ କୁହା ନ ଯାଇ ଜୀବନ ପ୍ରତି ଅନୁରକ୍ତି କୁହାଯିବ । ଜୀବନ ପ୍ରତି ମଣିଷ ଖୁବ୍ ନିଷ୍ଠାପର ଅଥଚ ପାଶ୍ଚାତ୍ୟ ଦର୍ଶନ ଦ୍ୱାରା ଆମେ ଯୌବନରେ ବି ବାର୍ଦ୍ଧକ୍ୟ ଅନୁଭବ କରିବାକୁ ବାଧ୍ୟ ହେଲୁ । ଯଦିଓ ଏକ ପରିବାର ଭିତରେ, ଏକ ସମାଜ ଭିତରେ ପରସ୍ପର ସମ୍ପର୍କିତ ହୋଇ ମଣିଷ ରହିଛି । ତଥାପି ମଣିଷକୁ ବିଚ୍ଛିନ୍ନ କୁହାଗଲା । ସ୍ୱାଧୀନତା ପରେ ପରେ ବହୁଦିନ ପର୍ଯ୍ୟନ୍ତ ଏଇ ଚିନ୍ତାଧାରାକୁ ମଣିଷ ଅନିଚ୍ଛା ସତ୍ତ୍ୱେବି ଧରି ରଖିଥିଲା । ସ୍ୱାଧୀନତା ପୂର୍ବରୁ ଆମ ସ୍ୱାଧୀନତା ସଂଗ୍ରାମକୁ ଭିତ୍ତିକରି ଯେଉଁ ଦେଶାତ୍ମବୋଧ, ସାମାଜିକ ଅଙ୍ଗୀକାର କବିତାକୁ ପରିପୁଷ୍ଟ କରିଥିଲା । ସେସବୁ ସ୍ୱାଧୀନୋତ୍ତର କାଳରେ ଦୁର୍ବଳ ହୋଇଗଲା । ଅବଶ୍ୟ ସ୍ୱାଧୀନତା ପାଇଯିବା ପରେ ସଂଗ୍ରାମର ପ୍ରଭାବ କବିତାରେ ନ ରହିବା କଥା । କିନ୍ତୁ ଯେଉଁ ଆଦର୍ଶ, ଚିନ୍ତାଧାରା ଓ ଜୀବନଧାରା ରହିବା ଦରକାର ଥିଲା ତାହା ରହିଲା ନାହିଁ । ଆଲବର୍ଟ କାମ୍ୟୁ, ଫ୍ରାନଜ୍ କାଫ୍କା ଆଦି ପାଶ୍ଚାତ୍ୟ ସାହିତ୍ୟିକ ମାନଙ୍କର ଅସ୍ତିତ୍ୱବାଦୀ ଚିନ୍ତାଧାରା କବିତାକୁ ଗ୍ରାସ କଲା । ସମୂହର ଅନୁଭବ, ସମୂହ ଜୀବନରୁ ଯୋଗସୂତ୍ର ଛିନ୍ନ କରି ବ୍ୟକ୍ତିବାଦ ବିକାଶ ଲାଭ କଲା ।

ପ୍ରାକ୍ ସ୍ୱାଧୀନତା କାଳରେ ପ୍ରଗତିବାଦୀ କାବ୍ୟଚେତନା, ଅନୁନ୍ନତ ଶ୍ରେଣୀର ବିକାଶ, ଗାନ୍ଧୀଦର୍ଶନ ଓ ସାମାଜିକ ଶ୍ରେଣୀ ସଂଘର୍ଷକୁ ପ୍ରତିହତ କରି ଓଡ଼ିଆ କବିତା ବ୍ୟକ୍ତିବାଦ, ନିଃସଙ୍ଗତା ଓ ଅବକ୍ଷୟର ଯେଉଁ ମଞ୍ଜିଟିକୁ ଆମ ମାଟିରେ ପୋତି ଦେଲା ତାହା ସ୍ୱାଧୀନତା ପରଠାରୁ ୧୯୭୦ ମସିହା ପର୍ଯ୍ୟନ୍ତ ବୃକ୍ଷରେ ପରିଣତ ହୋଇ କାୟା ବିସ୍ତାର କରିଥିଲା । ମାତ୍ର ପ୍ରଥମ ବିଶ୍ୱଯୁଦ୍ଧ ପରେପରେ ରେନେସାଁ ପ୍ରଭାବିତ ଆତ୍ମନିର୍ଭରଶୀଳ ମଣିଷଟି ବହୁମାତ୍ରାରେ ଭାଙ୍ଗି ପଡ଼ିଲା ।

ଇଂରାଜୀ ସାହିତ୍ୟରେ ଇମେଜିଷ୍ଟ ମାନିଫେଷ୍ଟୋ ଯେଉଁ ତଥ୍ୟ ପ୍ରକାଶ କଲା ଏବଂ ପ୍ରଥମ ବିଶ୍ୱଯୁଦ୍ଧର କ୍ଷୟକ୍ଷତି ଓ ମାନବିକ ମୂଲ୍ୟବୋଧରେ ଦେଖାଦେଇଥିବା ସଙ୍କଟର ସଙ୍କେତ ବହନ କରି ଏଲିୟଟଙ୍କ ଉଦ୍ୟମରେ ଯେଉଁ କାବ୍ୟିକ ଆନ୍ଦୋଳନ ସମସାମୟିକ ବିଶ୍ୱ ସାହିତ୍ୟକୁ ପ୍ରଭାବିତ କରିବାକୁ ଆରମ୍ଭ କରିଦେଲା । ତାକୁ ସ୍ୱାଧୀନତା ପରବର୍ତ୍ତୀ କାଳରେ ଓଡ଼ିଆ କବିତାରେ ଆଧୁନିକତାର ସ୍ୱରୂପ ରୂପେ ଦେଖିବାକୁ ମିଳେ । ମାତ୍ର ତତ୍ ଜନିତ ମାନବିକ ମୂଲ୍ୟବୋଧରେ ଦେଖାଦେଇଥିବା ସଂଙ୍କଟ ପାଶ୍ଚାତ୍ୟ ଜୀବନକୁ ଯେତିକି ଆଘାତ କରିଥିଲା ଓଡ଼ିଆ ଜନଜୀବନକୁ ସେତିକି ପ୍ରଭାବିତ କରିନଥିଲା । ଦ୍ୱିତୀୟ ବିଶ୍ୱଯୁଦ୍ଧର ଭୟାବହ ପରିଣତି, ଆତଙ୍କ,ନେତିବାଦ ସ୍ୱାଧୀନତା ପରବର୍ତ୍ତୀ କାଳରେ ଓଡ଼ିଆ କବିତାକୁ ଆସିଛି । କାରଣ ସ୍ୱାଧୀନତା ପୂର୍ବରୁ ଏ ଦେଶ ତା'ର ନିଜସ୍ୱ ସମସ୍ୟା ଭିତରେ ବୁଡ଼ି ରହିଥିଲା । ସେଥିପାଇଁ ୧୯୪୭ ମସିହା ପରେ ପରେ ପାଶ୍ଚାତ୍ୟ ଜୀବନର ଏହି ଅବକ୍ଷୟକୁ ଓଡ଼ିଆ କବିତା ଅନୁସରଣ କରିଛି । ପରୀକ୍ଷା ନିରୀକ୍ଷା ନାଆଁରେ କବିମାନଙ୍କର ବାଧ୍ୟତା ମୂଳକ ପ୍ରୟାସ ଓଡ଼ିଆ କବିତାକୁ ଆତ୍ମକୈନ୍ଦ୍ରିକ କରିଦେଲା । ଏ' ଦେଶର ପାରମ୍ପରିକ ଈଶ୍ୱର ବିଶ୍ୱାସ, ମାନବବାଦ ଓ ଐତିହ୍ୟ ସଚେତନତାକୁ ଅସ୍ୱୀକାର କରାଯାଇ ନିଃସଙ୍ଗତା, ବିଚ୍ଛିନ୍ନତା, ଯୌନସର୍ବସ୍ୱ ଆନନ୍ଦ ଓ ମୃତ୍ୟୁ ଚେତନା କଥା କବିତାରେ କୁହା ଯାଉଥିଲା । ଯାହା ପ୍ରଚଳିତ କବିତାର ଧାରାଠାରୁ ଅଲଗା ତାକୁ ନୂତନ ବା ଆଧୁନିକ କୁହାଯିବ । ମାତ୍ର ଐତିହ୍ୟ, ସଂସ୍କୃତି ଓ ପରମ୍ପରାକୁ ଅସ୍ୱୀକାର କରି ଆଧୁନିକତାର ପରିକଳ୍ପନା

କରିବା ଅସମ୍ଭବ । ଏ ସମୟରେ ଯାହାକି ଓଡିଆ କବିତାକୁ ଆସିଛି ସେସବୁ କେମିତି ଏକ କୃତ୍ରିମତା ଭିତରେ ବିକାଶ ଲାଭ କରିଛି । ଆଧୁନିକତା ନାଆଁରେ ଏ' ସମୟରେ ମଣିଷ ଅନ୍ତଃସାରଶୂନ୍ୟ ବୋଲି ଦେଖେଇ ଦିଆଯାଇଛି । ନିଜ ଉପରୁ ନିଜର ଆସ୍ଥା ହରାଇଛି । ନିଜର ମାନସିକ ଦୁଃସ୍ଥିତିକୁ ଦେଖାଇ ଅନ୍ୟର ସହାନୁଭୂତିକୁ ଅପେକ୍ଷା କରିଛି । ସତେ ଯେମିତି ଅଦ୍‌ଭୁତ ପୋଷାକ ପିନ୍ଧିଥିବା ରାଜାର ତୋଷାମଦକାରୀ ଓ ଛଳକାରୀ ପାରିଷଦ ହେଉଛି ମଣିଷ । ''ତେବେ ଆମ ଅନୁକୃତ ବା ଅନୁସୃତ ଆଧୁନିକତାର ବୌଦ୍ଧିକ ସୃଷ୍ଟିମାନ ଦେଖିଲେ ବେଳେ ବେଳେ ଲାଗେ ତାହା ସବୁ ଯେମିତିକି ସେଇ କାହାଣୀର ରାଜାଙ୍କର ଅଦ୍‌ଭୁତ ପୋଷାକ ଏବଂ ତା'ର ସ୍ରଷ୍ଟା ହେଉଛନ୍ତି ସେଇ ରାଜା - ଯାହାଙ୍କୁ ଭୟାଳୁ ଓ ଛଳକାରୀ ପାରିଷଦବର୍ଗ କହୁଥିଲେ - ଆଃ ! ମଣିମା ! କି ପୋଷାକ କି ଚମତ୍କାର । ରାଜା ଏମାନଙ୍କ ସ୍ତୁତିବାକ୍ୟରେ ଆନନ୍ଦ ଓ ପ୍ରତ୍ୟୟ ପାଉଥିବା ସତ୍ତ୍ୱେ ସମ୍ଭବତଃ ଏମାନଙ୍କଠାରୁ ସତ୍ୟୋକ୍ତି ଚାହୁଁଥିଲେ । କିନ୍ତୁ ଛଳନା ଶିଖିନଥିବା ବାଳକଟି ହିଁ ସତ୍ୟ କଥନ କଲା- ଆରେ ରାଜା ଲଙ୍ଗଳା - ରାଜା ଲଙ୍ଗଳା ।''( ରାଉତ, ବେଣୁଧର - ସାମ୍ପ୍ରତିକତାର ପରମ୍ପରା: ଗୋଟିଏ ଦୃଷ୍ଟି ଓ ସଙ୍କଳନ - ମୋ ଦୃଷ୍ଟିରେ ସାମ୍ପ୍ରତିକ ସାହିତ୍ୟ । ପୃଷ୍ଠା - ୫ ।) । ଏସବୁ ଅବକ୍ଷୟର କଥା । କିନ୍ତୁ ଆଧୁନିକର ଅର୍ଥ ଅବକ୍ଷୟ ନୁହେଁ । କବିତା କହିଲେ ଜୀବନର କଥା ଉଠେ । ତେବେ କବିତାରେ ଏମିତି ଏକ ଜୀବନମୃତ ଅବସ୍ଥା ସ୍ୱାଧୀନତା ପରବର୍ତ୍ତୀ ଓଡିଆ କବିତା ଭିତରକୁ ପଶିଆସିଥିଲା । ସେଥିପାଇଁ ପାଠକୀୟ ଆଦୃତି କମି ଯାଇଥିଲା ।

ମାତ୍ର ଆଧୁନିକ ଓଡିଆ କବିତାର ପ୍ରକୃତି ସ୍ୱରୂପ ଆମେ ଦେଖୁ ୧୯୭୦ ମସିହା ପରେ ପରେ । ସତୁରୀ ପରବର୍ତ୍ତୀ ଓଡିଆ କବିତାରେ ଜୀବନର ଅସ୍ଥିରତା, ଅନିଶ୍ଚୟତା ଓ ଆତ୍ମବିରୋଧ ଆଦି ନାହିଁ । ଓଡିଆ କବିତା ପରୀକ୍ଷା ନିରୀକ୍ଷାଠାରୁ ଦୂରେଇ ଆସିନି ସତ ମାତ୍ର ପରମ୍ପରା, ଐତିହ୍ୟ ଏବଂ ନିଜସ୍ୱ ମୌଳିକତା କବିକୁ ଅଧିକ ଜୀବନବାଦୀ କରିଛି । ଏ' ସମୟରେ କବିତାରେ ମୃତ୍ୟୁ, ଯୌନଚେତନା, ନିଃସଙ୍ଗତା ଓ ଅସହାୟତା ଅଛି । ମାତ୍ର ସବୁର ଏକ ଶୃଙ୍ଖଳିତ ପରିପ୍ରକାଶ ଘଟିଛି । ମୃତ୍ୟୁ ଓ ଜୀବନ ମଧ୍ୟରେ ଏକ ବୁଝାମଣା ହେଉଛି ଏ ସମୟର କବିତା । ସବୁ ଭିତରେ ମଣିଷ ନିଜ ପରିସ୍ଥିତି ସହ ସଂଘର୍ଷ କରୁଛି କେବଳ ବଞ୍ଚିବାର ସ୍ୱପ୍ନରେ । ତା'ଠି ମାନବିକତା ଅଛି । ବ୍ୟକ୍ତିବାଦୀ ଦୃଷ୍ଟିକୋଣର ପ୍ରଭାବକୁ ପ୍ରତିହତ କରି ପୁଣି ମାନବବାଦ ଆସିଛି । ଆଧ୍ୟାତ୍ମିକତା, ଈଶ୍ୱର ବିଶ୍ୱାସ, ପରମ୍ପରା ଓ ଜୀବନ ପ୍ରତି ଗଭୀର ଆଶା ତା'କୁ ବଞ୍ଚିବାର ପ୍ରେରଣା ଯୋଗାଇଛି ।

କବିତାର ଏଇସବୁ ପ୍ରାକୃତିକ ଅନୁଭବର ପ୍ରତିଫଳନରେ ଏ' ସମୟର କବିତା ଋଦ୍ଧିମନ୍ତ । ନିରପେକ୍ଷ ପାଠକ ଦୃଷ୍ଟିରୁ ବିଚାର କଲେ ଜଣାଯିବ, ଏବର କବିତା ପୂର୍ବ କବିତାଠାରୁ ସ୍ୱତନ୍ତ୍ର । ଏହି ସମୟକୁ ବହୁ ନୂଆ କବିଙ୍କର ଆବିର୍ଭାବ ଘଟିଛି ଓଡିଆ କବିତାରେ । ନିର୍ଦ୍ଦିଷ୍ଟ ଘଟଣାକୁ ସେମାନଙ୍କ କବିତାର ଅନୁଭବ ଅପେକ୍ଷା କରିନି । ଏଠି କବିତାରେ ଜୀବନ ଯେମିତି ପ୍ରତିଫଳିତ ସେମିତି ଜୀବନର ସତ୍ୟଗୁଡିକ । ଜୀବନର ଆବଶ୍ୟକତାକୁ ପୂରଣ କରିବାର ସଂଘର୍ଷ ମଧ୍ୟ ସେତିକି ପ୍ରତିଫଳିତ । ସେଥିପାଇଁ ପ୍ରତି ମୁହୂର୍ତ୍ତରେ କବି ଏଠି ଜୀବନ ସହ ଲଢିଯିବାର ଦେଖିବାକୁ ମିଳେ । ଏ ସମୟର କବି ଓ କବିତା ଉଭୟ ସ୍ପଷ୍ଟ । ଏ'ସବୁ କାବ୍ୟିକ ବିବର୍ତ୍ତନ ଦ୍ୱାରା କବିତାର କଥାବସ୍ତୁକୁ ଦୁର୍ବୋଧ୍ୟ ଚିତ୍ରକଳ୍ପ ଓ ରୂପକ ମାଧ୍ୟମରେ ପ୍ରକାଶ କରାଯାଉଥିଲା, ତାହା ରହିଲା ନାହିଁ । କବିତାର କଥା ବସ୍ତୁ ଚିତ୍ରକଳ୍ପକୁ ନିୟନ୍ତ୍ରଣ କଲା । ଚିତ୍ରକଳ୍ପର ପ୍ରଭାବ କଥା

ବସ୍ତୁଠାରୁ ଦୂରେଇ ଗଲା । ତେଣୁ ସବୁ ପ୍ରକାର ଚେତନା ଆଙ୍ଗିକ ପରୀକ୍ଷା ଥିଲେମଧ୍ୟ କବିତା ଯଥେଷ୍ଟ ନିରପେକ୍ଷ, ସରଳ ଓ ଜୀବନ ସାପେକ୍ଷ ।

ଆଲୋଚନା ଦୃଷ୍ଟିରୁ ସ୍ୱାଧୀନତା ପରବର୍ତ୍ତୀ ଓଡିଆ କବିତାକୁ ସତୁରୀ ପୂର୍ବ ଓ ସତୁରୀ ପରର ଏମିତି ଦୁଇ ଭାଗରେ ବିଭକ୍ତ କରାଯାଏ । ସତୁରୀ ପରର କବିତା ଏକ ପ୍ରକାର ଅବକ୍ଷୟରୁ ଓଡିଆ କବିତାକୁ ମୁକୁଳାଇ ପାଠକର ଅଧିକ ନିକଟବର୍ତ୍ତୀ ହେବା ଥିଲା ଏ ସମୟର କବିର ଉଦ୍ଦେଶ୍ୟ । କବିତା ରଚନା କରିବା ସମୟରେ କବି ଯେତିକି ନିଜର କାବ୍ୟଚେତନା ପ୍ରତି ସଚେତନ ସେତିକି ପାଠକମନସ୍କ । ପାଠକର ଅବବୋଧକୁ ସେ କବିତା ଭିତରୁ ବାଦ୍ ଦେଇ ନାହିଁ । ପାଠକ ଓ କବିତା ମଧ୍ୟରେ କିଛି ଆତ୍ମୀୟ ଯୋଗସୂତ୍ର ଏ ସମୟର କବିତାରେ ଦେଖାଯାଏ ।

ତେଣୁ ନିର୍ଦ୍ଦିଷ୍ଟ ଭାବରେ କୌଣସି ଗୋଟିଏ ଚେତନାକୁ ଆଧୁନିକ କହି ଗ୍ରହଣ କରିନେବା ଠିକ୍ ନୁହେଁ । ସ୍ୱାଧୀନତା ପରେ ପରେ ଓଡିଆ କବିତାରେ ଯଦି ସାମାନ୍ୟ ଦୂରତା ରଖି ଦୁଇ ପ୍ରକାର ମାନସିକତା ଓ ଦୁଇ ପ୍ରକାର କାବ୍ୟଚେତନା ଦେଖା ଦେଇଛି, ତେବେ ଏଇ ଦୁଇଧାରା ମଧ୍ୟରୁ କାହାକୁ ଆଧୁନିକ କୁହାଯିବ ? ଯଦି, ଆଧୁନିକ ଶବ୍ଦଟିର ସମସ୍ତ ଅର୍ଥକୁ ପାଶ୍ଚାତ୍ୟ ଚିନ୍ତାଧାରା ବା ଦର୍ଶନରୁ ସୃଷ୍ଟି ବୋଲି କୁହାଯାଏ, ତେବେ ସ୍ୱାଧୀନତା ଠାରୁ ସତୁରୀ ଯାଏ ଓଡିଆ କବିତାରେ ଅବକ୍ଷୟର ଯେଉଁ ସ୍ପଷ୍ଟରୂପ ଦେଖିବାକୁ ମିଳେ ତାହାହିଁ ଆଧୁନିକ । କିନ୍ତୁ ଏଇ ଅବକ୍ଷୟର କଥା ଯଦି ବାଦ୍ ଦେଇ ଆଧୁନିକତାର ପରିକଳ୍ପନା କରାଯାଏ ତେବେ ସତୁରୀପରେ ଯେଉଁ ସତ୍ୟ, ଯେଉଁ ଥିମ୍ କବିତାରେ ପ୍ରତିଫଳିତ ତାହା ପ୍ରକୃତରେ ଆଧୁନିକ । ତାହାହିଁ ପ୍ରକୃତ ପକ୍ଷେ ଏକ କାବ୍ୟିକ ବିବର୍ତ୍ତନ । ବଳ ପ୍ରୟୋଗ ଅପେକ୍ଷା ସବୁବେଳେ ସ୍ୱତଃସ୍ଫୂର୍ତ୍ତତା କବିତା କ୍ଷେତ୍ରରେ ସବୁବେଳେ ଗ୍ରହଣ ଯୋଗ୍ୟ । ଓଡିଆ ମାଟିରେ ଓଡିଶୀ ମାନସିକତାରେ ଯୁଗଯୁଗ ଧରି ଯେଉଁ ସବୁ ମହତ୍ ଚିନ୍ତା ଏଠାକାର ମଣିଷକୁ ଆଚ୍ଛନ୍ନ କରିଛି, ସେସବୁକୁ ଅସ୍ୱୀକାର କରିହେବ ନାହିଁ । ଆଧୁନିକ କବିତା ବା ନୂତନ କବିତାରେ ଓଡିଶୀ ସାମାଜିକ ଜୀବନର ପ୍ରଚଳିତ ବହୁ ଲୋକ କାହାଣୀ ଓ କିମ୍ବଦନ୍ତୀର ପ୍ରୟୋଗକୁ ମଧ୍ୟ ନୂତନ ଭାବେ ଗ୍ରହଣ କରାଯାଉଛି । ଅତି କଳ୍ପନା ଓ ପୁରାଣରୁ ପ୍ରଚଳିତ ଏଇ ଲୋକକଥା ଭିତର ଦେଇ କବି ସବୁବେଳେ ନୂଆ କଥା କହିଥାଏ । ଏଥିରୁ ଅନୁମିତ ହୁଏ ଯେ ପରମ୍ପରା ଲୋକଚଳଣୀ, ଅତି କଳ୍ପନା ବହୁ ପ୍ରାଚୀନ କିମ୍ବଦନ୍ତୀ ମାନଙ୍କରେ ନୂତନତା ରହିଛି । ସେଥିପାଇଁ ସତୁରୀ ପରର କବିତା ଓ କବିପରମ୍ପରାକୁ ଆଲୋଚନା କରିବାର ଆବଶ୍ୟକତା ରହିଛି ।

* * *

# ସତୁରୀ ପରବର୍ତ୍ତୀ ଓଡିଆ କବିତାରେ କବି ପ୍ରସନ୍ନ ପାଟ୍ଟଶାଣୀ :

୧୯୪୭ ମସିହା ପରଠାରୁ ଯେଉଁ ଓଡିଆ କାବ୍ୟଧାରା ଓ ତା'ର ପରୀକ୍ଷା ନିରୀକ୍ଷାର ଆରମ୍ଭ ହେଲା, ତାହା ଆଲୋଚନାର ବିଭିନ୍ନ ସ୍ତରରେ ବହୁ ବିରୋଧର ସମ୍ମୁଖୀନ ହୋଇଛି । ଏହି ଧାରା ପ୍ରାୟତଃ ଦୁର୍ବୋଧ୍ୟତା, ଦୋଷଯୁକ୍ତ ହୋଇ ପାଠକୀୟ ଆଦୃତି ବହୁ ପରିମାଣରେ ହରାଇଛି । ଏହିପରି ଏକ ଅବକ୍ଷୟୀ କାବ୍ୟଧାରାରେ ପରିବର୍ତ୍ତନ ଆସିଛି ୧୯୭୦ ବେଳକୁ । ଓଡିଆ କବିତା କ୍ଷେତ୍ରରେ ବୟୋଜ୍ୟେଷ୍ଠ କବିମାନଙ୍କ ପ୍ରତି ବୀତସ୍ପୃହ କେତେକ ନୂତନ ଯୁବଗୋଷ୍ଠୀ ଏତେ ବେଳକୁ ନୂଆ ଏକ କାବ୍ୟସ୍ୱର ଧରି କବିତା କ୍ଷେତ୍ରରେ ଦେଖାଦେଲେ । ଏହି ନୂତନ କବି ଗୋଷ୍ଠୀର ଉଦ୍ଦେଶ୍ୟ ଥିଲା କବିତାର ପାଠକୀୟ ଆବେଦନ ବଢାଇବା ସଙ୍ଗେ ସଙ୍ଗେ ସରଳତାର ଅନୁବର୍ତ୍ତନ କରାଇବା । ପରମ୍ପରା ବିରୁଦ୍ଧରେ ପରମ୍ପରା ମୁକ୍ତି ଓ ବିଶୃଙ୍ଖଳିତ ସାହିତ୍ୟଠାରୁ ଏମାନେ ଦୂରେଇ ଆସିବା ସହିତ ଐତିହ୍ୟ ଓ ପରମ୍ପରାକୁ ଏମାନେ ପୁନଃ ଅନୁସରଣ କରିଛନ୍ତି । ଏହି ଯୁବକବିଗୋଷ୍ଠୀ ସତୁରୀ ବେଳକୁ କବିତାରେ ପ୍ରତିଷ୍ଠିତ ଓଡିଆ ପାଠକମାନଙ୍କଠାରେ ଏକ ରୁଚିଗତ ପରିବର୍ତ୍ତନ ଆଣିବା ଏମାନଙ୍କର ଥିଲା ପ୍ରଧାନ ଉଦ୍ଦେଶ୍ୟ । ଏହି ଉଦ୍ଦେଶ୍ୟକୁ ଧରି ଅବକ୍ଷୟ ଭିତରୁ ଓଡିଆ କାବ୍ୟସ୍ୱରକୁ ମୁକୁଳାଇ ଆଙ୍ଗିକ କ୍ଷେତ୍ରରେ ନୂତନ ବିପ୍ଳବ ସୃଷ୍ଟି କରିବାରେ ଏମାନେ ବଦ୍ଧପରିକର ଥିଲେ ।

ଏମିତି ଏକ ସମୟ ବେଳକୁ କବି ପ୍ରସନ୍ନ ପାଟ୍ଟଶାଣୀ ପୂର୍ଣ୍ଣ ପ୍ରତିଷ୍ଠିତ । ନିଜର ସ୍ୱତନ୍ତ୍ର କାବ୍ୟ ଅଭିରୁଚି ଧରି ଓଡିଆ କବିତାରେ ସ୍ୱାଧୀନତା ପରେ ମାର୍କସ ବାଦର ପ୍ରଚାର ସାଙ୍ଗକୁ ସାମ୍ୟବାଦ ବିପ୍ଳବର ସ୍ୱର ତୋଳି ଆତ୍ମପ୍ରକାଶ କରିଛନ୍ତି । ୧୯୭୧ର ବହୁ ପୂର୍ବରୁ ଦୁର୍ଗାଚରଣ ପରିଡା, ଦୁର୍ଗାଚରଣ କୁଅଁର, କମଳାକାନ୍ତ ଲେଙ୍କା ପ୍ରମୁଖ କବିମାନେ ମିନି କବିତା ରଚନା କରିବା ସହିତ ଏହି ନୂତନ ଗୋଷ୍ଠୀ ମଧ୍ୟ ଏଇ ଧାରାକୁ ପରିପୁଷ୍ଟକରି ଏହାକୁ ଏକ କାବ୍ୟିକ ଆନ୍ଦୋଳନରେ ପରିଣତ କରିଥିଲେ । ଏଇ ମିନି କବିତା ଆନ୍ଦୋଳନର ଅନ୍ୟତମ ମୁଖ୍ୟ ପୁରୋଧାଭାବେ ପାଟ୍ଟଶାଣୀଙ୍କୁ ଦେଖିବାକୁ ମିଳେ । ଜୀବନ ତଥା କବିତା ପ୍ରତି ଏକ ସ୍ୱତନ୍ତ୍ର ଦୃଷ୍ଟିଭଙ୍ଗୀ ତାଙ୍କୁ କବିତା କ୍ଷେତ୍ରରେ ସ୍ୱାତନ୍ତ୍ର୍ୟ ଦେଇଥିଲା । କବିତା ମାଧ୍ୟମରେ ପାଠକ ସହ ଏକ ପ୍ରତ୍ୟକ୍ଷ ସମ୍ପର୍କ ରଖିବା ସହିତ କବିତାର ଭାଷାରେ ସରଳତା ଓ ଭାବର ନିବିଡତା ସେ ଅବଲମ୍ବନ କରିଛନ୍ତି । ତାଙ୍କର ସମଗ୍ର କାବ୍ୟକୃତି ପୂର୍ବ ପ୍ରଚଳିତ ଦୁର୍ବୋଧ୍ୟ ଦୋଷଯୁକ୍ତ ପରୀକ୍ଷାଧର୍ମୀ ବିଶୃଙ୍ଖଳିତ ଆବେଗର କବିତା ବିରୋଧରେ ଏକ କାବ୍ୟିକ ପ୍ରତିବାଦ କହିଲେ ଅତ୍ୟୁକ୍ତି ହେବନାହିଁ । ସେ

ପ୍ରକୃତି, ଜୀବନ ଓ ଜୀବନର ସମସ୍ତ ଝଡଝଞ୍ଜାକୁ ଗୋଟିଏ ଦୃଷ୍ଟିରେ ତଉଲି ତାକୁ କବିତାରେ ପ୍ରୟୋଗ କରିଛନ୍ତି। ଯେଉଁ ସମୟରେ ଓଡିଆ କବିତାରେ ଏକ ମୌଳିକ ଅଭାବବୋଧ ଦେଖାଦେଇଥିଲା, ସେଇବେଳକୁ କବିତାକୁ ସ୍ୱତନ୍ତ୍ର ଦିଗଦର୍ଶନ ଦେବା ସହିତ ଏହି ଯୁବ କବିମାନଙ୍କର ପ୍ରତିନିଧିତ୍ୱ କରି ସେ ଓଡିଆ ପାଠକମାନଙ୍କ ନିକଟରେ ଆଦୃତ। ସବୁବେଳେ ଏକ ନିର୍ଦ୍ଦିଷ୍ଟ ଶ୍ରେଣୀର ପାଠକ ଏହି କବିଙ୍କ କବିତାକୁ ଅପେକ୍ଷା ରଖିଛନ୍ତି। ବୋଧହୁଏ ଏହି ସମୟବେଳକୁ ଓଡିଆ କବିତା ସହରୀ ଆବହାଓ୍ୱା ଡେଇଁ ଗାଁ ଗହଳି ମାନଙ୍କରେ ତା'ର ପ୍ରଭାବ ବିସ୍ତାର କରିଛି। ତା'ର ପ୍ରତ୍ୟକ୍ଷ ପ୍ରମାଣ ହେଉଛି, ଗାଆଁମାନଙ୍କରେ ଗଢି ଉଠିଥିବା ସାହିତ୍ୟ ସଂସଦ ଓ ବିଭିନ୍ନ ସମୟରେ ଏହି କବି ଓ ଅନ୍ୟ ଯୁବକବିମାନଙ୍କ ପ୍ରତିନିଧିତ୍ୱରେ ହେଉଥିବା କବିତା ପାଠୋତ୍ସବ। କହିବା ବାହୁଲ୍ୟ, ଆଲୋଚ୍ୟ ସମୟ ବେଳକୁ ଓଡିଆ କବିତାର ପାଠକ ସଂଖ୍ୟା ତୁଳନାତ୍ମକ ଦୃଷ୍ଟିରୁ ଆଗ ଅପେକ୍ଷା ବୃଦ୍ଧି ପାଇଛନ୍ତି। ସାଧୀନତା ପରେ ପରେ ଦ୍ୱିତୀୟ ବିଶ୍ୱଯୁଦ୍ଧ ପରବର୍ତ୍ତୀ ଓଡିଆ କବିତାର ଦୁର୍ବୋଧ୍ୟତା ବିରୁଦ୍ଧରେ କାବ୍ୟିକ ଆନ୍ଦୋଳନର ସୂତ୍ରପାତ ଏହି ସମୟରେ ଘଟିଥିଲା।

ଐତିହାସିକ 'ବେଳା' (୧୯୬୮) ପତ୍ରିକାର ସମ୍ପାଦନା କରିବା ସଙ୍ଗେ ସଙ୍ଗେ ପୁଞ୍ଜିବାଦ ଓ ଶୋଷଣ ବିରୋଧରେ ଏକ ବୈପ୍ଲବିକ ଆହ୍ୱାନ ଚଳାଇ ଏଇ କବି ଅବକ୍ଷୟ ଭିତରେ ବି ବିପ୍ଲବକୁ ଧରି ରଖିଛନ୍ତି। ଦୀର୍ଘ କାବ୍ୟ ରଚନାର ପରମ୍ପରା ଓ ଐତିହାସିକ ତଥା ଭ୍ରମଣ ଅନୁଭୂତି ସମ୍ବଳିତ କବିତା ରଚନା କରି କାବ୍ୟଧାରାରେ ନୂତନତା ଆଣିବାରେ ବୋଧହୁଏ ଏଇ କବି ପ୍ରଥମ। କବିତା ସହିତ କବି ନିଜେ ସବୁବେଳେ ପାଠକର ଆପଣାର ହୋଇଛନ୍ତି। ପ୍ରକୃତିକୁ ନିଜ କବିତାର ପ୍ରେରଣାଭାବେ ଗ୍ରହଣ କରିଛନ୍ତି।

ଜୀବନର ଖଣ୍ଡଖଣ୍ଡ ଅନୁଭୂତି କବିଙ୍କୁ ଅତିମାତ୍ରାରେ ଜୀବନ ବାଦୀ କରିଛି। ଅହେତୁକ ଘଟଣାର ଭୟରେ ଜୀବନକୁ ଭୟକରି ମୃତ୍ୟୁ ନିକଟରେ ଆତ୍ମସମର୍ପଣ କରିନାହାନ୍ତି। ବରଂ ଜୀବନକୁ ବଞ୍ଚିବାର ସମସ୍ତ ଉପାୟ ଖୋଜି ବାହାର କରିଛନ୍ତି। କବି ନିଜ ଜୀବନର ସୁଖ ଦୁଃଖ ଓ ଯନ୍ତ୍ରଣାକୁ କବିତା ରଚନାର ପ୍ରେରଣା ଭାବେ ଗ୍ରହଣ କରିଛନ୍ତି। ଏକ କାବ୍ୟମୟ ଜୀବନ ସେ ବିତେଇ ଆସୁଛନ୍ତି। ଏହି ଦୃଷ୍ଟିରୁ କବି ଅନ୍ୟମାନଙ୍କଠାରୁ ନିଶ୍ଚିତ ସ୍ୱତନ୍ତ୍ର। ସେ କେବେ କବିତା ଲେଖିବା ପାଇଁ ନିର୍ଦ୍ଦିଷ୍ଟ ପରିବେଶରେ ଅପେକ୍ଷା ରଖିନାହାନ୍ତି। ପ୍ରତ୍ୟେକ ସମୟରେ ସେ କବି। ଏକ ନିରବଚ୍ଛିନ୍ନ ସ୍ୱତଃସ୍ଫୂର୍ତ୍ତତା ତାଙ୍କଠି ଲକ୍ଷ୍ୟ କରାଯାଏ। ସ୍ୱାଧୀନତା ପରବର୍ତ୍ତୀ କାଳରେ ସତୁରୀ ବେଳକୁ ପ୍ରତିଷ୍ଠିତ ଏଇ କବି ଓଡିଆ ପାଠକ ନିକଟରେ ଯେତିକି ଆଦୃତ, ସାହିତ୍ୟର ସାଙ୍ଗଠନିକ ବିକାଶ ଦୃଷ୍ଟିରୁ ସେତିକି ଅଭିନନ୍ଦନୀୟ।

ଅବଶ୍ୟ କବିଙ୍କ କାବ୍ୟ ସାଧନାରେ ଯେଉଁ ପରିବର୍ତ୍ତନ ଆସିଛି, ତାହା ଲକ୍ଷଣୀୟ। ମାତ୍ର ଏହି ପରିବର୍ତ୍ତନ ସମୟୋଚିତ। ଜୀବନର ସବୁ ଅନୁଭୂତି ସହ ଏହା ସମ୍ପର୍କିତ। ଯେତେବେଳେ ଯେଉଁ ଘଟଣା ବା ଅଭିଜ୍ଞତା କବିଙ୍କ ମାନସିକ ସ୍ଥିତିକୁ ଆନ୍ଦୋଳିତ କରିଛି। ସେତେବେଳେ ସେଇ ଧରଣର କବିତା ସୃଷ୍ଟି ହୋଇଛି। ସେ ସବୁଠି ମଣିଷକୁ ଭଲପାଇବା, ପ୍ରେମ, ପ୍ରକୃତି ଓ ନାରୀକୁ ନିଜ ଜୀବନ ସଂଘର୍ଷ ସହ ଜଡିତ କରି ଅନୁଭବ କରିଛନ୍ତି। ଏହି ଦୃଷ୍ଟିରୁ କବି ପ୍ରସନ୍ନ ପାଟଶାଣୀଙ୍କ କବିତା ଏକ ସ୍ୱତନ୍ତ୍ର ମୂଲ୍ୟାୟନର ଅପେକ୍ଷା ରଖେ।

# ଦ୍ୱିତୀୟ ପରିଚ୍ଛେଦ

# କବି ଜୀବନୀ ଓ କବିତା

ସାହିତ୍ୟ ଯୁଗେ ଯୁଗେ ନୂତନ ସମ୍ଭାବନା ଓ ଅନ୍ତର୍ଦ୍ଦୃଷ୍ଟି ପରମ୍ପରାକୁ ନେଇ ଗତି କରେ । ଏଥିରେ କେତେବେଳେ ମଣିଷ, କେତେବେଳେ ସମାଜ ଓ କେତେବେଳେ ମନୁଷ୍ୟେତର ସମ୍ପର୍କରେ ବର୍ଣ୍ଣନା ଦେଖିବାକୁ ମିଳେ । ଯଦିଓ ପ୍ରତ୍ୟେକ ସାହିତ୍ୟ କୃତିରେ ମଣିଷ ଓ ମଣିଷର ପରିବେଶ ଏହିପରି ଦୁଇଟି କଥା ଦେଖିବାକୁ ମିଳେ । ତଥାପି କବିତା କ୍ଷେତ୍ରରେ ଏହାର ବ୍ୟତିକ୍ରମ ପରିଲକ୍ଷିତ ହୁଏ । କାରଣ କବିତା ସବୁସମୟରେ ଯୁଗ ପ୍ରଭାବର ଫଳ ନୁହେଁ । ଏଥିରେ ପରିବେଶ ବ୍ୟତୀତ କବିର ବ୍ୟକ୍ତିତ୍ୱ, ଅନୁଭୂତି ଓ ଚିନ୍ତା ପ୍ରତିଫଳିତ ହୁଏ । ସମଗ୍ର କାବ୍ୟ ବ୍ୟାପାରକୁ ସଫଳ କରିବାର ଅମୋଘ ଶକ୍ତି ହେଉଛି ପ୍ରତିଭା । ତେଣୁ କବିତାକୁ ପ୍ରତିଭା ଓ କଳ୍ପନାର ଅଭିବ୍ୟଞ୍ଜନା ବୋଲି କବି 'ଶେଲୀ' କହିଛନ୍ତି । କବି ନିଜ ଆଖିର ଔଜଲ୍ୟରେ ସମଗ୍ର ଦୃଶ୍ୟଭିତରେ ଥିବା ଆର ଦୃଶ୍ୟକୁ ସାମ୍ନା କରିବାରେ ସମର୍ଥ ହୋଇଥାଏ । ଏଣୁ ପ୍ରତ୍ୟେକ ସାହିତ୍ୟ ଗ୍ରନ୍ଥର ଅନ୍ତରାଳରେ ଏକ କବିସତ୍ତାକୁ ଆମେ ଉପଲବ୍ଧି କରୁ ।

"There is a man behind a book and Judging of the quality of literature becomes vital, If we try to think of the author not as a mysterious, disembodied force but rather as a man who wrote to satisfy needs and to resolve difficulties which are common to us. Literature does not grow by combustious. It is the product of men and women who made it out of their lives." ( Chand & Co.-Literature and the individuals, critical essays-p-28.)

ଅତଏବ କବି ପ୍ରଥମତଃ ଏକ ରକ୍ତମାଂସର ମଣିଷ, ପରେ ସେ ଦ୍ରଷ୍ଟା ବା ଆଉକିଛି । କବିର କାବ୍ୟ ଦୃଷ୍ଟି ବେଳେବେଳେ ଦେହରୁ ହୁଏ ଦେହାତୀତ । ମୃତ୍ୟୁରୁ ହୁଏ ଅମୃତ ଓ ଜଡରୁ ହୁଏ ଜୀବନ । 'ଅପାରେ କାବ୍ୟସଂସାରେ କବିରେବ ପ୍ରଜାପତିର ଅର୍ଥରୁ ଅପୂର୍ବ ବସ୍ତୁ ନିର୍ମାଣକ୍ଷମ ପ୍ରଜ୍ଞା ଓ ନବୋନ୍ମେଷଶାଳିନୀ ପ୍ରତିଭାର ବିକାଶ କଥା ଲକ୍ଷ୍ୟ କରାଯାଏ । ପ୍ରମୁଖ ଆଲୋଚକ ଓ କବିମାନେ କବିତାର ସ୍ୱତଃ ସ୍ଫୂର୍ତ୍ତ ଉପରେ ମଧ୍ୟ ଗୁରୁତ୍ୱ ଆରୋପ କରିଥାଆନ୍ତି । ହୋରେସ୍ ତାଙ୍କର ''ଆର୍ସପୋଏଟିକା'' ଗ୍ରନ୍ଥରେ କହିଛନ୍ତି-''ପ୍ରେରଣା ବିନା କେବଳ ପ୍ରଜ୍ଞା କୌଣସି ଉଚ୍ଚତର କୋଟୀକୁ ସ୍ପର୍ଶ କରିପାରେନାହିଁ ଏବଂ ଏହାହିଁ କବିତ୍ୱ ।''

"People like to ask whether a good poem come natural or it produced by craft. So far as I can see neither book learning without a lot of inspiration nor unimproved genious can get very far. The two things work together and need each together." "(2-Wimsaft and brooks w.k. - Literary criticism: A short History. Page-93).

ଏଣୁ କବିଙ୍କ ପ୍ରେରଣାର ଉତ୍ସ ସମ୍ପର୍କରେ ଏଠାରେ କିଞ୍ଚିତ ଆଲୋଚନା କରା ଯାଇପାରେ । ଅନେକ ଆଲୋଚକମାନଙ୍କ ମତରେ କବିର ମୁଖ୍ୟ ପ୍ରେରଣା ସମାଜ ଓ ସମାଜରେ ବାସ କରୁଥିବା ମଣିଷ । କେତେବେଳେ ତା'ଆଖିରେ ନାଚି ଉଠେ ଏକ ଶୋଷିତ ନିରନ୍ନ ମଣିଷର ଚିତ୍ର ତ କେତେବେଳେ ଜହ୍ନ ରାତି, ନଈକୂଳର ଯୋରିଷ ପଠାରେ ବିହ୍ୱଳିତ ହୋଇ ପଡୁଥିବା ରୋମାଣ୍ଟିକ୍ ମଣିଷ ବା କେବେ କେବେ ପର୍ବତ ଗୁହା ବା ଅଜ୍ଞାତ ଅରଣ୍ୟରେ କୃଚ୍ଛ୍ର ସାଧନା କରୁଥିବା ମଣିଷର ଚିତ୍ର । ଉକ୍ତ ପରିପ୍ରେକ୍ଷୀରେ କବି ପ୍ରସନ୍ନ ପାଟଶାଣୀଙ୍କ କାବ୍ୟ, ବିଚାରକୁ ନିଆଯାଇପାରେ । ପ୍ରଜ୍ଞା, ପ୍ରତିଭା ଓ ସ୍ୱତଃସ୍ଫୂର୍ତ୍ତତାର ସମନ୍ୱୟ ହେଲେ କବି ପାଟଶାଣୀ ।

ଜୀବନର ବହୁ ଝଡଝଞ୍ଜା, ଘାତପ୍ରତିଘାତ ଓ ନାନା ଅନୁଭୂତିର ମୂଳଦୁଆ ଉପରେ ତାଙ୍କର କାବ୍ୟଜୀବନର ହର୍ମ୍ୟ ପ୍ରତିଷ୍ଠିତ। ଶୈଶବର ଚିଲିକା, ତା'ର ନୀଳ ଜଳରାଶି, ତା'ଉପରେ ସନ୍ତରଣଶୀଳ ବିହଙ୍ଗମକୁଳ, ସୋଲରୀ, ଭାଲେରୀ, ଜଟିଆନାସି ପ୍ରମୁଖ ପାହାଡର ଶ୍ୟାମଳ ମୌନତା ତଥା ଗୈରିକ ଅନୁଭବ, ଛାତ୍ର ଜୀବନରୁ ରାଜନୀତି ସହ ସମ୍ପର୍କ, ଯୌବନର ଆଦ୍ୟ କାଳରେ ନକ୍ସଲ ଚେତନା ଦ୍ୱାରା ଅନୁପ୍ରାଣିତ, ବିଭିନ୍ନ ସ୍ଥାନ, ବିଭିନ୍ନ ସ୍ଥାନମାନଙ୍କରେ ଅଜ୍ଞାତବାସ, ବିଭିନ୍ନ ଯୋଗସାଧନା ଶିକ୍ଷା, ପରେ ପରେ ରାଜନୀତିରେ ଯୋଗଦାନ ଓ ପ୍ରତ୍ୟକ୍ଷ ଲୋକସମ୍ପର୍କ, ବିଦେଶର ବିଭିନ୍ନ ସ୍ଥାନ ପରିଭ୍ରମଣ, ବିଭିନ୍ନ ଶାସ୍ତ୍ର ଅଧ୍ୟୟନ ଓ ଅନୁଶୀଳନ ଇତ୍ୟାଦି ତାଙ୍କର କବିତ୍ୱକୁ ଋଦ୍ଧିମନ୍ତ କରିପାରିଛି। ଏହିସବୁ ସଂସର୍ଗ ଓ ମାନସିକ ଉପଲବ୍ଧି ତାଙ୍କ ଭିତରେ ଏକ ରସ ବ୍ୟଞ୍ଜିତ କବି ପ୍ରାଣର ଉନ୍ମେଷ ଘଟାଇଛି । ଜୀବନର ସବୁ ବିଚିତ୍ର ଓ ବିପୁଳ ଅଭିଜ୍ଞତାକୁ ନେଇ ସେ ସୃଷ୍ଟି କରିଛନ୍ତି ତାଙ୍କ କବିତା ପୁସ୍ତକମାନଙ୍କରେ ଚିତ୍ରକଳ୍ପ, ପ୍ରତୀକ ଓ ଅଭିନବ ଶବ୍ଦବ୍ୟଞ୍ଜନା । ତେଣୁ କବିର ବ୍ୟକ୍ତିଗତ ଜୀବନ ଭିତରେ ଆଉ ଏକ କବିଜୀବନ ପଦ୍ମପତ୍ର ଉପରେ ପାଣିବିନ୍ଦୁ ପରି ରହିଥାଏ । ତାହାକୁ ଆମେ ତୃତୀୟ ପୁରୁଷ/କାବ୍ୟନାୟକ/ଦ୍ରଷ୍ଟା/ତୃତୀୟ ଚକ୍ଷୁ/ଭିତର ମଣିଷ/ଭାବରେ ପରିକଳ୍ପନା କରିପାରିବା । କାବ୍ୟ ପୁରୁଷ ଅନାସକ୍ତ ଯୋଗରେ ଦୀକ୍ଷିତ ଥିଲାବେଳେ କବି ସଂସାରୀ ବାସ୍ତବଜୀବନ ଆସକ୍ତ ଯୋଗରେ ଥାଏ। କବି ଜୀବନ ଏକ ଆଦର୍ଶ। Utopia-ଅବାସ୍ତବ କଳ୍ପନାରେ ଗଠିତ ତା'ର ଶରୀର । କବି ବାସ୍ତବ ଜୀବନଠାରୁ ଦୂରରେ ରୁହେ ଏବଂ କବିର ବ୍ୟକ୍ତିଗତ ଜୀବନକୁ ଦୂରପରବତ ସୁନ୍ଦର ଭଳି ଅହରହ ପ୍ରଭାବିତ କରୁଥାଏ । କିନ୍ତୁ କବି ପୁରୁଷ କବିର ବାସ୍ତବ ଜୀବନ ମାଧ୍ୟମଦେଇ ଘଟଣା, ଦୁର୍ଘଟଣା, ଅନୁଭୂତି ଓ ଅଭିଜ୍ଞତା ଭିତରୁ ସାରାଂଶ ନେଇ ପରିପୁଷ୍ଟ ହୁଏ । ତେଣୁ କବି ଭିତରେ ଥିବା କାବ୍ୟସତ୍ତା ସୂର୍ଯ୍ୟଭଳି । ସୂର୍ଯ୍ୟ ଯେପରି ନାଳ ନର୍ଦ୍ଦମା, ଗାଡିଆ, ନଈ ଓ ସମୁଦ୍ରରୁ ପାଣିନେଇ ନିର୍ମଳ ଜଳଧାରାରେ ବର୍ଷା କରାଏ, ସେହିପରି କାବ୍ୟସତ୍ତା କବିର ବ୍ୟକ୍ତିଗତ ଜୀବନରେ ଘଟୁଥିବା ବହୁଳ ତିକ୍ତ ମଧୁର ଘଟଣା ଓ ଅନୁଭୂତି ଭିତରୁ ସାର ଭାବବସ୍ତୁକୁ ଗ୍ରହଣ କରି କବିତା ଆକାରରେ ପରିପ୍ରକାଶ

କରେ । ବର୍ଷାର ମୁଖ୍ୟ ଉଦେଶ୍ୟ ଜନକଲ୍ୟାଣ ପରି କବିତାର ମୌଳିକ ଲକ୍ଷ୍ୟ ମଧ୍ୟ ସେହିପରି ଜନକଲ୍ୟାଣ ଅଟେ । କବିର ଜୀବନଧର୍ମ ସହିତ କାବ୍ୟଧର୍ମ ଜଡ଼ିତ ହୋଇପାରେ ପୁଣି ନ ହୋଇପାରେ ମଧ୍ୟ । କିନ୍ତୁ କବି ପ୍ରସନ୍ନ ପାଟଶାଣୀଙ୍କ କ୍ଷେତ୍ରରେ ତାଙ୍କର ବ୍ୟକ୍ତିଗତ ଜୀବନ ସହିତ କାବ୍ୟସତ୍ତାର ଏକ ମଧୁର ସମନ୍ୱୟ ପରିଲକ୍ଷିତ ହୁଏ । କବି ନକ୍ସଲ ଆନ୍ଦୋଳନରେ ଜଙ୍ଗଲରେ ଲୁଚିଲୁଚି ବିପ୍ଲବ କରୁଥିବା ସମୟରେ କବିର ପରିବେଶ, ଚିନ୍ତା, ଚେତନା ଓ ଆଶଙ୍କା ସବୁ ଏକତ୍ର ମିଶି ଏକ ସ୍ୱତନ୍ତ୍ର କାବ୍ୟିକ ବ୍ୟଞ୍ଜନା ସୃଷ୍ଟି କରିଛି । ତେଣୁ କବି ଓ ତା'ର ପରିବେଶ ପରସ୍ପର ପରିପୂରକ । କବିର ଜୀବନ ଧର୍ମ ତା'ର ବିଭିନ୍ନ ସମୟରେ ଭିନ୍ନଭିନ୍ନ ଭାବରେ କବିତାରେ ପ୍ରତିଫଳିତ ହୋଇଛି । କବି ଯେତେବେଳେ ଜଣେ ବିପ୍ଲବୀ ଭୂମିକାରେ ଅବତୀର୍ଣ୍ଣ ହୋଇଛନ୍ତି ସେତେବେଳେ ବିପ୍ଲବଧର୍ମୀ ସାମ୍ୟବାଦୀ କବିତା ରଚନା କରିଛନ୍ତି । ଯେତେବେଳେ ସେ ଯୋଗୀ, ସେତେବେଳେ ରଚନା କରିଛନ୍ତି ଆଧ୍ୟାତ୍ମିକ କବିତା ଏବଂ ଯେତେବେଳେ ସେ ମନ୍ତ୍ରୀ, ସେତେବେଳେ ରାଜନୀତିକୁ ଆଶ୍ରୟ କରି କବିତା ରଚନା କରିଛନ୍ତି । କବି ପାଟଶାଣୀ ତାଙ୍କ କବିତାରେ ମଣିଷର ଆବେଗ, ତା'ର ଚିରନ୍ତନ ମନ, ହସ, ଲୁହ, କଳ୍ପନା ବାସ୍ତବତା, ପୁରାଣ, ସାମ୍ପ୍ରତିକତା ଇତ୍ୟାଦିକୁ ଜୀବନ୍ତଭାବରେ ସମନ୍ୱିତ କରି ବିପୁଳ ଲୋକପ୍ରିୟତା ଅର୍ଜନ କରିଛନ୍ତି ।

କବିର ବ୍ୟକ୍ତିଗତ ଜୀବନର ଅନୁଭୂତି କବିତାକୁ ପରିପୁଷ୍ଟକରେ । ଯେପରି ଆଲୋଚକ ସୌରୀନ୍ଦ୍ର ବାରିକ କହନ୍ତି-''କବି ହେଉଛି ବିଶ୍ୱ ଜୀବନର ଚେତନ ସତ୍ତା । ତେଣୁ କବିର ଅନୁଭୂତିର ଇଲାକା ହେଉଛି ଦୁଇଟି । ଗୋଟିଏ ତା'ର ଆତ୍ମାର ଅନ୍ତଃପୁର ଓ ଅନ୍ୟଟି ତା'ର ଚାରିପାଖର ସମାଜ ଓ ମଣିଷ ।''

କବିର ବ୍ୟକ୍ତିଚେତନା ବେଳେବେଳେ ସାମାଜିକ, ରାଜନୈତିକ ଓ ସାଂସ୍କୃତିକ ପରିବେଶ ଦ୍ୱାରା ନିୟନ୍ତ୍ରିତ ହୁଏ । ଜୀବନଯାପନର ପ୍ରବହମାନତାରେ କବି ମାନସର ପରିବର୍ତ୍ତନ ହୋଇଛି ଆଲୋଚ୍ୟ କବିଙ୍କ କ୍ଷେତ୍ରରେ । ନକ୍ସଲାଇଟଠୁ ସନ୍ନ୍ୟାସୀ ହେବା ଯାଏ, ପୁଣି ସନ୍ନ୍ୟାସରୁ ରାଜନୀତିର ସିଂହାସନ ଯାଏ ବହୁ ବିଚିତ୍ର, ବର୍ଣ୍ଣିଳ ଅଭିଜ୍ଞତାରେ ତାଙ୍କର କବିତ୍ୱ ପରିପୂର୍ଣ୍ଣ । ଏହି ସବୁ ଅଭିଜ୍ଞତାର ମୂର୍ତ୍ତରୂପ ହେଉଛି ତାଙ୍କର ସମସ୍ତ କବିତା ।

ଏହି ଦୃଷ୍ଟିରୁ କବିଙ୍କର ବିଭିନ୍ନ ଅନୁଭୂତି ଓ ଅଭିଜ୍ଞତାରେ ପରିପୂର୍ଣ୍ଣ ଜୀବନଧାରାକୁ ସଂକ୍ଷେପରେ ଆଲୋଚନା କରାଯାଇପାରେ ।

## (କ) କବି ଜୀବନୀ

### ଶଙ୍ଖଧ୍ୱନିରୁ ସଂଗ୍ରାମ

ଚିଲିକାର ନୀଳ ଜଳରାଶି, ପକ୍ଷୀମାନଙ୍କ କାକଳୀପୂର୍ଣ୍ଣ ପରିବେଶରେ ପିତା ଅନିରୁଦ୍ଧ ପାଟଶାଣୀ ଓ ମାତା ବିଦ୍ରୁମଣି ଦେବୀଙ୍କର ଅଷ୍ଟମ ସନ୍ତାନ ଭାବେ କବି ପ୍ରସନ୍ନ ପାଟଶାଣୀ ୧୯୪୬ ମସିହା ଅପ୍ରେଲ ମାସ ୨୭ ତାରିଖରେ ଜନ୍ମଲାଭ କରିଥିଲେ । ଘିଅଖଲା ଗାଆଁର ପ୍ରାକୃତିକ ବିଭବ ଭିତରେ କବିଙ୍କର ବାଲ୍ୟଜୀବନ ଅତିବାହିତ ହୋଇଥିଲା । ପାଞ୍ଚବର୍ଷ ପର୍ଯ୍ୟନ୍ତ ସେ ତାଙ୍କର ଶୈଶବ ଏହି ଘିଅଖଲା ଗାଆଁରେ କଟାଇଥିଲେ । ତାଙ୍କର ପିତା ଅନିରୁଦ୍ଧ ପାଟଶାଣୀ

ଥିଲେ ସେ ଅଞ୍ଚଳର ଜଣେ ଜଣାଶୁଣା ବୈଦ୍ୟ ଓ ସ୍ୱାଧୀନତା ସଂଗ୍ରାମୀ । ପ୍ରାୟ ଦଶବର୍ଷ ଧରି ସେ ବାଲୁଗାଁ ଅଞ୍ଚଳର ଜଣେ ଲୋକପ୍ରିୟ ସରପଞ୍ଚ ଥିଲେ । ଏଣୁ କବିଙ୍କର ବାଲ୍ୟଜୀବନର ଗୋଟିଏ ପଟେ ସେବା, ରାଜନୀତି ଓ ଅନ୍ୟପଟେ ପ୍ରାକୃତିକ ବିଭବ ମଣ୍ଡିତ ଚିଲିକାର ଅପରୂପ ସୌନ୍ଦର୍ଯ୍ୟର ମୋହ ତାଙ୍କୁ ଦୁଇଗୋଟି ଚେତନା ମଧ୍ୟରେ ଅବସ୍ଥାପିତ କରିଥିଲା । ଏକ ନିମ୍ନ ମଧ୍ୟବିତ୍ତ କୃଷକ ପରିବାର ଭିତରେ ଯେତିକି ସ୍ୱପ୍ନ ଓ ସମ୍ଭାବନାକୁ ନେଇ ଜୀବନର ଚୌହଦୀ ଗଢାହେବା କଥା ସେତକ କବିଙ୍କ ଜୀବନରେ ଘଟିଥିଲା । ଶୈଶବ ଅବସ୍ଥାରେ ସେ କେବେ ଅଭାବ ଅନାଟନର ସମ୍ମୁଖୀନ ହୋଇ ନ ଥିଲେ । ଜନ୍ମର ପାଞ୍ଚବର୍ଷପରେ ପିତା ଅନିରୁଦ୍ଧ ପାଟଶାଣୀ ଘିଅଖଲା ଗ୍ରାମଠାରୁ ପ୍ରାୟ ଦୁଇ କିଲୋମିଟର ଦୂର ବାଲୁଗାଁଠାରେ ଘର ତୋଳି ପରିବାର ସହିତ ରହିଥିଲେ । ସମ୍ପ୍ରତି ଯାହାକୁ ବାଲୁଗାଁ ବଜାର ବୋଲି କୁହାଯାଉଛି । ସେତେବେଳେ ତାହା ଏକ ଗ୍ରାମ ମାତ୍ର ଥିଲା । କବିଙ୍କର କେହି ଭାଇଭଉଣୀ ବଞ୍ଚୁ ନ ଥିବାରୁ ତାଙ୍କର ପିତାମାତା ଗାଆଁର କୌଳିକ ପ୍ରଥା ହିସାବରେ କବିଙ୍କୁ ହୀରାବୋଉ ନାମକ ଏକ ଧୋବଣୀକୁ ବିକି ଦେଇଥିଲେ । ତାଙ୍କ ମାଆ ଚାହୁଁଥିଲେ ପୁଅ ତାଙ୍କର ସନ୍ନ୍ୟାସୀ ହେଉ । ମାଆଙ୍କର ଏହି ଧର୍ମବିଶ୍ୱାସ, କବିଙ୍କ ଚପଳମନରେ ପିଲାଦିନୁ ଧର୍ମ ଓ ଈଶ୍ୱରଙ୍କ ପ୍ରତି ଏକ ଗଭୀର ଅନୁରାଗ ସୃଷ୍ଟି କରିଥିଲା । ଏଣୁ ସେ ବାଲ୍ୟକାଳରୁ ବିଭିନ୍ନ ପ୍ରବଚନ, ସଙ୍କୀର୍ତ୍ତନ, ହରିଭଜନ, ଭାଗବତ ପାରାୟଣ ଇତ୍ୟାଦି ଅନୁଷ୍ଠାନରେ ବାପାଙ୍କ ସହ ଯୋଗ ଦେଉଥିଲେ ।

### ପ୍ରାଥମିକ ଶିକ୍ଷା, ସଂଗଠନ ଓ ସାହିତ୍ୟ

ବାଲୁଗାଁରେ ଥିବା ନିମ୍ନପ୍ରାଥମିକ ଓ ମାଧ୍ୟମିକ ସ୍କୁଲରେ କବି ପ୍ରସନ୍ନ ପାଟଶାଣୀ ତାଙ୍କର ପ୍ରାଥମିକ ଶିକ୍ଷା ଆରମ୍ଭ କରିଥିଲେ । ଏହି ସମୟରୁ ତାଙ୍କର କବିତା ପ୍ରତି ଅନୁରାଗ ଥିଲା ବୋଲି କବି ତାଙ୍କ ସହ ଏକ ସାକ୍ଷାତକାରରେ ପ୍ରକାଶ କରିଛନ୍ତି । ପାଠ ପଢିବା ସହିତ ଖେଳକୁଦ ଓ ଅଭିନୟ ମଧ୍ୟ କରିବାକୁ ସେ ଭଲ ପାଉଥିଲେ । 'କାଞ୍ଚି ଅଭିଯାନ' ନାଟକରେ ସେ କାଞ୍ଚିରାଜା ଅଭିନୟ କରି ସ୍କୁଲ ଶିକ୍ଷକ ଓ ଛାତ୍ରମାନଙ୍କର ପ୍ରିୟପାତ୍ର ହୋଇପଡିଥିଲେ । ଚତୁର୍ଥ ଶ୍ରେଣୀରୁ ଅଷ୍ଟମଶ୍ରେଣୀ ପର୍ଯ୍ୟନ୍ତ ସେ ଶ୍ରେଣୀରେ ମନିଟର ଥିଲେ । କହିବା ବାହୁଲ୍ୟ, କବିଙ୍କ ଭିତରେ ନେତୃତ୍ୱ ନେବାର ଏକ ଗୁଣ ଛାତ୍ରାବସ୍ଥାରୁ ଅନୁଭୂତ ହୋଇଥିଲା । ତାଙ୍କର ପିତା ତାଙ୍କୁ ବାଲୁଗାଁ ସ୍କୁଲରୁ ନେଇ କୁହୁଡି ଜନତା ହାଇସ୍କୁଲରେ ନାମ ଲେଖାଇ ଦେଇଥିଲେ । ସେଠାରେ ସେ ଅଷ୍ଟମ ଶ୍ରେଣୀଠାରୁ ଏକାଦଶ ଶ୍ରେଣୀ ପର୍ଯ୍ୟନ୍ତ ଛାତ୍ରାବାସରେ ରହି ପାଠ ପଢୁଥିଲେ । ଏହି ହାଇସ୍କୁଲରେ ପାଠପଢୁଥିବା ବେଳେ ସେଠାରେ ସେ 'କଳିକା' ନାମରେ ଏକ ହାତ ଲେଖା ପ୍ରାଚୀର ସାହିତ୍ୟ ପତ୍ରିକା ସମ୍ପାଦନା କରିଥିଲେ । ଏହା ଛାତ୍ରାବସ୍ଥାରୁ ସେ ସାମାଜିକ ଅନୀତି, କୁସଂସ୍କାର, ନିଶା ଓ ଶୋଷଣ ବିରୁଦ୍ଧରେ ସ୍ୱର ଉତ୍ତୋଳନ ଓ ଦରଦାମ ବୃଦ୍ଧି ବିରୁଦ୍ଧରେ ଛାତ୍ରମାନଙ୍କୁ ସଂଗଠିତ କରି ପ୍ରତିବାଦ କରୁଥିଲେ ।

୧୯୬୪ ମସିହାରେ ଏକାଦଶ ଶ୍ରେଣୀରେ ପଢୁଥିବା ସମୟରେ ଶ୍ରୀଯୁକ୍ତ ପାଟଶାଣୀ ବିଭିନ୍ନ ଛାତ୍ର ଆନ୍ଦୋଳନରେ ଅଂଶ ଗ୍ରହଣ କରି ଅନେକ ସଭାସମିତିରେ ଯୋଗ ଦେଉଥିଲେ ।

ଏହି ସମୟରେ ତାଙ୍କୁ ସେ ଅଞ୍ଚଳର ଛାତ୍ରନେତାଭାବେ ଲୋକମାନେ ଜାଣିଥିଲେ । ଏକାଦଶ ଶ୍ରେଣୀରୁ ଉତ୍ତୀର୍ଣ୍ଣ ହୋଇ ୧୯୬୫ ମସିହାରେ ସେ ବାଣପୁର ଗୋଦାବରୀଶ ମହାବିଦ୍ୟାଳୟରେ ଆଇ.ଏ ଶ୍ରେଣୀରେ ନାମ ଲେଖାଇଥିଲେ ।

### ଯୌବନର ପ୍ରଥମପାଦ

କବି ବାଣପୁରର ଗୋଦାବରୀଶ ମହାବିଦ୍ୟାଳୟରେ ଅଧ୍ୟୟନ କରୁଥିବା ସମୟରେ ତାଙ୍କ ଅନ୍ତରରେ ଥିବା ସାହିତ୍ୟିକ ସତ୍ତାଟି ଆତ୍ମପ୍ରକାଶ କରିଥିଲା । ବିଭିନ୍ନ ଲେଖା ଓ ପ୍ରତିଯୋଗିତା ମାଧ୍ୟମରେ କେତେକ ଶିକ୍ଷିତ ସାହିତ୍ୟପ୍ରେମୀ ଯୁବକମାନଙ୍କୁ ନେଇ ୧୯୬୬ ମସିହାରେ ସେ 'ବେଳା' ନାମକ ଏକ ଓଡ଼ିଆ ବିପ୍ଳବୀ ସାହିତ୍ୟ ପତ୍ରିକା ପ୍ରକାଶ କରିଥିଲେ । ଏଥିରେ ବିଦ୍ରୋହ ଓ ବିପ୍ଳବର ସ୍ୱର ସମ୍ବଳିତ ଲେଖାଗୁଡ଼ିକ ପ୍ରାୟତଃ ପ୍ରକାଶ ପାଉଥିଲା । ଏହି ପତ୍ରିକାରେ ସେ ନିଜେ ଥିଲେ ମୁଖ୍ୟ ସମ୍ପାଦକ । ଏହି ମହାବିଦ୍ୟାଳୟର ସଭାପତି ଭାବେ ସେ ତିନିଥର ନିର୍ବାଚିତ ହୋଇଥିଲେ । ୧୯୬୯ ମସିହା ବେଳକୁ ଓଡ଼ିଶାରେ ଏକ ଛାତ୍ର ଆନ୍ଦୋଳନ ହୋଇଥିଲା । ଏତିକିବେଳେସେ All Orissa Students Council ର ପ୍ରତିନିଧିତ୍ୱ କରି ରାଜ୍ୟ ଛାତ୍ରଆନ୍ଦୋଳନର ନେତୃତ୍ୱ ନେଇଥିଲେ । ଏହି କଲେଜ୍‌ରେ ଅଧ୍ୟୟନ କରୁଥିବା ସମୟରୁହିଁ ସେ ନିଜକୁ ବାମପନ୍ଥୀ ଚିନ୍ତାଧାରା ସହିତ ସାମିଲ୍ କରିଦେଇଥିଲେ । ଏତିକିବେଳେ ସେ ଆଭା, ବେଳା, ଜ୍ୱାଳା, ଜନତା, ମୁକ୍ତିଶିଖା, ଉତ୍କଳ ବାହିନୀ, ଅବଧୂତ ଯୁଗ ଓ Long March ଇତ୍ୟାଦି ପ୍ରତିକା ସହ ଜଡ଼ିତ ଥିଲେ । କବି ଯେତେବେଳେ ଛାତ୍ରନେତା ଥିଲେ, ସେହି ସମୟରେ ସେ ବାଣପୁରକୁ ଏକ ସ୍ୱତନ୍ତ୍ର ରାଜ୍ୟ ଭାବେ ଘୋଷଣା କରିଥିବାରୁ ତାଙ୍କ ବିରୁଦ୍ଧରେ ସରକାର ୱାରେଣ୍ଟ ଜାରି କଲେ । ତେଣୁ କବି ଆତ୍ମଗୋପନ କରିଥିଲେ ।

### ଆତ୍ମଗୋପନ ଓ ନକ୍ସଲ୍ ଆନ୍ଦୋଳନ

କବି ପ୍ରସନ୍ନ ପାଟସାଣୀଙ୍କ ଏହି ଆତ୍ମଗୋପନର ସମୟ ଥିଲା ୧୯୬୭ ମସିହା । ଏହି ସମୟରେ ଆନ୍ଧ୍ର-ଓଡ଼ିଶା ଓ ବଙ୍ଗଳା-ଓଡ଼ିଶାର ସୀମାନ୍ତବର୍ତ୍ତୀ ଅଞ୍ଚଳମାନଙ୍କରେ ନକସଲ୍ ଆନ୍ଦୋଳନ ମୁଣ୍ଡ ଟେକିଥିଲା । ଏହି ସୁଯୋଗରେ ସେ ଆନ୍ଧ୍ରର ଦିଗମ୍ବର ଗୋଷ୍ଠୀ ଓ ବଙ୍ଗଳାର ନକ୍ସଲଗୋଷ୍ଠୀ ସହିତ ଯୋଗସୂତ୍ର ସ୍ଥାପନ କରିଥିଲେ ।

ପାଟଶାଣୀଙ୍କ ଦ୍ୱାରା ବିପ୍ଳବାତ୍ମକ ସ୍ୱର ବହନ କରି ପ୍ରକାଶିତ ହେଉଥିବା ପତ୍ରିକାଗୁଡ଼ିକରେ ମୁଖ୍ୟତଃ ଯୁବଲେଖକମାନଙ୍କର ବୈପ୍ଳବିକ ତଥା ସଚେତନମୂଳକ ଲେଖା ପ୍ରକାଶିତ ହେଉଥିଲା । ଏଥିରେ ପ୍ରକାଶ ପାଉଥିବା ଲେଖାଗୁଡ଼ିକର ଭାଷା ଥିଲା ସର୍ବଜନ ବୋଧ୍ୟ ଓ ଗଣମୁଖୀ । ସେଥିପାଇଁ ଏହି ଲେଖାଗୁଡ଼ିକ ଜନମାନସକୁ ବିଶେଷ ଭାବରେ ପ୍ରଭାବିତ କରିପାରୁଥଲା । କୁହାଯାଏ, ଏହାହିଁ ଥିଲା ଓଡ଼ିଶାର ପ୍ରଥମ ନକ୍ସଲ ପନ୍ଥୀ ଆନ୍ଦୋଳନ । ସେ ସମୟର ଦୈନିକ ଇଂରାଜୀ ସମ୍ବାଦପତ୍ର ଅମୃତ ବଜାର ପତ୍ରିକା ଓଡ଼ିଶାର ଏହି ନକ୍ସଲପନ୍ଥୀ ଆନ୍ଦୋଳନ ଉପରେ ମନ୍ତବ୍ୟ

ଦେଇଥିଲେ । ''The report mentions formation of literary groups in balugan - Banapur area and Cuttack to propagate ultra-leftist idea."( AMRIT BAZAR PATRIKA - September 1974.) ଏଥିରୁ ଜଣାଯାଏ ଯେ ବାଲୁଗାଁ ବାଣପୁରରେ ନକସଲ ଚେତନାକୁ ସାହିତ୍ୟ ମାଧ୍ୟମରେ ପ୍ରଚାର କରିବା ପାଇଁ ଏକ ଗୋଷ୍ଠୀ ପ୍ରଚେଷ୍ଟା କରିଥିଲେ, ଯାହାର ସୂତ୍ରଧର ଥିଲେ ବୋଧହୁଏ କବି ପ୍ରସନ୍ନ ପାଟଶାଣୀ ।

ଏହି ସମୟରେ ଆନ୍ଧ୍ରର ଦିଗମ୍ବର ଗୋଷ୍ଠୀଙ୍କ ପରି ଓଡିଶାରେ ଅବଧୂତ ଗୋଷ୍ଠୀ କବି ପ୍ରସନ୍ନ ପାଟଶାଣୀଙ୍କ ନେତୃତ୍ୱରେ ମୁଣ୍ଡ ଟେକିଥିଲା ।

ସେତେବେଳେ ବିପ୍ଳବୀ କବି ପ୍ରସନ୍ନ ପାଟଶାଣୀ ଘୋଷଣା କରି କହିଥିଲେ -''ସେଇ ସ୍ୱପ୍ନଦିନେ ସାର୍ଥକ ହେବ ମଣିଷର ରୁଦ୍ଧଚେତନାକୁ ଶାସକର ଇସ୍ପାତୀ ସଙ୍ଗୀନ୍ ରୋକିପାରିବ ନାହିଁ । କ୍ଷୁଧାର ତାଡନାରେ ଆଗାମୀ ଝଡର ଯେଉଁ ସନ୍ତାନ ଜାତ ହେବ ତାକୁ ଅବୈଧ ବୋଲି କେହି କହିପାରିବେ ନାହିଁ । ସେହି ହେବ ଆଗାମୀ ଅନ୍ଧାରି ମୁଲକର ବତୀଖୁଣ୍ଟ ।''( ବେଳା (ବିଦ୍ରୋହ ବିଶେଷାଙ୍କ) ୨ୟବର୍ଷ/୨ୟ ସଂଖ୍ୟା-ସମ୍ପାଦକୀୟ )

କବି ପାଟଶାଣୀ ପ୍ରଥମତଃ ଥିଲେ କବି ଓ ପରେ ବିପ୍ଳବୀ । ସେଥିପାଇଁ ତାଙ୍କ କବିତାରେ ବିପ୍ଳବର ସ୍ୱର ଚମତ୍କାର ସାହିତ୍ୟିକ ଆଟୋପ ମଧ୍ୟରେ ପ୍ରକାଶିତ । ତାଙ୍କର ଏହି ବୈପ୍ଳବିକ ଚେତନା ସେ ସହରର ଚିମିନୀ ଧୂଆଁ ଘେରା ବସ୍ତିରୁ ଆରମ୍ଭ କରିଥିଲେ । ଆହୁରି ମଧ୍ୟ କୋରାପୁଟର ଝୁମ୍ପୁଡି ଘେରା ଆଦିବାସୀ ଅଞ୍ଚଳରୁ ଅବା ଛଦ୍ମବେଶରେ ଲୁଚିଲୁଚି ଅରମା ଅରଣ୍ୟ ଓ ହିମାଳୟର ନିଭୃତ ଗୁମ୍ଫା ଭିତରୁ ସେ ଏହି ବୈପ୍ଳବିକ ଚେତନା ଆରମ୍ଭ କରିଥିଲେ । ଏ ସମ୍ପର୍କରେ The LAMP ପତ୍ରିକା କୁହେ - 'Prasanna Pattsani is a writer of masses of the vast human ocean.' ( 5-The Lamp -Suppliment. No.2,1973 )ଡକ୍ଟର ବୈଷ୍ଣବ ଚରଣ ସାମଲ କହିଛନ୍ତି - 'ସେ ଯଥାର୍ଥରେ ଅଗଣିତ ନିଷ୍ପେଶିତ ମୁମୂର୍ଷୁ ଜନତାର ପ୍ରତିଧ୍ୱନି ।' (-ସାମଲ, ଡକ୍ଟର ବୈଷ୍ଣବଚରଣ -'ପ୍ରତିଧ୍ୱନିର ପ୍ରତିଚେତନା' ଇସ୍ତାହାର - ନଭେମ୍ବର, ୧୯୭୪) । କବିଙ୍କ ସମ୍ପର୍କରେ 'Long March ' ପତ୍ରିକା ପ୍ରକାଶ କରିଥିବା ମନ୍ତବ୍ୟକୁ ମଧ୍ୟ ଏଠାରେ ଉଦ୍ଧାର କରାଯାଇପାରେ ।

'Prasanna Pattsani is a devoted revolutionary poet......sprightly wielding his pen to demolish the social unrest and turmoil. He is identifing himself with the general proliterate and so he is expressing the sorrows and sufferings of unheeded millions in his poems.' ( Samal, Prof. B.C- Long March. Vol-III, Page, 44, 1973.)

ବାମପନ୍ଥୀ କବି ପ୍ରସନ୍ନପାଟଶାଣୀଙ୍କୁ ସରକାର ନକ୍ସଲ ପନ୍ଥୀ ବୋଲି ଘୋଷଣା କରିବା ପରେ ତାଙ୍କ ଦ୍ୱାରା ସମ୍ପାଦିତ ପ୍ରଗତିଶୀଳ ଚିନ୍ତାଧାରାର ପତ୍ରିକା 'ବେଳା'କୁ ବେଆଇନ୍ ଘୋଷଣା କରି ରଦ୍ଦ କରିଦିଆଗଲା । ଏହି ସମୟରେ କବି ପାଟଶାଣୀ ଛଦ୍ମନାମ ଅଗ୍ନିଶର୍ମା ନାମରେ ନିଜର ବୈପ୍ଳବିକ ରଚନା ସବୁ ପ୍ରକାଶ କରୁଥିଲେ । ତାଙ୍କ ନାମରେ ୱାରେଣ୍ଟ ଜାରି ହେବାରୁ ସେ ବାଣପୁରର ବଣଜଙ୍ଗଲ, କଳିଯୁଗେଶ୍ୱର, ସୋଲରୀ ପାହାଡ ଆଦି ସ୍ଥାନରେ ଲୁଚି ଲୁଚି ଘୂରି ବୁଲୁଥିଲେ । ନକ୍ସଲ ଆନ୍ଦୋଳନ ସହିତ ସେ ଘନିଷ୍ଠଭାବେ ଜଡିତ ହୋଇପଡିଥିବାରୁ ତାଙ୍କ ଉପରେ ପୋଲିସ୍‌ର କଡା ନଜର

ଢାରି ରହିଥିଲା । ଦିନେ ତାଙ୍କ ଉପରେ ପୋଲିସ୍‌ର ଚଢ଼ାଉ ହେବାର ଜାଣି ସେ ମଧୁସୂଦନ ଆଇନ କଲେଜ ଛାତ୍ରାବାସର ୪୭ ନମ୍ବର କୋଠରୀରେ ଆତ୍ମଗୋପନ କରିଥିଲେ । ସେଠାରୁ ଯାଇ ବାଣୀବିହାର ଛାତ୍ରାବାସରେ ରହୁଥିବା ଭାଗୀରଥି ସାହୁଙ୍କ ପାଖରେ କିଛିଦିନ ଆତ୍ମଗୋପନ କରି ରହିଥିଲେ । ସେଠାରୁ ପୁଣି ଚନ୍ଦକା ଜଙ୍ଗଲ ବାଟେ ଲୁଚି ଲୁଚି ଯାଇ ସାନମୁଣ୍ଡଳୀ ଗାଆଁର ସ୍ୱର୍ଗତ ଅଦ୍ୱୈତ ରାୟଙ୍କ ଘରେ କିଛିଦିନ ରହିଲେ । ଏଠାରୁ ପୁଣି ମହାନଦୀ ପାର ହୋଇଯାଇ ବଡମ୍ବା ନରସିଂହପୁରରେ କିଛିଦିନ ଆତ୍ମଗୋପନ କରି ରହିବାପରେ ସେଠାରୁ ଯାଇ ଢେଙ୍କାନାଳ କଲେଜର ଛାତ୍ରାବାସରେ ରହୁଥିବା କୁଳମଣିଜେନାଙ୍କ ପାଖରେ ରହିଲେ । ତାଙ୍କର ବନ୍ଧୁ ଡକ୍ଟର ରତ୍ନାକର ଚଇନିଙ୍କର ଢେଙ୍କାନାଳରେ ଅଧ୍ୟାପନା ସମୟରେ ତାଙ୍କ ଘରେ ତିନିଦିନ ରହିଥିଲେ । ଏହି ସମୟରେ ଢେଙ୍କାନାଳ ଛାତ୍ରାବାସ ପୋଲିସ ଦ୍ୱାରା ରେଡ ହେବାରୁ ସେଠାରୁ ଲୁଚି ଟିକର ପଡା ବାଟେ ଚାଲିଚାଲି ଯାଇ ଆନ୍ଧ୍ର-ଓଡିଶା ସୀମାନ୍ତ ଘାଟିରେ ପହଞ୍ଚିଥିଲେ । ପୁଣି ସେଠାରେ ପୋଲିସ ଘାଟି ଘେରାଉ କରିବାରୁ ଘାଟିପାଖ ଏକ ପାହାଡିଆ ନଦୀ ପାର ହେଉଥିବା ସମୟରେ ନଦୀ ସୁଅରେ ଭାସିଭାସି ଯାଇ ଏକ ଦଣ୍ଡୀ ସନ୍ନ୍ୟାସୀଙ୍କ ଆଶ୍ରମରେ ଆତ୍ମଗୋପନ କରିଥିଲେ । ନିଜ ଗୋଷ୍ଠୀର କେତେକ ସାଙ୍ଗ ସାଥୀଙ୍କ ଦେହାନ୍ତ ଖବର ଶୁଣି କବିଙ୍କର ମନୋବଳ କ୍ରମଶଃ ଦୁର୍ବଳ ହୋଇପଡିଥିଲା । ଫଳରେ ସେ ଓଡିଶା ତ୍ୟାଗ କରି କଲିକତାରେ ଯାଇ ପହଞ୍ଚିଲେ । ସେଠାରେ କାଳୀଘାଟ ଟାଲିଗଞ୍ଜ ପୋଲିସ୍‌ଷ୍ଟେସନ ପଛପଟେ ପ୍ରତାପାଦିତ୍ୟ ରୋଡ୍‌ରେ ରହୁଥିବା କବି ସ୍ୱଦେଶ ଭାରତୀଙ୍କ ଘରେ ସେ କିଛିଦିନ ଆତ୍ମଗୋପନ କରି ରହିଲେ । ସ୍ୱଦେଶ ଭାରତୀଙ୍କୁ ଅସୁବିଧାରେ ନ ପକାଇବା ପାଇଁ ସେଠାରୁ ସେ ଦିଲ୍ଲୀ ଚାଲିଗଲେ । ଛଦ୍ମବେଶରେ ଦିଲ୍ଲୀରୁ ହରଦ୍ୱାର, ହରଦ୍ୱାରରୁ ଯାଇ ଋଷିକେଶରେ ରହିଲେ ।

### ସଂଗ୍ରାମରୁ ସନ୍ନ୍ୟାସ

ଋଷିକେଶର ସ୍ୱର୍ଗଦ୍ୱାର ପାଖ ଆଲି କମ୍ବଲି ବାଲି ମଠରେ ସେ କିଛି କାଳ ଆତ୍ମ ଗୋପନ କରି ରହିଥିଲେ । ସେଠାରେ କବି ପାଟଶାଣୀ ମଣିକୂଟ ପର୍ବତର ସ୍ୱାମୀ ସତ୍ୟାନନ୍ଦଙ୍କ ଠାରୁ ଦୀକ୍ଷା ଗ୍ରହଣ କରି ଦୀର୍ଘ ପାଞ୍ଚବର୍ଷ କାଳ ଯୋଗ ସାଧନାରେ ନିମଗ୍ନ ରହିଲେ । ସେହି ସମୟରେ ସେ ବହୁ ମୁନିଋଷିଙ୍କର ସାନ୍ନିଧ୍ୟ ଲାଭ କରିଥିଲେ । ଫଳତଃ କବଙ୍କର ବୈପ୍ଳବିକ ମାନସ କ୍ରମଶଃ ଆଧ୍ୟାତ୍ମିକ ଚିନ୍ତାଧାରା ଦ୍ୱାରା ପ୍ରଭାବିତ ହେବାକୁ ଲାଗିଲା । ହିମାଳୟର ମଣିକୂଟ ପର୍ବତରେ ଅବସ୍ଥାନ କାଳରେ ସେ ତାଙ୍କର ବିଶିଷ୍ଟ ପୁସ୍ତକ " The Horizon of my Himalayan Dawn" ରଚନା କରିଥିଲେ । ଏହିଠାରୁହିଁ କବି ପାଟଶାଣୀଙ୍କ ଜୀବନ ଏକ ନୂଆ ମୋଡ ନେଲା । ଏହି ହିମାଳୟର ରହଣି କାଳରେ ବେଦବେଦାନ୍ତ, ବିଭିନ୍ନ ଭାରତୀୟ ମହାକାବ୍ୟ ଓ ବିଭିନ୍ନ ଯୋଗ ସାଧନା ଅଧ୍ୟୟନ କରିଥିଲେ ୧୯୭୫ ମସିହାରେ ଡକ୍ଟର ଜ୍ଞାନ ମହାପାତ୍ରଙ୍କ ସାହାଯ୍ୟରେ ସେ ସୁଇଜରଲ୍ୟାଣ୍ଡ ଯାତ୍ରା କରିଥିଲେ ଓ ସେଠାରେ ମହର୍ଷି ମହେଶ ଯୋଗୀଙ୍କ ସାନ୍ନିଧ୍ୟ ଲାଭ କରିଥିଲେ । ସେଠାରେ ସେ ମହର୍ଷିଙ୍କ ଦ୍ୱାରା ପ୍ରବର୍ତ୍ତିତ ଭାବାତୀତ ଧ୍ୟାନ ସିଦ୍ଧିପ୍ରାପ୍ତଜ୍ଞାନ ଓ ପାତଞ୍ଜଳିଙ୍କ ଯୋଗ ସୂତ୍ରରେ ସିଦ୍ଧି ଲାଭ କରିବା ସହିତ ମହର୍ଷି ରିସର୍ଚ୍ଚ ଇଉରୋପୀୟାନ୍ ଇଉନିଭରସିଟିରେ ଅଧ୍ୟୟନ, ଲଣ୍ଡନ ଓ ଆମେରିକା ପ୍ରଭୃତି ଦେଶରେ ଥିବା ମହର୍ଷି ସେଣ୍ଟର ମାନଙ୍କରେ ଶିକ୍ଷାଦାନ ଓ ଗବେଷଣା ଇତ୍ୟାଦି କାର୍ଯ୍ୟ ସମ୍ପାଦନା କରିଥିଲେ । ୧୯୭୮ ମସିହାରେ କବି ପାଟଶାଣୀଙ୍କ ଉପରୁ ୱ୍ୱାରେଣ୍ଟ ଉଠିଯିବା ପରେ ସେ ଭାରତ ଫେରି ଆସି ଭାରତୀୟ ଜାତୀୟ କଂଗ୍ରେସରେ ଯୋଗ ଦେଇ ସକ୍ରିୟ ରାଜନୀତିରେ ଅଂଶ ଗ୍ରହଣ କଲେ ।

### ସନ୍ନ୍ୟାସରୁ ସିଂହାସନ

କଂଗ୍ରେସରେ ଯୋଗ ଦେଲାପରେ ପ୍ରଥମ ଥର ପାଇଁ ବିଧାନସଭା ନିର୍ବାଚନରେ ଅଂଶ ଗ୍ରହଣ କରି ଖୋର୍ଦ୍ଧା ନିର୍ବାଚନ ମଣ୍ଡଳୀରୁ ବିଧାୟକ ଭାବେ ଓଡିଶା ବିଧାନ ସଭାକୁ ନିର୍ବାଚିତ ହୋଇଥିଲେ । ୧୯୮୦ ମସିହାରୁ ଅଦ୍ୟାବଧି କ୍ରମାଗତ ଭାବେ ବିଧାନ ସଭାକୁ ଚାରିଥର ନିର୍ବାଚିତ ହୋଇ ୧୯୯୦ ମସିହାରୁ ୧୯୯୪ ମସିହା ପର୍ଯ୍ୟନ୍ତ ଅଭିଯୋଗ ଓ ପେନ୍‌ସନ୍ ବିଭାଗର ମନ୍ତ୍ରୀ ରୂପେ ଅବସ୍ଥାପିତ ହୋଇଥିଲେ । ସଂପ୍ରତି ସେ ବିରୋଧୀ ଦଳର ବିଧାୟକ ରୂପେ ଖୋର୍ଦ୍ଧାରୁ ନିର୍ବାଚିତ ହୋଇଛନ୍ତି ।

### ସନ୍ନ୍ୟାସରୁ ପୁନଶ୍ଚ ସଂସାର

ପିତାମାତାଙ୍କର ଅନୁରୋଧ ଫଳରେ କବି ପାଢଶାଣୀ ୧୯୭୧ ମସିହାରେ ବିବାହ କରିଥିଲେ । ତାଙ୍କର ସହଧର୍ମିଣୀ ହେଉଛନ୍ତି ଶ୍ରୀମତୀ ବିଜୟ ଲକ୍ଷ୍ମୀ ପାଢଶାଣୀ । ଶ୍ରୀଯୁକ୍ତ ପାଢଶାଣୀ ଦୁଇଟି ପୁତ୍ରସନ୍ତାନ ଓ ଗୋଟିଏ କନ୍ୟା ସନ୍ତାନର ଜନକ ଅଟନ୍ତି ।

### ଦୁର୍ଘଟଣା

୧୯୮୪ ମସିହାରେ ଏକ ଜିପ୍ ଦୁର୍ଘଟଣାର ସମ୍ମୁଖୀନ ହୋଇ ଡକ୍ଟର ପାଢଶାଣୀ ପ୍ରାୟ ଏକବର୍ଷ କାଳ ପୃଥିବୀର ଆଲୋକ ଦେଖି ପାରିଲେ ନାହିଁ । ତାଙ୍କର ଏହି ଅନ୍ଧତ୍ୱ ହିଁ ତାଙ୍କ ଭିତରର ଅନ୍ତର୍ଦୃଷ୍ଟିକୁ ଆହୁରି ଶାଣିତ ଓ ତୀକ୍ଷ୍ଣ କରି ପାରିଥିଲା । ଏହି ଏକବର୍ଷ କାଳ ମଧ୍ୟରେ କେତେକ ବଳିଷ୍ଠ ଗ୍ରନ୍ଥ ରଚନା କରିଥିଲେ । ''କିଛି ଲୁହ କିଛି ଲହୁ'', ''ଆଖି ଫୁଟି ଯାଇଥିବା ସତ୍ୟବାନ୍‌ଟିଏ'', ଓ ''ଦେଖା ହେଲେ କହିବି ସେ କଥା'' ଇତ୍ୟାଦି କବିତା ସଙ୍କଳନ ଦୃଶ୍ୟ ଏ ଅଦୃଶ୍ୟ ମଧ୍ୟରେ ଥିବା ମାର୍ମିକ ଅନୁଭୂତିର ସ୍ୱର ବହନ କରିଛି ।

ମହେଶ ଯୋଗୀଙ୍କ ଦ୍ୱାରା ଅଷ୍ଟ୍ରିଆର ଭିଏନାଠାରେ ସେ ଚିକିତ୍ସିତ ହୋଇ ପୁନର୍ବାର ତାଙ୍କ ଚକ୍ଷୁ ଫେରି ପାଇଲେ ।

### ସାମ୍ପ୍ରତିକ ସମୟ ଓ ବ୍ୟସ୍ତ କବି

ବର୍ତ୍ତମାନ କବିଙ୍କ ଦୈନନ୍ଦିନ ଜୀବନଯାପନ ବହୁ ବ୍ୟସ୍ତତା, ଝଞ୍ଜାଳ ଓ କର୍ମମୁଖୀ ମଣିଷର ଜୀବନ । ପ୍ରାତ୍ୟହିକ ଯୋଗ, ମନ୍ତ୍ରୀପଦ, ସଭାସମିତିରେ ଯୋଗଦାନ ଭିତରେ ମଧ୍ୟ ସେ ବିନା କ୍ଳାନ୍ତିରେ ରାଜନୀତି, ସାହିତ୍ୟ ଅଧ୍ୟୟନ, ବକ୍ତୃତା ଓ କାବ୍ୟସୃଷ୍ଟି ଇତ୍ୟାଦିର ସାର୍ଥକ ସମନ୍ୱୟ ରକ୍ଷା କରି ପାରିଛନ୍ତି ।

ଏକ ତରୁଣର ମନ ନେଇ ଏଯାବତ୍ ତାଙ୍କ ଲେଖନୀ ଗତି ଶୀଳ । ତାଙ୍କ ରଚନାର ସାବଲୀଳତା ଓ ତାଙ୍କ ବକ୍ତୃତାର ସମ୍ମୋହନ, ତାଙ୍କୁ ଓଡିଶାର ଜଣେ ଲୋକପ୍ରିୟ ସାହିତ୍ୟିକ ଭାବେ

ପ୍ରତିଷ୍ଠିତ କରି ପାରିଛି । ଜଣେ ବିପ୍ଳବୀ, କବି, ଗାଳ୍ପିକ, ପ୍ରାବନ୍ଧିକ, ବକ୍ତା, ରାଜନୀତିଜ୍ଞ, ସଂଗଠକ, ଓ ଯୋଗୀ ଭାବରେ ଡକ୍ଟର ପାଟଶାଣୀ କେବଳ ଓଡିଶାରେ ନୁହେଁ, ଓଡିଶା ବାହାରେ ଦେଶ ବିଦେଶରେ ସେ ମଧ୍ୟ ସୁପରିଚିତ । ତାଙ୍କ ରଚନାର ମାନବବାଦୀତା ହିଁ ତାଙ୍କୁ ଜଣେ ମାନବବାଦୀ କବି ଭାବରେ ପ୍ରତିଷ୍ଠିତ କରାଇଛି । ଏ ପୃଥିବୀର ସକଳ ମଣିଷକୁ ସେ ଭଲପାଇ ବସିଛନ୍ତି ଏବଂ କହିଛନ୍ତି - ''ଏ ମାଟିର ପ୍ରତିଟି ଗାଁ ମୋ ଗାଁ, ପ୍ରତିଟି ସହର ମୋ ସହର । ମୁଁ ଏ ମାଟି ବଣ, ପାହାଡ ନଦନଦୀ ସଭିଙ୍କୁ ଭଲପାଏ, ଭଲପାଏ ପ୍ରତିଟି ମଣିଷଙ୍କୁ । ତେଣୁ ଗାଁରୁ ସହର ଯାଏ ମୋତେ ସମସ୍ତେ ଜାଣନ୍ତି । ମୋର ସମସ୍ତେ ଏବଂ ମୁଁ ହେଉଛି ସମସ୍ତଙ୍କର ।''(- ରାଉତ ଶ୍ରୀ ବଂଶୀଧର (ସମ୍ପାଦକ) ମହଲ - ୧୨ଶ ବର୍ଷ ୨ୟ ଖଣ୍ଡ, ସାକ୍ଷାତ କାର । ପୃଷ୍ଠା - ୯ )

ଏହା ହେଉଛି କବିଙ୍କ ମନର ଭାବ । କାବ୍ୟ ନାୟକର ବିଶ୍ୱମାନବୀୟ ଚିନ୍ତାଧାରା, ସାର୍ବଜନୀନତା ବୋଧ, ଏହି ଅସାଧାରଣ ଭାବ କରେ ସାଧାରଣ ମଣିଷକୁ କବି, ଯାହା ଘଟିଛି କବି ଡକ୍ଟର ପ୍ରସନ୍ନ ପାଟଶାଣୀଙ୍କ ଜୀବନରେ । ସାଧାରଣ ମଣିଷଠାରୁ କବିର ଏହି ଜୀବନ ଦର୍ଶନର ସଂବେଗ ଅତି ତୀବ୍ର । ସାଧାରଣ ମଣିଷଟିଏ ଭଳି କବି ଜୀବନକୁ ସାମ୍ନା କରେ । ଜୀବନ ସହ ନିକଟତର ହେବାର ବୈଧାନିକ ନିୟମ ଭିତରେ ନୁହେଁ, ପରନ୍ତୁ ଏକ ଅନୁଭବାତ୍ମକ ଢଙ୍ଗରେ ଆମେ କବିଟିକୁ ଆବିଷ୍କାର କରୁ ତା'ର କବିତା ଭିତରେ ।

## (ଖ) କବିତାର ଆକଳନ

କବି ପାଟଶାଣୀଙ୍କର ସମଗ୍ର କାବ୍ୟକୃତି ଆବେଦନ ଦୃଷ୍ଟିରୁ ମୁଖ୍ୟତଃ ଚାରି ଭାଗରେ ବିଭକ୍ତ । ଯଥା - ସାମ୍ୟବାଦୀ, ଅଧ୍ୟାତ୍ମବାଦୀ, ସ୍ୱୈରବାଦୀ ଓ ମାନବବାଦୀ । କବିଙ୍କର ପ୍ରାରମ୍ଭିକ ପର୍ଯ୍ୟାୟରେ ଲିଖିତ ଅଧିକାଂଶ କବିତାରେ ସାମ୍ୟବାଦୀ ସ୍ୱର ଶୁଣାଯାଏ । ସେହି କବିତା ଗ୍ରନ୍ଥଗୁଡିକ ମଧ୍ୟର ଲେନିନ୍, ରକ୍ତପଥ, ଅଗ୍ନିଯୁଗ, ବାଘ ଆଁରେ ପିକ୍‌ନିକ୍ ଅନ୍ୟତମ । ଏହାର ଆନୁମାନିକ ସମୟ ୧୯୭୦ ମସିହାରୁ ୧୯୮୦ ମଧ୍ୟରେ ହେବ । ୧୯୮୦ ମସିହାରୁ ୧୯୮୯ ମଧ୍ୟରେ ଲିଖିତ ଅଧିକାଂଶ କବିତାରେ ଅଧ୍ୟାତ୍ମବାଦୀ ସ୍ୱର ଓ ସୈରବାଦୀ ସ୍ୱର ଗୁଞ୍ଜରିତ ହୋଇଥିବା ଦେଖାଯାଏ । ୧୯୯୦ ମସିହାରୁ ୧୯୯୫ ମଧ୍ୟରେ ଲିଖିତ କବିତାରେ ବିଶେଷକରି ସାର୍ବଜନୀନ ଜୀବନ ବୋଧ ତଥା ମାନବବାଦୀ ଚିନ୍ତାଧାରା ପ୍ରତିଫଳିତ । ଏହା ବ୍ୟତୀତ ବିଭିନ୍ନ ସମୟରେ ଭିନ୍ନଭିନ୍ନ ଚେତନା ମୂଳକ କବିତା ସେ ରଚନା କରିଛନ୍ତି । ଗୋଟିଏ ନିର୍ଦ୍ଦିଷ୍ଟ ଚେତନାକୁ ଏକ ନିର୍ଦ୍ଦିଷ୍ଟ ସମୟସୀମା ମଧ୍ୟରେ ବାନ୍ଧି ରଖାଯାଇ ନପାରେ । ଏହା ସବୁ ସମୟରେ ମଧ୍ୟ କବିମାନସକୁ ଆକ୍ରାନ୍ତ କରି କବିତା ମାଧ୍ୟମରେ ପ୍ରକାଶିତ ହୋଇପାରେ । ଅର୍ଥାତ୍ କବି ସାମ୍ୟବାଦୀ କବିତା ଲେଖିଥିବା ସମୟରେ କେବଳ ଯେ ସେହି କବିତା ଲେଖୁଥିବେ ତାହା ନୁହେଁ, ବରଂ ସେହି ସମୟ ମଧ୍ୟରେ କବି ଅଧ୍ୟାତ୍ମବାଦୀ, ସ୍ୱୈରବାଦୀ ଚେତନା ମୂଳକ କବିତା ରଚନା କରିପାରନ୍ତି । କିନ୍ତୁ ଆଙ୍ଗିକ ଶୈଳୀ ଦୃଷ୍ଟିରୁ ତାଙ୍କର ସମଗ୍ର କାବ୍ୟଶିଳ୍ପ ଚାରିଭାଗରେ ବିଭକ୍ତ । ଯଥା- ମିନି କବିତା, ଦୀର୍ଘ କବିତା, ଭିନ୍ନଭିନ୍ନ ଚେତନାମୂଳକ କବିତା ଓ ଆକାର କବିତା ।

ମିନି କବିତା ମଧ୍ୟରେ ''କିଛିଲୁହ କିଛି ଲହୁ'', ''ବିଧାନସଭା କବିତା'' ଓ ''ପ୍ରସନ୍ନ ପାଟ୍ଟଶାଣୀଙ୍କ ଶହେ ଏକ କବିତା'' ଗ୍ରନ୍ଥ ଅନ୍ତର୍ଭୁକ୍ତ । ଦୀର୍ଘ କବିତା ମଧ୍ୟରେ 'ଲେନିନ୍', 'ବର୍ଷା' 'ରକ୍ତପଥ', 'ଖୋର୍ଦ୍ଧାର କବିତା ମୁଁ ପଢେ' , 'ସମ୍ପର୍କ', '୦୦ ଫଣାରେ କ୦ଉ', 'ଛଅଣ ଡେଣାରେ ଭାରତ', 'ଚିତାଗ୍ନିର ବୋମା ହିରୋସୀମା', 'ବାଲିର ଚିଠି' ଓ 'ଲବଙ୍ଗର ଠିକଣା' ଆଦି ଅନ୍ୟତମ । ଭିନ୍ନ ଭିନ୍ନ ଚେତନା ମୂଳକ କବିତା ସଙ୍କଳନ ମଧ୍ୟରେ 'ବାଘ ଆଁ ଭିତରେ ପିକ୍‌ନିକ୍', 'ସାପଗାତରେ ସକାଳ', ଦେଖାହେଲେ କହିବି ସେ କଥା, 'ସାତମନ ତେର ଆକାଶ', 'ଅଗ୍ନିଯୁଗ', 'ଆଖି ଫୁଟି ଯାଇଥିବା ସତ୍ୟବାନ୍‌ଟିଏ', 'ଅମରନାଥ', 'ନୀଳନୂପୁର', 'ଆକାଶର କାଠଗଡାରେ ବନ୍ଦୀ ସୂର୍ଯ୍ୟଙ୍କୁ ଜେରା' ଓ 'ଅମାବାସ୍ୟା ବସିଛି ଜହ୍ନର ପିଠିରେ' ଆଦି ଅନ୍ୟତମ । 'ଆକାର କବିତା ସଙ୍କଳନ' ଖଣ୍ଡିଏ ଗ୍ରନ୍ଥ । ସେଥିରେ ଶବ୍ଦ ଅକ୍ଷରରେ ଖଞ୍ଜା କେତେକ ସାମ୍ୟବାଦୀ ବିପ୍ଳବ ଚେତନା ମୂଳକ ଚିତ୍ର କବିତା ରଚନା କରାଯାଇଛି । ନିମ୍ନରେ କବି ପ୍ରସନ୍ନ ପାଟ୍ଟଶାଣୀଙ୍କର ୧୯୯୪ ମସିହା ସୁଦ୍ଧା ପୁସ୍ତକ ଆକାରରେ ପ୍ରକାଶିତ ସମଗ୍ର କାବ୍ୟକୃତିର ସୂଚନାମାତ୍ର ପ୍ରଦାନ କରାଗଲା ।

## ୧-ଲେନିନ୍ (୧୯୭୬)

ଏହି କାବ୍ୟଗ୍ରନ୍ଥଟି ୧୯୭୬ ମସିହାରେ ବିଶ୍ୱମୁକ୍ତି ପବ୍ଲିକେଶନ, ବାଲୁଗାଁ, ପୁରୀଙ୍କ ଦ୍ୱାରା ପ୍ରକାଶିତ । ସତେଇଶ ପୃଷ୍ଠା ବିଶିଷ୍ଟ ଏହି ଦୀର୍ଘ କାବ୍ୟଗ୍ରନ୍ଥଟି ପ୍ରଥମେ ୧୯୭୨-୭୩ ମସିହାରେ ରଚିତ ହୋଇ ଉତ୍କଳ ସାହିତ୍ୟ ସମାଜର ଏକ ବିଶେଷ କବିତା ପାଠୋତ୍ସବ ତଥା ଭବାନୀପାଟଣାରେ ଅନୁଷ୍ଠିତ ଓଡିଆ ଯୁବଲେଖକ ସମ୍ମେଳନର ବାର୍ଷିକ ଅଧିବେଶନରେ ପଠିତ ହୋଇ ଆଲୋଡନ ସୃଷ୍ଟି କରିଥିଲା । ଏହି କାବ୍ୟର କିଛି ଅଂଶ ଲକ୍ଷ୍ମୀ ସାମନ୍ତରାୟଙ୍କ ସମ୍ପାଦିତ 'ତୃଷ୍ଣା' , ସାହିତ୍ୟ ସଙ୍କଳନ ପ୍ରଥମ ବର୍ଷ ଦ୍ୱିତୀୟ ସଂଖ୍ୟା ୧୯୭୪ ମସିହାରେ ମୁଦ୍ରିତ ହୋଇ ଓଡିଶାର ଅଗଣିତ ପାଠକ ପାଠିକାମାନଙ୍କର ଦୃଷ୍ଟି ଆକର୍ଷଣ କରିଥିଲା ।

ଏହି ବହିର ନାମକରଣ ପ୍ରସିଦ୍ଧ ଜନନେତା ବିପ୍ଳବୀ ଲେନିନ୍‌ଙ୍କ ନାମାନୁସାରେ କରାଯାଇଛି । ଏଥିରେ କବି ପାଟ୍ଟଶାଣୀ ନିପୀଡିତ ଜନଗଣର ମୁକ୍ତିପାଇଁ, ଶ୍ରେଣୀହୀନ ସମାଜ ଗଠନ ପାଇଁ ଲେନିନ୍‌ଙ୍କୁ ଆଦର୍ଶ ଭାବରେ ଗ୍ରହଣ କରିଛନ୍ତି । ଶୋଷଣମୁକ୍ତ ସମାଜ ପ୍ରତିଷ୍ଠା ପାଇଁ ସଂଗ୍ରାମ କଲାବେଳେ ଲେନିନ୍, କାଲମାର୍କସ୍, ମାଓ ସେତୁଂ, ଭିଏତନାମ୍‌ର ସଂଗ୍ରାମୀ ନେତା ହୋ- ଚି - ମିନ୍ କବିଙ୍କ ପାଇଁ ପ୍ରେରଣାର ଉତ୍ସ ହୋଇଛନ୍ତି । ମାର୍କସଙ୍କର ଏକ ତାତ୍ତ୍ୱିକ ଦର୍ଶନକୁ ନିଜସ୍ୱ କବିତା ମାଧ୍ୟମରେ ପରିସ୍ଫୁଟ କରିଛନ୍ତି ।

## ୨- ଆକାର କବିତା (୧୯୭୬)

ବୈପ୍ଳବିକ ଆଭିମୁଖ୍ୟକୁ ଭିତ୍ତି କରି 'ଆକାର କବିତା ସଙ୍କଳନ'ଟି ୧୯୭୬ ମସିହାରେ ବିଶ୍ୱମୁକ୍ତି ପବ୍ଲିକେଶନ, ବାଲୁଗାଁ, ପୁରୀଙ୍କ ଦ୍ୱାରା ପ୍ରକାଶିତ । ଏଥିରେ କବିତାର ନାମ ଅନୁସାରେ ତା'ର ଶାବ୍ଦିକରୂପ ରଚନା କରାଯାଇଛି । କବିତାର ଏହି ଚିତ୍ରଧର୍ମୀ ଶୈଳୀ ପାଠକକୁ ଆକୃଷ୍ଟ କରେ । ଏପରି କାବ୍ୟ ଉପସ୍ଥାପନା ସ୍ୱାଧୀନତା ପରବର୍ତ୍ତି ସମୟରେ କବି ପାଟ୍ଟଶାଣୀ ହେଉଛନ୍ତି ପ୍ରଥମ ଓ ସ୍ୱତନ୍ତ୍ର । ଏହି କବିତାରେ ମାର୍କସ୍ ଓ ଲେନିନ୍‌ଙ୍କର ସାମ୍ୟବାଦୀ ଦର୍ଶନ ସ୍ପଷ୍ଟ ପ୍ରତିଫଳିତ । ଶବ୍ଦ ସଂଯୋଜନା

ଶୈଳୀ ମାଧ୍ୟମରେ ମଣିଷର ଦୁଃଖକୁ ଜୀବନ୍ତ ଭାବେ ଧରି ରଖି ପାରିଛି । କବିତାର ଆକୃତି ଅନୁସାରେ ଶବ୍ଦକୁ ସଜାଇ କବିତା ଗୁଡିକ ଲେଖା ଯାଇଛି । ଏହାର ଚିତ୍ରକୁ ଭାଙ୍ଗି ଅବିକଳ ନକଲ କରିଦେଲେ ଏହା ଗୋଟିଏ ଗୋଟିଏ କବିତା ଆକାରରେ ରହିବ, ଯାହାର ଗୁରୁତ୍ୱକୁ ଉପଲବ୍ଧି କରିହେବ । ଏହା କିଛି ମାତ୍ରାରେ ପ୍ରଚାର ଧର୍ମୀ ହୋଇଥିବା ଲକ୍ଷ୍ୟ କରାଯାଏ । ତେଣୁ ଆକାର କବିତାର କେତୋଟି ଚିତ୍ର ନିବନ୍ଧର ପରିଶିଷ୍ଟରେ ଉପସ୍ଥାପନ କରାଯାଇଛି ।

### ୩-ବାଘ ଆଁ ଭିତରେ ପିକ୍‌ନିକ୍ (୧୯୭୬)

ଏହି ଗ୍ରନ୍ଥଟି ୧୯୭୬ ମସିହାରେ ବିଶ୍ୱମୁକ୍ତି ପବ୍ଲିକେଶନ, ବାଲୁଗାଁ, ପୁରୀ ଦ୍ୱାରା ପ୍ରକାଶିତ । ଏଥିରେ ସର୍ବମୋଟ ଏକୋଇଶଟି କବିତା ସ୍ଥାନ ପାଇଛି । କବିତା ଗୁଡିକ ବିଭିନ୍ନ ସମୟରେ ରଚିତ । ଏଥିରୁ ଅଧିକାଂଶ କବିତା ତତ୍‌କାଳୀନ ସମୟରେ ନବରବି, ଆସନ୍ତା କାଲି, ଓ ଝଙ୍କାର ପ୍ରଭୃତି ପତ୍ରିକାରେ ପ୍ରକାଶ ପାଇଥିଲା । ଜନତା ପାଇଁ ସଂଗ୍ରାମ କଲାବେଳେ ସମସ୍ତ ବିପଦର ଘେର ଭିତରେ ଥାଇ ମଧ୍ୟ କବିର କଣ୍ଠ ଦୁର୍ବଳ ହୋଇଯାଇନି । ଏଥିରୁ ଅଧିକାଂଶ କବିତାରେ ସଂଘର୍ଷ, ବିପ୍ଳବ ଓ ସାମ୍ୟବାଦୀ ଚେତନା ପ୍ରତିଫଳିତ ହୋଇଥିବା ଲକ୍ଷ୍ୟ କରାଯାଇଛି ।

### ୪-ବର୍ଷା (୧୯୮୧)

ଏକଶହ ଷୋହଳ ପୃଷ୍ଠା ବିଶିଷ୍ଟ ଏହା ଏକ ଦୀର୍ଘ କାବ୍ୟଗ୍ରନ୍ଥ । ଫ୍ରେଣ୍ଡସ୍ ପବ୍ଲିଶର୍ସ, ବିନୋଦ ବିହାରୀ, କଟକ ଦ୍ୱାରା ୧୯୮୦ ମସିହାରେ ପ୍ରକାଶିତ । ଏହା ପ୍ରକୃତି ଉପରେ ଆଧାରିତ ଏକ ଶ୍ରେଷ୍ଠ ରୋମାଣ୍ଟିକ୍ ଚେତନାର କାବ୍ୟଗ୍ରନ୍ଥ । ଏହା ଡକ୍ଟର ଶଙ୍କରଲାଲ୍ ପୁରୋହିତଙ୍କ ଦ୍ୱାରା ହିନ୍ଦୀରେ ମଧ୍ୟ ଅନୂଦିତ ହୋଇଛି । ଚିତ୍ରକଳ୍ପ ଓ ଉପମା ପ୍ରୟୋଗରେ କବିଙ୍କର ସ୍ୱାତନ୍ତ୍ର୍ୟ ଏଥିରେ ପରିଲକ୍ଷିତ ହୁଏ ।

### ୫ - ରକ୍ତପଥ (୧୯୮୨)

ଏହି ଦୀର୍ଘ କବିତା ସଙ୍କଳନଟି ସାଥୀମହଲ, ବିନୋଦ ବିହାରୀ, କଟକ ଦ୍ୱାରା ପ୍ରକାଶିତ ହୋଇଛି ୧୯୮୨ ମସିହାରେ । ଏହି ପୁସ୍ତକରେ କବିଙ୍କର ନକ୍‌ସଲ ଜୀବନର ଅଭିବ୍ୟକ୍ତି ଲିପିବଦ୍ଧ ହୋଇ ରହିଛି । କବି ବିତେଇଥିବା ଘନ ଘୋର ଆରଣ୍ୟକ ଜୀବନର ଅନୁଭୂତି, ଜୀବନ ଓ ମରଣ ସହ ମୁହାଁ ମୁହିଁ ସଂଘର୍ଷର ଚିତ୍ରସହ ନକ୍‌ସଲ ମାନଙ୍କର ନିଷ୍ଠା ଓ ତ୍ୟାଗର ଆଲେଖ୍ୟ ରହିଛି । ତତ୍‌କାଳୀନ ଶାସନ ବ୍ୟବସ୍ଥା ବିରୁଦ୍ଧରେ ଏହି ପୁସ୍ତକଟି ଏକ କ୍ରାନ୍ତିକାରୀ ପ୍ରତିବାଦ ।

ନକ୍‌ସଲବାଦୀ ସଂଗ୍ରାମରେ ସର୍ବହରାର ମୁକ୍ତି ପାଇଁ ଯେଉଁ ସ୍ୱର ଉତ୍ତୋଳନ କରା ଯାଇଥିଲା, ତା'ର ପ୍ରଭାବ ଓଡିଶାର ବିପ୍ଳବୀ ଯୁବ ସମାଜ ଉପରେ ପଡିଥିଲା । ଓଡିଶାର ଗୁଣୁପୁର ଥିଲା ସେତେବେଳେ ବିପ୍ଳବୀ ମାନଙ୍କର ଆଡ୍‌ଡାସ୍ଥଳୀ । ସେହି ସମୟରେ ଓଡିଶାର ବହୁ ବିପ୍ଳବୀ ତରୁଣ

କବିମାନଙ୍କ ମଧ୍ୟରୁ କବି ପାଟଶାଣୀ ଥିଲେ ଅନତମ । ଏହି ଆନ୍ଦୋଳନ ଓଡିଶାରେ ଯଦିଓ ସଫଳ ହୋଇ ନଥିଲା । ଦେଶପ୍ରେମୀ ବିପ୍ଳବୀମାନଙ୍କ ଉପରେ ପୋଲିସ୍ ବାହିନୀର ଦମନଲୀଳା ନିର୍ଯାତନାର ମର୍ମନ୍ତୁଦ ଚିତ୍ର, ସେଦିନର ସେହି ଘଟଣାମୟ ଦିବସ ଗୁଡିକର ସ୍ମୃତି ଲିପିବଦ୍ଧ ହୋଇଛି ରକ୍ତପଥ କାବ୍ୟରେ । ଏଥିରେ ମାର୍କସୀୟ ଚିନ୍ତାଧାରା ବହୁଳ ଭାବରେ ପ୍ରତିଫଳିତ ।

## ୬ - ସାପଗାତରେ ସକାଳ (୧୯୮୨)

ଏହି କାବ୍ୟଗ୍ରନ୍ଥଟି ଗ୍ରନ୍ଥମନ୍ଦିର, ବିନୋଦ ବିହାରୀ, କଟକ ଦ୍ୱାରା ୧୯୮୨ ମସିହାରେ ପ୍ରକାଶିତ । ଏଥିରେ ମୋଟ ଏକ ଚାଳିଶଟି କବିତା ରହିଛି । ଏଥିରୁ ଅଧିକାଂଶ କବିତା ସାମ୍ୟବାଦୀ ସ୍ୱର ବହନ କରୁଥିବା ବେଳେ ଅନ୍ୟ କେତେକ କବିତାରେ ଯୁଗ ଯନ୍ତ୍ରଣାର ସ୍ୱର, ମାନବବାଦୀ ଦର୍ଶନ, ଆଧ୍ୟାତ୍ମିକ ଚିନ୍ତାଧାରା ପ୍ରତିଫଳିତ ହୋଇଛି । କବି ଯେତେବେଳେ ଅଜ୍ଞାତ ବାସରେ ରହି ଜଙ୍ଗଲର ଗଳିକନ୍ଦିରେ ସାପ ଭଳି ଜୀବନ କଟାଉଥିଲେ, ସେହି ଅଭିଜ୍ଞତାର ମାର୍ମିକ ସ୍ୱର ଏହି ଗ୍ରନ୍ଥର ବିଭିନ୍ନ କବିତାରେ ଫୁଟି ଉଠିଛି । ଏଥିରେ ରହିଛି ତାଙ୍କର ଏକାନ୍ତ ବ୍ୟକ୍ତିଗତ ଜୀବନର ଅନୁଭୂତି । ଦୁର୍ଘଟଣା ଓ ଯନ୍ତ୍ରଣାପୂର୍ଣ୍ଣ ଜୀବନ, କବିର ଅଜ୍ଞାତ ବନବାସକୁ ସାପଗାତ ସହ ତୁଳନା କରାଯାଇଥିବା ବେଳେ ସେଥିରେ ସକାଳ ଅର୍ଥାତ୍ ମୁକ୍ତି ଚେତନାର ସ୍ୱପ୍ନ ପ୍ରତିଫଳିତ ହୋଇଛି ।

## ୭ - ସାତ ମନ ତେର ଆକାଶ (୧୯୮୩)

୧୯୮୩ ମସିହାରେ ଏହି ଗ୍ରନ୍ଥଟି ଅଗ୍ରଦୂତ, କଟକଙ୍କ ଦ୍ୱାରା ପ୍ରକାଶିତ । ଏହାର ପ୍ରଚ୍ଛଦ ଶିଳ୍ପୀ ହେଉଛନ୍ତି ଅସୀମ ବସୁ । ଏଥିରେ ଥିବା କବିତା ଗୁଡିକ ଭ୍ରମଣ କବିତା ପର୍ଯ୍ୟାୟଭୁକ୍ତ । ଏହାର କାବ୍ୟକଳ୍ପ ଏକ ଏକ ବିଶିଷ୍ଟ ଭୌଗୋଳିକ ସ୍ଥାନ ଉପରେ ଗଢି ଉଠିଛି । ପନ୍ଦରଟି ଦେଶବିଦେଶର ବିଭିନ୍ନ ସ୍ଥାନ ଉପରେ ବର୍ଣ୍ଣନା କରାଯାଇଛି । ପ୍ରାଚ୍ୟ ଓ ପାଶ୍ଚାତ୍ୟ ଦେଶର ସଂସ୍କୃତି ଓ ଜୀବନ ଧାରାରେ ଥିବା ସାମ୍ୟ ଏବଂ ବୈଷମ୍ୟ ବୋଧକୁ ସାର୍ବଜନୀନ ବିଶ୍ୱମାନବବାଦ ଭିତରେ ହଜାଇ ଦେଇଛନ୍ତି । ବିଶ୍ୱମଣିଷର ଜୀବନ ଜିଜ୍ଞାସା କବିତା ଗୁଡିକର ମୂଳ ଭାବବସ୍ତୁ ।

## ୮ - କିଛି ଲୁହ କିଛି ଲହୁ (୧୯୮୪)

ସତସ୍ତରି ପୃଷ୍ଠା ସମ୍ବଳିତ ଏହି କବିତା ସଙ୍କଳନଟି ସାଥୀମହଲ, ବିନୋଦ ବିହାରୀ, କଟକଙ୍କ ଦ୍ୱାରା ୧୯୮୪ ମସିହାରେ ପ୍ରକାଶିତ, ଏଥିରେ ଶୀର୍ଷକ ବିହୀନ ପଞ୍ଚଷଠିଟି ଛୋଟ କବିତା ରହିଛି । କବି ଏକ ଜିପ୍ ଦୁର୍ଘଟଣାରେ ଅନ୍ଧ ହୋଇଯାଇଥିବା ସମୟରେ ଜୀବନର ଅନୁଭୂତି ଗୁଡିକ ଅତି ପ୍ରାଣସ୍ପର୍ଶୀ ଭାଷାରେ ଉକ୍ତ କବିତା ମାନଙ୍କରେ ପ୍ରତିଫଳିତ । ଅଧିକାଂଶ କବିତାରେ ମାନବବାଦୀ ଚିନ୍ତାଧାରା ପ୍ରତିଫଳିତ । ଏହି କବିତାଗୁଡିକରେ କବିଙ୍କର ଶାଣିତ ଅନ୍ତର୍ଦୃଷ୍ଟି ନିହିତ । କବିତାଗୁଡିକର ଅନ୍ତର୍ସ୍ୱର ଭଗବତ୍ ଚିନ୍ତନ, ରୋମାଣ୍ଟିକ୍ ଚେତନା, ମୃତ୍ୟୁ ଚେତନା, ଜଗନ୍ନାଥ ଚେତନାତ୍ମକ ଭଜନ ଓ

ଜଣାଣ, ଯୋଗାଶ୍ରିତ, ଧର୍ମ ସମ୍ପର୍କୀୟ ଚେତନା ଓ ବାର୍ତ୍ତାତ୍ମକ ଶୈଳୀରେ ବିମଣ୍ଡିତ । ଓଡିଆ କବିତା କ୍ଷେତ୍ରରେ ଏହା ଏକ ନୂତନ ଶୈଳୀର ପରିଚୟ ପ୍ରଦାନ କରେ ।

## ୯ - ପ୍ରସନ୍ନ ପାଟଶାଣୀଙ୍କ ଶହେ ଏକ କବିତା (୧୯୮୭)

ସୂଚିତ ଗ୍ରନ୍ଥଟି ଖଣ୍ଡକ୍ଷୀରୋଦ ମିଶ୍ର, ଖଟବିନ୍ ସାହି, କଟକଙ୍କ ଦ୍ୱାରା ୧୯୮୭ରେ ପ୍ରଥମେ ପ୍ରକାଶିତ । ଏଥିରେ ଶହେ ଏକଟି ମିନିକବିତା ରହିଛି । ଏହାର ପ୍ରକାଶ ଶୈଳୀରେ କବି ପାଟଶାଣୀଙ୍କର ନିଜସ୍ୱ ଭାବ ଓ ଆଙ୍ଗିକ ସ୍ୱାତନ୍ତ୍ର୍ୟ ରହିଛି । ଏହି ସଙ୍କଳନରେ ପ୍ରଗତିବାଦୀ ଚେତନାହିଁ ମୁଖ୍ୟ ଅନୁଭବ । ପରିବର୍ତ୍ତନ ଶୀଳ ସମାଜ ଓ ରାଜନୀତି ପରିପ୍ରେକ୍ଷୀରେ ଅନ୍ୟାୟ ଓ ଅବିଚାର ବିରୁଦ୍ଧରେ କାବ୍ୟ ଘୋଷଣା କରାଯାଇଛି । କବିମନରେ ବିରକ୍ତି, କ୍ରୋଧ, ଯନ୍ତ୍ରଣା, ସହାନୁଭୂତି ଓ ଜୀବନବୋଧ ଅତି ଜୀବନ୍ତ ଭାବରେ ପ୍ରତିଫଳିତ ହୋଇଛି କବିତା ମାନଙ୍କରେ । ଗ୍ରନ୍ଥଟିରେ ସ୍ଥାନିତ ଅଧିକାଂଶ କବିତା ଏକ ଏକ ବଳିଷ୍ଠ କାବ୍ୟଚେତନାକୁ ଭିତ୍ତିକରି ରଚିତ । ଜୀବନର ଦୁଃସ୍ଥିତି, ସଭ୍ୟତାର ବିପର୍ଯ୍ୟୟ, ଭୟ, ଛଳନା ଇତ୍ୟାଦିକୁ ନେଇ ସର୍ବୋପରି କବିତା ଗୁଡିକରେ ବର୍ତ୍ତମାନ ଜୀବନର ଜଟିଳତାକୁ ଅନୁଭବ କରାଯାଇଛି ଓ ଏହାକୁ ସରଳ, ସ୍ୱଚ୍ଛନ୍ଦ ଭାବଗର୍ଭକ କାବ୍ୟ ଭାଷାରେ ପ୍ରକାଶ କରାଯାଇଛି ।

## ୧୦ - ଅଗ୍ନିଯୁଗ (୧୯୮୮)

ମନୋରମା ପ୍ରକାଶନ, ଭୁବନେଶ୍ୱର ଦ୍ୱାରା ଏହି ଗ୍ରନ୍ଥଟି ୧୯୮୮ ମସିହାରେ ପ୍ରକାଶିତ । ଏଥିରେ ସର୍ବମୋଟ ପଚାଶଟି କବିତା ରହିଛି । ଏହି କବିତାଗୁଡିକରେ କବିଙ୍କର ବିଦ୍ରୋହୀ ଜୀବନର ନିଖୁଣ ପ୍ରତିଛବି ସହିତ ସାମାଜିକ ଅଙ୍ଗୀକାର - ବଦ୍ଧତା ରହିଛି । ଏଥିରେ ମାନବବାଦୀ ମୂଲ୍ୟବୋଧ, ବୈପ୍ଳବିକ ଚେତନା ତଥା ସାମ୍ୟବାଦୀ ଚିନ୍ତାଧାରା ଅତି ସଫଳ ଭାବେ ରୂପାୟନ ଘଟିଛି । ଏହି କବିତା ସଙ୍କଳନଟି ଏକ କ୍ରାନ୍ତିକାରୀ ଚେତନାର ବାର୍ତ୍ତାବହ ।

## ୧୧ - ଖୋର୍ଦ୍ଧାର କବିତା ମୁଁ ପଢେ (୧୯୮୯)

ଗାୟତ୍ରୀ ପ୍ରକାଶନ, ଭୁବନେଶ୍ୱର ଦ୍ୱାରା ଏହି ଗ୍ରନ୍ଥଟି ୧୯୮୯ ମସିହାରେ ପ୍ରକାଶିତ । ଖୋର୍ଦ୍ଧାର ଅତୀତ ଇତିହାସର ଆଭାସ ଉପରେ ଆଧାରିତ ଏହା ଏକ ମନୋଜ୍ଞ, ଭିନ୍ନରୁଚିର ଦୀର୍ଘ କବିତା ଗ୍ରନ୍ଥ । ଏଥିରେ ସାମାଜିକ ଅଙ୍ଗୀକାରକୁ କାବ୍ୟିକ କଳାନୈପୁଣ୍ୟ ମାଧ୍ୟମରେ ପ୍ରକଟିତ କରାଯାଇଛି । ପିଣ୍ଡିକ ବାହୁବଳେନ୍ଦ୍ର, ଜୟୀ ରାଜଗୁରୁ, ବକସି ଜଗବନ୍ଧୁ, କୃତ୍ତିବାସ ପାଟଶାଣୀ, ପଦ୍ମନାଭ ହରିଚନ୍ଦନ, ହର ମାନସିଂହ, ରଥି ସାମନ୍ତ ସିଂହାର ପ୍ରଭୃତି ଇତିହାସ ଓ କିମ୍ବଦନ୍ତୀ ପୁରୁଷ ମାନଙ୍କର ଜାତି ପାଇଁ ଦେଇଥିବା ଆତ୍ମବଳିର ଚିତ୍ର ରହିଛି । ଓଡିଆ ଦୀର୍ଘ କବିତା ପରମ୍ପରାରେ ଏହା ଏକ ଭିନ୍ନ ସ୍ୱାଦର ଗ୍ରନ୍ଥ । ଏଥିରେ ପରମ୍ପରା ଓ ଆଧୁନିକତାର ସମନ୍ୱୟ ଘଟିଛି । ଖୋର୍ଦ୍ଧାର ସାମାଜିକ ଓ ରାଜନୈତିକ ଇତିହାସ ସହ ଜଡିତ ବହୁ ଲୋମହର୍ଷଣ କାରୀ ଘଟଣାର ଘନଘଟାରେ ପରିବ୍ୟାପ୍ତ । ଅତୀତର ସ୍ମୃତି ରୋମନ୍ଥନ କରି ସାମ୍ପ୍ରତିକ ଅବକ୍ଷୟତାରେ ଉଦ୍‌ବିଗ୍ନ ହୋଇ ଅବହେଳିତ ମଣିଷମାନଙ୍କୁ ଏକ ଆଶାର ବାଣୀ ଶୁଣାଇଛନ୍ତି । ଖୋର୍ଦ୍ଧାମାଟିର ଯଶ ଓ ପରାକାଷ୍ଠା ଲିପିବଦ୍ଧ କରିବା ସହିତ କବି

ଦେଖିଛନ୍ତି, ବର୍ତ୍ତମାନ ଅନାହାରରେ, ଜ୍ୱରବ୍ୟାଧିରେ ଓ କ୍ଷୁଧାର ତାଡନାରେ ଅଣ୍ଟା ନଇଁ ପଡୁଛି ବୀର ପାଇକ ମାନଙ୍କର । ଯୌତୁକ ଯାତନାରେ କେତେ ଅନୂଢା କିଶୋରୀ ଅକାଳରେ ଝରି ପଡୁଛନ୍ତି । ସେହି ମାଟିର ପୁଅ ପେଟ ବିକଳରେ ଦାଦନ ପାଲଟୁଛି । ଶିଶୁ ମୁହଁରେ ହସ ନାହିଁ । ନାରୀଧର୍ଷଣ, ଅନ୍ୟାୟ, ଅନୀତି, ଅତ୍ୟାଚାର ଓ ଶୋଷଣ ଦେଖି କବିର ଚେତନା ବିଦ୍ରୋହ କରି ଉଠିଛି । କବିଙ୍କ ଭାଷାରେ -

> ଏଇ ମାଟି ଥରୁଟେ ମାତିଲେ
> ସିଂହାସନ ଚୂର୍ଣ୍ଣ ହେବ
> ଚୂର୍ଣ୍ଣ ହେବ ଶାସନର ଗର୍ବ
> ଏ ମାଟିଠାକୁର ସବୁ ସହେ
> ସହେ ନାହିଁ ମଣିଷର ଅହଙ୍କାର
> ପୁଣିରେ ଖୋର୍ଦ୍ଧାବୀର
> ଉଠା ଉଠା ତୋ ଶାଣିତ ତଲୁଆର ।

ଇତିହାସରୁ ବର୍ତ୍ତମାନକୁ ଆସି କାବ୍ୟପୁରୁଷ ସାମ୍ପ୍ରତିକ ମଣିଷର ଦୁଃଖ ଓ ଦୈନ୍ୟକୁ ଅନୁଭବ କରିଛନ୍ତି । ଏହି ଗ୍ରନ୍ଥର କାବ୍ୟସ୍ୱର ବିଦ୍ରୁପାତ୍ମକ ଓ ଆବେଦନ ବୈପ୍ଲବିକ । ଇତିହାସର ପଞ୍ଜୁରୀ ଉପରେ ସାମ୍ପ୍ରତିକ ରାଷ୍ଟ୍ରୀୟ ଓ ସାମାଜିକ ପରିବେଶର ଦୁର୍ଦ୍ଦଶାକୁ ପ୍ରକାଶ କରିଛନ୍ତି ।

## ୧୨ - ଅମରନାଥ (୧୯୯୦)

ଏହି କବିତା ଗ୍ରନ୍ଥଟି ସାରସ୍ୱତ ଭଣ୍ଡାର, ବାଲୁବଜାର, କଟକଙ୍କ ଦ୍ୱାରା ୧୯୯୦ ମସିହାରେ ପ୍ରକାଶିତ । ବାଉନ ପୃଷ୍ଠା ସମ୍ବଳିତ ଏହି ଗ୍ରନ୍ଥଟିରେ ସର୍ବମୋଟ ସାତଟି କବିତା ସ୍ଥାନିତ । ସେଗୁଡିକ ହେଲା ଅମରନାଥ, ଦାର୍ଜିଲିଂ, ବାଗଡୋଗ୍ରାରୁ ସିକିମ୍‌ର ଗାଙ୍ଗଟକ୍, ମଣିପୁର, ତ୍ରିପୁରା, ଶିଲଚର, ବାଙ୍ଗଲାଦେଶ । 'ଅମରନାଥ' ଶୀର୍ଷକ ଦୀର୍ଘ କବିତାଟି ଆଧ୍ୟାତ୍ମିକ ଭିତ୍ତି ଉପରେ ରଚିତ । ଅନ୍ୟ କବିତା ଗୁଡିକରେ ସେହି ଅଞ୍ଚଳର ପ୍ରାକୃତିକ ଦୃଶ୍ୟର ବର୍ଣ୍ଣନା ରହିଛି । ପ୍ରକୃତି ଓ ଈଶ୍ୱରାନୁଭବ ମଧ୍ୟରେ ଏକ ମଧୁର ସମନ୍ୱୟ ଅଙ୍କନ କରାଯାଇଛି । ହିମାଳୟ ରହଣି କାଳରେ ଏହି କାବ୍ୟ ଗ୍ରନ୍ଥଟି ରଚିତ । ଏହା କବିଙ୍କ ଆଧ୍ୟାତ୍ମିକ ଚେତନାର ଏକ ବଳିଷ୍ଠ ପରିପ୍ରକାଶ ।

## ୧୩ - ଆଖି ଫୁଟିଯାଇଥିବା ସତ୍ୟବାନ୍‌ଟିଏ (୧୯୯୦)

ଅଠଷଠି ପୃଷ୍ଠା ବିଶିଷ୍ଟ ଏହି କବିତା ସଙ୍କଳନଟି ସାରସ୍ୱତ ଭଣ୍ଡାର, ବାଲୁବଜାର, କଟକଙ୍କ ଦ୍ୱାରା ୧୯୯୦ ମସିହାରେ ପ୍ରକାଶିତ । ଏଥିରେ ସର୍ବମୋଟ ଷୋହଳଟି କବିତା ସ୍ଥାନିତ । ଏଥିରୁ ଅଧିକାଂଶ କବିତା ମୃତ୍ୟୁ ଓ ଆଧ୍ୟାତ୍ମିକ ଚେତନା ଉପରେ ଆଧାରିତ । ମୃତ୍ୟୁକୁ କବି ଏକ ଅନନ୍ତ ନିଦ ଭାବରେ ଅନୁଭବ କରିଛନ୍ତି । ଜୀବନ ଓ ମରଣ ଅନନ୍ତକାଳ ହାତ ଧରାଧରି ହୋଇ ଚାଲିଛନ୍ତି । ଅନ୍ୟ କେତେକ କବିତାରେ ରୋମାଣ୍ଟିକ୍ ଚେତନା ଓ ପ୍ରକୃତି ବର୍ଣ୍ଣନା ମଧ୍ୟରେ ଈଶ୍ୱରୀୟ ଉପଲବ୍ଧି ପ୍ରଚ୍ଛନ୍ନ ଭାବରେ ପ୍ରତିଫଳିତ ହୋଇଥିବା ଲକ୍ଷ୍ୟ କରାଯାଏ ।

## ୧୪ - ଦେଖା ହେଲେ କହିବି ସେ କଥା (୧୯୯୦)

ଅଶିପୃଷ୍ଠା ବିଶିଷ୍ଟ ଏହି କବିତା ସଙ୍କଳନଟି ବିଦ୍ୟାପୁରୀ, ବିନୋଦ ବିହାରୀ, କଟକଙ୍କ ଦ୍ୱାରା ପ୍ରକାଶିତ ୧୯୯୦ ମସିହାରେ । ଏଥିରେ ସର୍ବମୋଟ ପଚିଶଟି କବିତା ସ୍ଥାନିତ । କବିଙ୍କର ଏହା ଏକ ଶ୍ରେଷ୍ଠ ରୋମାଣ୍ଟିକ୍ କାବ୍ୟଗ୍ରନ୍ଥ । ଏହି ଗ୍ରନ୍ଥଟି କବିଙ୍କର ଦୁର୍ଘଟଣାରେ ଅନ୍ଧ ହୋଇଯାଇଥିବା ସମୟରେ ରଚିତ । ଏହି ପୁସ୍ତକଟିର କେତେକ କବିତା ହୀନ୍ଦୀ, ଇଂରାଜୀ ଓ ବଙ୍ଗଳାରେ ଅନୁବାଦ ହୋଇଛି । କେତେକ କବିତାକୁ ନେଇ ଅଡିଓ କ୍ୟାସେଟ୍ ପ୍ରସ୍ତୁତ ହୋଇଛି । ଏଥିରେ ପ୍ରେମ ଓ ପ୍ରଣୟର ଚିତ୍ର ଏକ ଅଭିନବ ଶୈଳୀରେ ପ୍ରକାଶିତ । ଏହାର କାବ୍ୟସ୍ୱର ସରଳ ଭାବୋଦ୍ଦୀପକ, ସ୍ୱପ୍ନପ୍ରବଣ ଓ ଏହା ଅତୀନ୍ଦ୍ରିୟ ଚେତନାକୁ ସ୍ପର୍ଶ କରେ । ଏହାର କାବ୍ୟଚେତନା ଦୈହିକ ଅନୁଭବରୁ ବିଦେହକୁ ଉତ୍ତୀର୍ଣ୍ଣ ହୋଇଛି । ଅନ୍ଧକାର ଭିତରେ ସୂର୍ଯ୍ୟୋଦୟ, ସୂର୍ଯ୍ୟାସ୍ତ, ବଦଳୁ ଥିବା ଋତୁର ରଙ୍ଗ, ଚଢେଇ, ପ୍ରଜାପତି, ମେଘ ଓ ଆକାଶକୁ ଦେଖି ପାରୁ ନଥିଲେ ମଧ୍ୟ ଅନୁଭବ କରିପାରିଛନ୍ତି । କବିର ଅନ୍ତର୍ଦୃଷ୍ଟି ବଳରେ ସେହି ଅନୁଭବର ପରି ପ୍ରକାଶ ଘଟିଛି କବିତା ଗୁଡିକରେ । ପବନ ଠାରୁ ପତଳା ସ୍ପର୍ଶ, ଜଳଠାରୁ ତରଳ ଅଭିମାନ, ପ୍ରଜାପତିର ନରମ ଡେଣାପରି ଦେହ, ବନ୍‌ଶୀ କଣ୍ଟାରେ ଝୁଲୁଥିବା ଲାଲ୍‌ମାଛଟିଏ ପରି ଚିବୁକ ଇତ୍ୟାଦିର ବର୍ଣ୍ଣନା ଏକ ସଫଳ ଶକ୍ତିଶାଳୀ କଳ୍ପନା ବିଳାସର ପରିଚୟ ଦିଏ । କବିତା ଗୁଡିକରେ ଆଶାବାଦ ସ୍ୱର ପ୍ରଚ୍ଛନ୍ନ ଭାବରେ ରହିଛି । କବିତା ଗୁଡିକ ମୁଖ୍ୟତଃ ଗୀତିଧର୍ମୀ ହୋଇଛି ।

## ୧୫ - ସମ୍ପର୍କ (୧୯୯୧)

ଏହା ଏକ ଦୀର୍ଘ କବିତା । ୧୯୯୧ ମସିହାରେ 'କ୍ରାନ୍ତିଧାରା' ସାହିତ୍ୟ ପତ୍ରିକାର ଶାରଦୀୟ ବିଶେଷାଙ୍କରେ ଏହା ପ୍ରକାଶିତ ହୋଇଛି । ବିଦେଶ ଭ୍ରମଣ ବୃତ୍ତାନ୍ତ ଉପରେ କାବ୍ୟ ଗ୍ରନ୍ଥଟି ପର୍ଯ୍ୟବସିତ । ଅକ୍‌ସଫୋର୍ଡ ବିଶ୍ୱବିଦ୍ୟାଳୟ ଭ୍ରମଣ କାଳରେ କବି ପାଟ୍ଟଶାଣୀଙ୍କର ଏହି ଦୀର୍ଘ କବିତାଟି ରଚିତ । ଭାରତ ଓ ଲଣ୍ଡନ ମଧ୍ୟରେ ଥିବା ସାଂସ୍କୃତିକ ପଟ୍ଟଭୂମିକୁ ତୁଳନାତ୍ମକ ଦୃଷ୍ଟିରେ କବି ଲକ୍ଷ୍ୟ କରିଛନ୍ତି । ମହାଭାରତୀୟ ଆଧ୍ୟାତ୍ମିକ ସଂସ୍କୃତିକୁ ବିଶ୍ୱ ଦରବାରରେ ସବୁ ସମସ୍ୟାର ସମାଧାନର ସୂତ୍ରଭାବେ କବି ଉପଲବ୍‌ଧି କରିଛନ୍ତି । ଏହି ଦୀର୍ଘ କବିତା ମାଧ୍ୟମରେ କବି ସମଗ୍ର ବିଶ୍ୱରେ ବିଶ୍ୱମାନବିକତାର ସ୍ୱର ସଞ୍ଚାର କରିବା ସର୍ତ୍ତ ରଖିଛନ୍ତି । ଯାହାଦ୍ୱାରା ମଣିଷ ଜୀବନର ଶକ୍ତି ଓ ସାର୍ଥକତା ଖୋଜିଛନ୍ତି । ଅନୁଭୂତିର ସାନ୍ଦ୍ର ନିବିଡ କମନୀୟ ରୂପକାନ୍ତି କାବ୍ୟପଂକ୍ତିକୁ ଉଜ୍ଜ୍ୱଳ ବିଭାରେ ଆଲୋକିତ କରିଛି ।

## ୧୬ - ନୀଳନୂପୁର (୧୯୯୧)

ନବେ ପୃଷ୍ଠା ବିଶିଷ୍ଟ ଏହି କାବ୍ୟ ଗ୍ରନ୍ଥଟି ଫ୍ରେଣ୍ଡସ୍ ପବ୍ଲିଶର୍ସ, ବିନୋଦ ବିହାରୀ, କଟକ ଦ୍ୱାରା ପ୍ରକାଶିତ । ଏଥିରେ ସର୍ବମୋଟ ଅଠେଇଶଟି କବିତା ରହିଛି । କବିତା ଗୁଡିକରେ ମୁଖ୍ୟତଃ ରୋମାଣ୍ଟିକ୍ ଚେତନା ପ୍ରତିଫଳିତ । କବିତା ଗୁଡିକ ମଧ୍ୟରୁ 'ନୀଳନୂପୁର' କବିତାଟି ଏକ ଦୀର୍ଘ କବିତା ।

ଏହାର ପୃଷ୍ଠଭୂମି ସ୍ୱତନ୍ତ୍ର । କବି ମଧ୍ୟପ୍ରଦେଶର ଭେଡାଘାଟଠାରେ ମହେଶ ଯୋଗୀଙ୍କ ସଂସ୍ଥାରେ କାମ କରୁଥିବା ସମୟର ଅନୁଭୂତି ଏଥିରେ ପ୍ରକାଶିତ । ନର୍ମଦା ନଦୀର ଦୃଶ୍ୟ ଏହି କବିତାରେ ପ୍ରତିଫଳିତ । ଅନ୍ୟ ସବୁ କବିତା ଗୁଡିକରେ ଆଧ୍ୟାତ୍ମିକତା, ପ୍ରକୃତି ବର୍ଣ୍ଣନା ସହିତ ମାନବିକ ଆବେଦନର ଏକ ମଧୁର ସମନ୍ୱୟ ଘଟିଛି ।

## ୧୭ - ଆକାଶର କାଠଗଡାରେ ବନ୍ଦୀ ସୂର୍ଯ୍ୟକୁ ଜେରା (୧୯୯୨)

ସତଷଠି ପୃଷ୍ଠା ବିଶିଷ୍ଟ ଏହି କବିତା ଗ୍ରନ୍ଥଟି ଚିଲିକା ପବ୍ଲିକେଶନ ଦ୍ୱାରା ୧୯୯୨ ମସିହାରେ ପ୍ରଥମେ ପ୍ରକାଶିତ । ଏଥିରେ ତିରିଶଟି କବିତା ରହିଛି । ଏହି କବିତାଗୁଡିକରେ ମୁଖ୍ୟତଃ ମାନବବାଦୀ ଚିନ୍ତାଧାରା ପ୍ରତିଫଳିତ । ମାନବିକ ଆବେଦନରେ କବିତାଗୁଡିକ ମହିମା ମଣ୍ଡିତ । ସାମ୍ପ୍ରତିକ ରାଜନୀତି, ସମାଜ ଓ ଲୋକଜୀବନର ଅବକ୍ଷୟ, ସାମାଜିକ କୁସଂସ୍କାର ବିରୋଧରେ ସ୍ୱର ଉତ୍ତୋଳନ ସହିତ ମଣିଷ ଭିତରେ ବଞ୍ଚିବାର ଆଶା ସଞ୍ଚାର କରିବା ପ୍ରୟାସ କରାଯାଇଛି ।

## ୧୮ - ବାଲିର ଚିଠି ଓ ଲବଙ୍ଗ ଠିକଣା (୧୯୯୨)

ଏହି ଦୀର୍ଘ କବିତାଟି ୧୯୯୨ ମସିହାରେ 'କ୍ରାନ୍ତିଧାରା' ସାହିତ୍ୟ ପତ୍ରିକାର ଶାରଦୀୟ ବିଶେଷାଙ୍କରେ ପ୍ରକାଶିତ । କବି ବାଲି ଓ ଜାଭା ଦ୍ୱୀପକୁ ପରିଭ୍ରମଣରେ ଯାଇଥିବା ସମୟରେ ତାଙ୍କର ସେହି ଭ୍ରମଣକାଳୀନ ଅନୁଭୂତିକୁ କାବ୍ୟରୂପ ପ୍ରଦାନ କରିଛନ୍ତି । ବାଲି ଦ୍ୱୀପ ସହ ଉତ୍କଳର ଅତୀତ ସ୍ମୃତି ତାଙ୍କର କାବ୍ୟମାନସକୁ ଅନୁରଣିତ କରିଛି । ଏହି କବିତା ମାଧ୍ୟମରେ କବି ଉତ୍କଳର ଜଗନ୍ନାଥ ସଂସ୍କୃତିର ପ୍ରତିଷ୍ଠା ସହିତ ମଣିଷର ଜୀବନ ପ୍ରବାହକୁ ତୁଳନାତ୍ମକ ଦୃଷ୍ଟିରେ ଅନୁଧ୍ୟାନ କରିଛନ୍ତି ।

## ୧୯ - ଅମାବାସ୍ୟା ବସିଛି ଜହ୍ନର ପିଠିରେ (୧୯୯୩)

ଛଅସ୍ତରି ପୃଷ୍ଠା ବିଶିଷ୍ଟ ଏହି କବିତା ସଙ୍କଳନଟି ଶତଦ୍ରୁ ପ୍ରକାଶନୀ, ୟୁନିଟ - ୯, ଭୁବନେଶ୍ୱର ଦ୍ୱାରା ପ୍ରଥମେ ୧୯୯୩ ମସିହାରେ ପ୍ରକାଶିତ । ଏଥିରେ ସର୍ବମୋଟ ୩୪ଟି କବିତା ରହିଛି । ଜୀବନର ବିପୁଳ ଅନୁଭୂତି ଓ ଅଭିଜ୍ଞତା ତଥା ଘଟଣଆ ଭିନ୍ନ ଭିନ୍ନ କବିତାରେ ରୂପ ଲାଭ କରିଛି । ମାନବିକ ମୂଲ୍ୟବୋଧ, ପ୍ରକୃତି, ଆଧିଭୌତିକ ଚିନ୍ତା, ଯୋଗୀ ଦର୍ଶନ, ସାମ୍ପ୍ରତିକ ସମୟ ଓ ଜୀବନ ସନ୍ନିହିତ କବିତା ଗୁଡିକରେ ପ୍ରତିଫଳିତ ହୋଇଥିବା ଲକ୍ଷ୍ୟ କରାଯାଏ ।

## ୨୦- ଛଞ୍ଚାଣ ଡେଣାରେ ଭାରତ (୧୯୯୩)

୧୯୯୩ ମସିହାର 'ଚିତ୍ରା' ପତ୍ରିକା ଶାରଦୀୟ ବିଶେଷାଙ୍କରେ ଏହି ଦୀର୍ଘ କବିତାଟି ପ୍ରକାଶିତ । କବିତାଟି ପତ୍ରିକାର ୧୭୧-୧୮୧ ପୃଷ୍ଠା ମଧ୍ୟରେ ସୀମାବଦ୍ଧ । କବିତାଟି ରାମଜନ୍ମଭୂମି, ବାବ୍‌ରୀ ମସଜିଦ୍ ଭଙ୍ଗାହେବା ଓ ଏହାର ପ୍ରତିବାଦରେ ଘଟିଥିବା ସାମ୍ପ୍ରଦାୟିକ ଦଙ୍ଗା ପୃଷ୍ଠଭୂମି ଉପରେ ରଚିତ । କ୍ଷମତା ଲୋଭୀ ନେତାମାନଙ୍କର ଛଦ୍ମ ରୂପକୁ ଏ କବିତାରେ ଖୋଲି ଦିଆଯାଇଛି । ଧର୍ମ ଓ ରାଜନୀତି ଯୁଗଯୁଗରୁ ମିଶି ରହିଛି ମାନବ କଲ୍ୟାଣ ପାଇଁ । କିନ୍ତୁ ସାମ୍ପ୍ରତିକ ସମୟରେ ଛଞ୍ଚାଣ ରୂପୀ ଶାସକମାନେ ଧର୍ମ ନାମରେ ସିଂହାସନ ପାଇଁ ନରହତ୍ୟା ଘଟାଇଛନ୍ତି । ତେଣୁ କବି ରାଜନୀତି ଓ ରାଜନୈତିକ ନେତାମାନଙ୍କ ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିଛନ୍ତି । ଦେଶରେ ଧର୍ମାନ୍ଧତା, ନାରୀଧର୍ଷଣ,

ନିରୀହ ମଣିଷକୁ ଶୋଷଣ ଓ ଅତ୍ୟାଚାର ପାଇଁ ସେ ଶାସକମାନଙ୍କୁ ଦାୟୀ କରିଛନ୍ତି । କବିତାର ଶେଷରେ ସବୁ ଧର୍ମ, ବର୍ଣ୍ଣ ଓ ଜାତି ନିର୍ବିଶେଷରେ ମଣିଷର ଜୟଗାନ ହିଁ କରିଛନ୍ତି ।

## ୨୧- ଚିତାଗ୍ନିର ବୋମା : ହିରୋସୀମା (୧୯୯୩)

ଏହା ସଇଂତିରିଶ ପୃଷ୍ଠା ବିଶିଷ୍ଟ ଏକ ଦୀର୍ଘ କବିତା । ୧୯୯୩ ମସିହା 'କ୍ରାନ୍ତିଧାରା' ପତ୍ରିକାର ଶାରଦୀୟ ବିଶେଷାଙ୍କରେ ପ୍ରକାଶିତ । ଏହି ଦୀର୍ଘ କବିତାର ପୃଷ୍ଠଭୂମି କବିଙ୍କର ଜାପାନର ହିରୋସୀମା ଭ୍ରମଣ ଅନୁଭୂତି ଉପରେ ଆଧାରିତ । କବିଙ୍କର କାବ୍ୟଦୃଷ୍ଟି ଭୂଗୋଳ ଓ ଇତିହାସର ପରିଧି ଅତିକ୍ରମ କରି ଏକ ଅପହଞ୍ଚ ଅନୁଭବକୁ ସ୍ପର୍ଶ କରିଛି । ଏହାକୁ ମଧ୍ୟ ଏକପ୍ରକାର ଭ୍ରମଣ କାବ୍ୟ କୁହାଯାଇପାରେ । ଏଥିରେ ଅଛି ବିମାନ ଉପରୁ ପ୍ରକୃତିର ଦୃଶ୍ୟ କବିଙ୍କୁ ଭାବବିଭୋର କରିଛି । ହୀରୋସିମା ଆକାଶର ଜହ୍ନ କବିଙ୍କୁ ବୋମା ଭଳି ଅନୁଭୂତ ହୋଇଛି । ଅତୀତର ବୋମା ଦୁର୍ଘଟଣା ୧୯୪୫ ମସିହା ଅଗଷ୍ଟ-୬ର ସ୍ମୃତିଚାରଣ କରୁଥିଲାବେଳେ ବର୍ତ୍ତମାନ ଯୁଦ୍ଧଭୟରେ ସେ ଆତଙ୍କିତ ହୋଇଉଠିଛନ୍ତି । ମଣିଷ ଭିତରେ ଲୁଚିଥିବା ଆସୁରିକ ପ୍ରକୃତି କଥା ବର୍ଣ୍ଣନା କରିଛନ୍ତି କବି । ସାମ୍ପ୍ରତିକ ସମୟର ମଣିଷ ପାଇଁ କବିତା ମାଧ୍ୟମରେ ଶାନ୍ତିର ବାର୍ତ୍ତା ପ୍ରଚାର କରିବା ପାଇଁ କବି ପ୍ରଯତ୍ନ କରିଛନ୍ତି । ମୁଖ୍ୟତଃ ଏହି ଦୀର୍ଘ କବିତାଟିର କାବ୍ୟ ଚେତନା ଅତି ପରିମାଣରେ ମାନବିକ ଆବେଦନରେ ମହିମା ମଣ୍ଡିତ ହୋଇଛି ।

## ୨୨- ଉଠପଣାରେ କଠଉ (୧୯୯୪)

ଏହି ଦୀର୍ଘ କବିତାଟି 'ଚିତ୍ରା' ପତ୍ରିକାର ପୂଜା ବିଶେଷାଙ୍କ ୧୯୯୪ ମସିହାରେ ପ୍ରକାଶିତ । ପତ୍ରିକାର ୧୪୭-୧୫୯ ପୃଷ୍ଠା ମଧ୍ୟରେ କବିତାଟି ସୀମିତ । କବିତାର ମୁଖ୍ୟ ସ୍ୱର ହେଉଛି ରୋମାଣ୍ଟିକ ଚେତନା ମଧ୍ୟରେ ଆଧ୍ୟାତ୍ମିକତାର ସ୍ୱରୂପ । ପ୍ରକୃତି ସହ ଜୀବନ ଓ ଶରୀର ସହ ଆତ୍ମାର ସମ୍ପର୍କ ମଧ୍ୟରେ ଜୀବନର ସାର୍ଥକତାକୁ ଏଥିରେ ନିରୂପଣ କରାଯାଇଛି ।

ପରିଶେଷରେ ଏତିକି ମାତ୍ର କୁହାଯାଇପାରେ ଯେ - କବିଙ୍କର ପୁସ୍ତକ ଆକାରରେ ପ୍ରକାଶିତ କବିତା ବ୍ୟତୀତ ଆହୁରି କେତେକ କବିତା ବିଭିନ୍ନ ପତ୍ରପତ୍ରିକାରେପ୍ରକାଶିତ ହୋଇଛି, ଯାହାର ସଙ୍କଳନ କରାଯାଇନାହିଁ । କବିତା ସଙ୍କଳନଗୁଡିକ ଯେଉଁ ମସିହାରେ ପ୍ରକାଶିତ ତା'ର ପୂର୍ବରୁ ରଚିତ କବିତା ଗୁଡିକ ବିଭିନ୍ନ ପତ୍ରପତ୍ରିକାରେ ପ୍ରକାଶିତ ହୋଇ ସାରିଥିଲା । ତେଣୁ କବିତା ପୁସ୍ତକର ପ୍ରକାଶ କାଳକୁ କବିତାର ରଚନା କାଳ ଭାବରେ ଗ୍ରହଣ କରାଯାଇ ନ ପାରେ । ଏଥିରେ କବିଙ୍କର କେବଳ କାବ୍ୟଗ୍ରନ୍ଥ ଗୁଡିକ ବ୍ୟତୀତ ଅନ୍ୟାନ୍ୟ ସୃଷ୍ଟି ସମ୍ପର୍କରେ ସୂଚନା ଦିଆଯାଇ ନାହିଁ । ପରବର୍ତ୍ତୀ ପର୍ଯ୍ୟାୟରେ ପ୍ରକାଶିତ କବିତା ଗୁଡିକର ତାତ୍ତ୍ୱିକ ବିଚାର କରାଯିବାର ପରିକଳ୍ପନା କରାଯାଇଛି ।

* * *

# ତୃତୀୟ ପରିଚ୍ଛେଦ

# ପ୍ରସନ୍ନ ପାଟ୍ଟଶାଣୀଙ୍କ କବିତାର ଭାବାନୁଶୀଳନ

କବିର କାବ୍ୟିକ ବିବର୍ତ୍ତନ ପାଇଁ ତା'ର ମାନସିକ ଚେତନାହିଁ ମୁଖ୍ୟତଃ ଦାୟୀ । ଚେତନାର ସଙ୍କ୍ରମଣ ସ୍ତର ଅନୁସାରେ କାବ୍ୟଚେତନା ବିବର୍ତ୍ତିତ ହୁଏ । କବିର ବ୍ୟକ୍ତିଗତ ଜୀବନର ସ୍ଥିତି ଓ ଗତି ଅନୁସାରେ କାବ୍ୟସ୍ୱରର ପରିବର୍ତ୍ତନ ଦେଖାଯାଏ । କବି ପ୍ରସନ୍ନ ପାଟ୍ଟଶାଣୀଙ୍କ କବିତାର କାବ୍ୟିକ ବିବର୍ତ୍ତନ କେତେକାଂଶରେ ତାଙ୍କର ସାମାଜିକ ପରିବେଶ ଓ ନିଜସ୍ୱ ମାନସିକତା ଯୋଗୁଁ ପରିବର୍ତ୍ତିତ ହୋଇଛି ।

ଓଡ଼ିଶା-ଆନ୍ଧ୍ର ଓ ଓଡ଼ିଶା-ବଙ୍ଗର ସୀମାନ୍ତ ଅଞ୍ଚଳରେ ଯେଉଁ କିଛିକାଳ ନକ୍ସଲ ଆନ୍ଦୋଳନ ହୋଇଥିଲା, ତା' ସହିତ କବି ତାଙ୍କ ଯୁବକ ଅବସ୍ଥାରେ ଜଡ଼ିତ ରହିଥିଲେ । ବିପ୍ଳବୀମାନଙ୍କର ମୁଖପତ୍ର 'ବେଳା'ସାହିତ୍ୟ ପତ୍ରିକା ମାଧ୍ୟମରେ ଓଡ଼ିଆ କବିତାରେ ମାର୍କସବାଦକୁ ବଞ୍ଚେଇ ରଖିବାରେ କବି ପ୍ରସନ୍ନ ପାଟ୍ଟଶାଣୀଙ୍କ ଅବଦାନ ଅନସ୍ୱୀକାର୍ଯ୍ୟ । ଏହି ସମୟରେ ରଚିତ କବିଙ୍କର ପ୍ରାଥମିକ ପର୍ଯ୍ୟାୟର କବିତା ଗୁଡ଼ିକରେ ସାମ୍ୟବାଦୀ ଚିନ୍ତାଧାରାର ପ୍ରତିଫଳନ ଲକ୍ଷ୍ୟ କରାଯାଏ ।

ଯୋଗୀଭାବରେ ଜୀବନ ଯାପନ କରୁଥିବା ସମୟରେ ପ୍ରସନ୍ନ ପାଟ୍ଟଶାଣୀଙ୍କର କାବ୍ୟଦର୍ଶନରେ ଆଧ୍ୟାତ୍ମିକତା ସନ୍ନ୍ୟାସ ଓ ଗୈରିକ ମନସ୍କତାର ସ୍ୱର ଉପଲବ୍ଧ ହୁଏ । ଜୀବନ ସତ୍ତା ସହିତ ଇଶ୍ୱରୀୟ ଭଗବତ୍ ସତ୍ତାର ମହାମିଳନ ଘଟାଇଛନ୍ତି କବି ତାଙ୍କର କବିତା ମାଧ୍ୟମରେ ।

କବିଙ୍କ ଉପରୁ ସରକାରୀ ଓ୍ୱାରେଣ୍ଟ ଉଠିଯିବା ଫଳରେ ସେ ସନ୍ନ୍ୟାସୀ ହୋଇ ଫେରିଆସିଛନ୍ତି ଓଡ଼ିଶାକୁ । ଏହାପରେ ସେ ଓଡ଼ିଶାର ରାଜନୀତିରେ ସକ୍ରିୟ ଭୂମିକା ଗ୍ରହଣ କରିଛନ୍ତି । ତେଣୁ ସେ ଏକ ସ୍ଥିର ଓ ସୁସ୍ଥଜୀବନ ଯାପନ କରିବାର ସୁଯୋଗ ପାଇଛନ୍ତି । ଫଳରେ ତାଙ୍କର କାବ୍ୟ ଚେତନା ସ୍ୱୈରବାଦୀଭାବ ସମ୍ବେଗ ଭିତରେ ନିମଗ୍ନ ରହିଛି । ଏହି ପର୍ଯ୍ୟାୟରେ କବିତା ଗୁଡ଼ିକରେ କବି ନାରୀ, ପ୍ରକୃତି, ପ୍ରେମ ଓ ଖୋର୍ଦ୍ଧାର ଐତିହ୍ୟକୁ ନେଇ କବିତା ରଚନା କରିଛନ୍ତି । ପୁଣି ଏହି ସମୟରେ ସାମୟିକ ଭାବରେ ଦୁର୍ଘଟଣା ଜନିତ ଅନ୍ଧତ୍ୱ କବିଙ୍କ ଚେତନା ଭିତରେ ପ୍ରେମ ଓ ଈଶ୍ୱରଙ୍କୁ ପ୍ରତୀତ କରିବାର ନିବିଡ଼ତା କବିଙ୍କୁ ସ୍ୱୈରବାଦୀ ଭାବ ଚେତନାକୁ ନେଇ କବିତା ଚରନା ପାଇଁ ବିଶେଷ ପ୍ରେରଣା ପ୍ରଦାନ କରିଛି ।

ଲୋକ ପ୍ରତିନିଧି ଭାବରେ ନିର୍ବାଚିତ ହୋଇ ଓଡ଼ିଶାର କ୍ଷମତାସୀନ ରାଜନୈତିକ କ୍ଷେତ୍ରରେ ଯୋଗଦାନ କରିବା ଫଳରେ କବି ଜନସାଧାରଣଙ୍କ ଦୈନନ୍ଦିନ ଜୀବନ ସହିତ ପ୍ରତ୍ୟକ୍ଷ ସମ୍ପର୍କରେ ଆସିଲେ । ଦେଶ ବିଦେଶ ପରିଭ୍ରମଣରେ ଯାଇ ବିଶ୍ୱର ବିଭିନ୍ନ ସଂସ୍କୃତି ଓ ଜନଜୀବନ ସମ୍ପର୍କରେ ପ୍ରତ୍ୟକ୍ଷ ଜ୍ଞାନ ଲାଭର ସୁଯୋଗ କବି ଲାଭ କରିଛନ୍ତି । ଫଳରେ କାବ୍ୟାନୁଚିନ୍ତାରେ କବିଙ୍କର ବିଶ୍ୱମାନବ

ପ୍ରତି ଏକ ଦରଦୀ ହୃଦୟର ଅଭିବ୍ୟକ୍ତି ଫୁଟିଉଠିଲା । ଅଶୀରୁ ନବେ ଦଶକ ମଧ୍ୟରେ କବି ବିଧାନ ସଭାରେ ପାଠ କରିଥିବା ଆଶୁ କବିତାଗୁଡ଼ିକ ମଧ୍ୟରେ ସମକାଳୀନ ରାଜନୈତିକ ନେତା ଓ ପ୍ରଶାସନଙ୍କୁ ବ୍ୟଙ୍ଗ କରିବା ସହିତ ଦରିଦ୍ର ଜନସାଧାରଣଙ୍କ ପ୍ରତି ଅହେତୁକ ମମତା ଜାଗ୍ରତ କରିଛନ୍ତି । ଏହି ସମୟରେ ଅଧିକାଂଶ କବିତାରେ ମାନବବାଦୀ ଚେତନା ତାଙ୍କ କବିତାର ମୁଖ୍ୟସ୍ୱର ହୋଇପଡିଛି । ଏହି ଚାରିଟି ମୁଖ୍ୟ କାବ୍ୟ ଚେତନା ଯଥା:- ସାମ୍ୟବାଦୀ, ଆଧିଭୌତିକ କାବ୍ୟ ଚେତନା, ସ୍ୱୈରବାଦୀ ଓ ମାନବବାଦୀ କାବ୍ୟ ଚେତନାକୁ କବିଙ୍କ କବିତାନୁସାରେ ପୁଙ୍ଖାନୁପୁଙ୍ଖ ଭାବାନୁଶୀଳନ ଏଠାରେ ପ୍ରଦାନ କରାଗଲା । ଏହାଦ୍ୱାରା କବିଙ୍କ କାବ୍ୟ ଜୀବନର ତଥା କବିତାର ଏକ ବିବର୍ତ୍ତିତ ରୂପର ସ୍ୱରୂପ ପରିଲକ୍ଷିତ ହୋଇପାରିବ ।

### (କ) ସାମ୍ୟବାଦୀ ଧାରା

ସାମ୍ୟବାଦୀ କବିତାରେ ସାମାଜିକ-ସଚେତନତା କଥା ଯେଉଁଠି ଉଠେ, ସେଠାରେ ଗୋଟିଏ କଥା ପରିଷ୍କାର ହେବା ଅତ୍ୟନ୍ତ ଜରୁରୀ । ସମାଜ ସଚେତନତାର ଅର୍ଥ କେବଳ ସାମାଜିକନ୍ୟାୟ, ଅନ୍ୟାୟ ଓ ଅତ୍ୟାଚାର ପ୍ରତି ସଚେତନତା ନୁହେଁ । ସାମାଜିକ ସଚେତନତା କହିଲେ, ମଣିଷର ସମାଜ-କୈନ୍ଦ୍ରିକ ସମସ୍ତ କାର୍ଯ୍ୟକଳାପକୁ ବୁଝାଏ ; ସମାଜ ପ୍ରତି ତା'ର ଆନୁଗତ୍ୟ, ସାମାଜିକ ଚଳଣି ଓ ନୀତି ନିୟମ ପ୍ରତି ତା'ର ଅନୁରକ୍ତି ମଧ୍ୟ ଏଇ ସଚେତନତାର ଅନ୍ତର୍ଭୁକ୍ତ । କିନ୍ତୁ ଅନ୍ୟାୟ ଓ ଅତ୍ୟାଚାର ବିରୋଧରେ ସ୍ୱର ଉତ୍ତୋଳନ କରିବା ଏକ ଗୁରୁତ୍ୱ ପୂର୍ଣ୍ଣ ଦିଗ ।

ପ୍ରକୃତ ପକ୍ଷେ ଦେଖିବାକୁ ଗଲେ ବିରୋଧ, ପ୍ରତିବାଦ ବା ବିପ୍ଳବ ଗୋଟିଏ ନିର୍ଦ୍ଦିଷ୍ଟ ଚେତନା । ଏହା ସାମାଜିକ ଚେତନାର ଅନ୍ତର୍ଗତ । ମଣିଷ ବିରୋଧ କରୁ ବା ବିପ୍ଳବ କରୁ, ନିଶ୍ଚିତ ଭାବରେ ତାହା ଏକ ଘଟଣା, ଏକ ବ୍ୟବସ୍ଥା ବା ପରିସ୍ଥିତି ବିରୋଧରେ । ଅବଶ୍ୟ ଏହି ବୈପ୍ଳବିକ ମାନସିକତାର ପସ୍ତୁତି ପାଇଁ ନିର୍ଦ୍ଦିଷ୍ଟ ଭାବରେ ସମାଜ ପ୍ରତି ଅନୁରକ୍ତି ରହିବା ଆବଶ୍ୟକ । ସାମାଜିକ ସୁଖ, ଦୁଃଖ ଓ ଅନ୍ୟାୟ ପ୍ରତି ସେହି ପରିମାଣରେ ସଚେତନତା ବ୍ୟକ୍ତିକୁ ବିଦ୍ରୋହୀ କରେ । ସମାଜ ସହିତ ତା'ର ସମ୍ପର୍କ ଏତେ ନିବିଡ ହୋଇସାରିଥାଏ ଯେ, ଯେତେବେଳେ ସେ ସମାଜରେ ଅବ୍ୟବସ୍ଥା ଦେଖେ, ସେତେବେଳେ ପ୍ରତିବାଦ କରେ । ମଣିଷର ଏହି ପ୍ରତିବାଦ କରିବାର ମାନସିକତା ବୋଧହୁଏ ଜନ୍ମଗତ । ଏହା କୌଣସି ଗୋଟିଏ ସମୟରୁ ଜନ୍ମ ନିଏ ନାହିଁ । ସାମାଜିକ ଜୀବନ ଯାପନ ପ୍ରଣାଳୀରେ ତ୍ରୁଟି ଦେଖିଲେ, ଜୀବନଧାରା ବ୍ୟାହତ ହେଲେ, ତାକୁ ମଣିଷ ନୀରବରେ ସହିପାରେ ନାହିଁ । ସେ ଏହାର ସଂଶୋଧନ ପାଇଁ ଚେଷ୍ଟା କରେ । ଏହି ସଂଶୋଧନର ବଳିଷ୍ଠ ଉପାୟଟି ହିଁ ପ୍ରତିବାଦ । ନିଜକୁ ଏଥିପାଇଁ ସେ ଉତ୍ସର୍ଗ କରେ । ସମାଜ ସହିତ ଥିବା ନିବିଡତା ତାକୁ ଏହା ଶିଖାଇଥାଏ । ଏ ପ୍ରକାର ସଚେତନତା ମଣିଷକୁ, ଅସଜଡା ସମାଜକୁ ସଜାଡିବାରେ ପ୍ରେରଣାଦିଏ । ସେତେବେଳେ ମଣିଷ ତା'ର ପରିସ୍ଥିତି ସହ ପ୍ରଚଳିତ ଅବ୍ୟବସ୍ଥା ବିରୁଦ୍ଧରେ ଲଢିଯାଏ । ସେ ବିପ୍ଳବ କରେ, ବିଦ୍ରୋହ କରେ । ସାମାଜିକ ଅଙ୍ଗୀକାର ବଦ୍ଧତା ତା'ଠାରେ ଦେଖାଦିଏ । ସଚେତନତା ଓ ଅଙ୍ଗୀକାର ବଦ୍ଧତା ମଧ୍ୟରେ ପାର୍ଥକ୍ୟ ହେଲା - ଜଣେ ସମାଜ ସଚେତନ ବ୍ୟକ୍ତି ଓ ଜଣେ ଅଙ୍ଗୀକାର ବଦ୍ଧ ମଣିଷ । ଉଭୟେ ସଚେତନ ମାତ୍ର ଅଙ୍ଗୀକୃତ ମଣିଷଟି ଏହି ସଚେତନତାର ବ୍ୟବହାରିକ ରୂପ । ସେ ନିଜେହିଁ

ଗୋଟେ ସଫଳ ବିପ୍ଳବ । ତେଣୁ ବିପ୍ଳବ ବା ବିଦ୍ରୋହ ସ୍ଲୋଗାନ ଭିତରେ କେବଳ ନ ଥାଏ । ଏହା ମଣିଷର ଏକ ଅନ୍ତର୍ନିହିତ ଚେତନା । ସବୁକାଳରେ ଏକ ଶକ୍ତି ବ୍ୟକ୍ତି ଭିତରେ ନ ଥାଏ । ଯେଉଁଠି ସମାଜ ତାକୁ ବେଖାପ୍ ଲାଗେ, ସେଇଠି ତାହା ଆତ୍ମପ୍ରକାଶ କରେ । ସାମାଜିକ ଜୀବନର ଯେ କୌଣସି ସ୍ତରରେ କିଛି ବିଶୃଙ୍ଖଳା ଦେଖାଦେଲେ ତାକୁ ମଣିଷ ଶୃଙ୍ଖଳିତ କରିବାକୁ ଚେଷ୍ଟାକରେ ।

ମଣିଷର ମାନସିକତା ଭିତରେ ସମାଜର ପ୍ରତିଫଳନ ନୁହେଁ କିମ୍ବା ତା'ଆଖିରେ ସମାଜର୍ର ପ୍ରତିବିମ୍ବିତ ଛବି ନୁହେଁ । ବରଂ ସମାଜ ସହ ସେ ନିଜକୁ ସାମିଲ୍ କରାଏ । ଆବେଗିକ ସ୍ତରରେ ସମାଜର ସୁଖ ଓ ଦୁଃଖ ସହ ଜଡିତ ହୁଏ । ଜୀବନ ସହ ଜଡିତ ସାମାଜିକ ଅନୁଭୂତି ତା'ର ମନସ୍ତରକୁ ପ୍ରଭାବିତ କରେ । କବି ଏହାକୁ କାବ୍ୟରୂପ ଦିଏ । ସମାଜ ସେଇଠି ସାହିତ୍ୟର ପୋଷାକ ପିନ୍ଧି ଆତ୍ମପ୍ରକାଶ କରେ । ଏହାକୁ ବାଦ୍ ଦେଲେ, କାବ୍ୟିକ ଆବେଗ ଆଉ ଯାହା କିଛି ଅଛି, ତାହା ଜୀବନ ଆବେଗ ସହ ସବୁଦିଗରୁ ସମାନ ନୁହେଁ । ତଥାପି ଜୀବନ ଆବେଗ କାବ୍ୟିକ ଆବେଗକୁ ନିୟନ୍ତ୍ରଣ କରେ । ଯାହା ଫଳରେ କାବ୍ୟରୂପକୁ ଦେଖିଲେ ପ୍ରଚଳିତ ସାମାଜିକ ବ୍ୟବସ୍ଥା ସମ୍ପର୍କରେ ସ୍ୱଷ୍ଟ ଧାରଣା କରିହୁଏ ।

ପ୍ରାଚୀନ କାଳରେ ସମାଜ ଜୀବନକୁ ଧର୍ମ ନିୟନ୍ତ୍ରଣ କରୁଥିଲା । ମଣିଷର ଧାରଣା ଓ ଚିନ୍ତାଧାରା ଆଧ୍ୟାତ୍ମିକ ଭାବ ଦ୍ୱାରା ବିଶେଷ ଭାବରେ ପ୍ରଭାବିତ ହେଉଥିଲା । ସେତେବେଳର ସମାଜ-ସଚେତନତା ବିପ୍ଳବ ସମ୍ପର୍କରେ ସଠିକ୍ ପରିଚୟ ମିଳେନାହିଁ । ଏହାର କାରଣ ଧର୍ମ ଥିଲା ସମାଜ-ଜୀବନର ମେରୁଦଣ୍ଡ । ଧର୍ମୀୟ ଅନୁଶାସନ ପ୍ରତି ଲୋକମାନଙ୍କର ଭୟ ଥିଲା । ଅନ୍ୟାୟ, ଅତ୍ୟାଚାର ଓ ଅରାଜକତା ମଧ୍ୟ କମ୍ ଥିଲା । ମଣିଷ ସମସ୍ୟା ଥିଲା କମ । ମାତ୍ର ସାମାଜିକ ପରିବର୍ତ୍ତନ ସହ ବ୍ୟକ୍ତିର ଦୃଷ୍ଟିକୋଣରେ ଯେତେ ପରିବର୍ତ୍ତନ ଆସିଛି, ସେତେ ବଢିଛି ସମସ୍ୟା । ତା'ରଜୀବନ ଯାପନ ପ୍ରଣାଳୀ ଅଧିକ ଜଟିଳ ହୋଇଛି । ସେତେବେଳେ ମଣିଷର ବ୍ୟକ୍ତି ସ୍ୱାତନ୍ତ୍ର୍ୟବୋଧ ନ ଥିଲା । ମଣିଷ ସମାଜର ଅଙ୍ଗହୋଇ ବଞ୍ଚିଥିଲା । ପୁରୋହିତଙ୍କ ଅନୁଶାସନ ତଳେ ଯୁକ୍ତିବାଦୀତା ଅପେକ୍ଷା ମୁକ୍ତି ସ୍ପୃହା ଥିଲା ଅଧିକ । ଇହକାଳ ଅପେକ୍ଷା ପରକାଳ ଉପରେ ଅଧିକ ଗୁରୁତ୍ୱ ଆରୋପ କରାଯାଉଥିଲା । ଜୀବନ ଭୋଗରେ ନୁହେଁ, ତ୍ୟାଗରେ । ସମ୍ଭୋଗରେ ନୁହେଁ, ବୈରାଗ୍ୟରେ ସମସ୍ତେ ତୃପ୍ତି ଲୋଡୁଥିଲେ । ଯେତେବେଳେ ଜୀବନ-ଯାପନ ପ୍ରଣାଳୀରେ ନୂଆ ନୂଆ ସମସ୍ୟା ଦେଖାଦେବା ଫଳରେ ମଣିଷ ତାହାକୁ ଦୂର କରିବାକୁ ଚେଷ୍ଟା କଲା । ଯେତେବେଳେ ଶୃଙ୍ଖଳିତ ଉପାୟରେ ସମାଜର ସମସ୍ୟା ସମାଧାନ ହୋଇ ନ ପାରିଲା, ସେତେବେଳେ ମଣିଷ ପାଇଁ ବିପ୍ଳବର ଆବଶ୍ୟକତା ପଡିଲା ।

ବିପ୍ଳବ ବା ବିଦ୍ରୋହ ଗୋଟେ ଯୁଦ୍ଧ, ରକ୍ତପାତ ଜନିତ ବିଶୃଙ୍ଖଳାକୁ ବୁଝାଏ ନାହିଁ ସବୁ ସମୟରେ । ଏହାର ଜନ୍ମ ବ୍ୟକ୍ତିଗତ ପ୍ରଚେଷ୍ଟାରୁ ନୁହେଁ । ସମୂହର ଅଧିକାରକୁ ଉପସ୍ଥାପନ କରିବା ପାଇଁ ଏହା ଏକ ସୃଙ୍ଖଳିତ ମାଧ୍ୟମ । ସେଥିପାଇଁ ସାମାଜିକ ସଚେତନତାର ଆବଶ୍ୟକତା ପଡେ । ନିରବଚ୍ଛିନ୍ନ ଭାବରେ ସମାଜ ସଚେତନତା ବ୍ୟକ୍ତି ଭିତରେ ବିଦ୍ରୋହୀ ମାନସିକତା ସୃଷ୍ଟିକରେ ।

ବିପ୍ଳବ ବା ବିଦ୍ରୋହକୁ ଯେଉଁ ଅର୍ଥରେ ନିଆଯାଉଛି , ସାମାଜିକ ଅଙ୍ଗୀକାର ଠିକ୍ ତାହା ନୁହେଁ । ପାଶ୍ଚାତ୍ୟ ନବଜାଗରଣ ଭିତରେ ଏହାର ଅୟମାରମ୍ଭ ହୋଇଥିଲା । ଅଷ୍ଟାଦଶ ଶତାବ୍ଦୀର ବହୁ ପୂର୍ବରୁ ମଣିଷର ଭାଗ୍ୟ ଓ ଜୀବନ, ଧର୍ମ ଓ ଈଶ୍ୱର ଦ୍ୱାରା ପରିଚାଳିତ ହେଉଥିଲା । ମଣିଷର ସୁଖ ଦୁଃଖକୁ ଈଶ୍ୱର ସମାଧାନ କରି ନ ପାରିବାରୁ ସେ ଈଶ୍ୱରଙ୍କୁ ଦୋଷ ଦେଇ ତାଙ୍କୁ ଅସ୍ୱୀକାର କରିବାକୁ

ଆରମ୍ଭ କଲା । ମଣିଷ ନିଜେ ନିଜର ଜୀବନ ଓ ଭାଗ୍ୟ ସହ ସଂଘର୍ଷ କଲା । ବିପ୍ଳବ ମଣିଷର ସାମାଜିକ ଧାରଣା ସହିତ ଏହି ସମୟରୁ ଜଡିତ । ଈଶ୍ୱର ସୃଷ୍ଟ ସମାଜ ଓ ତା'ର ଅବ୍ୟବସ୍ଥା ବିରୋଧରେ ତୀବ୍ର ପ୍ରତିବାଦରୁ ବିପ୍ଳବ ସୃଷ୍ଟି ହେଲା । ଯୁଗଯୁଗରୁ ମଣିଷର ଏହି ବିଦ୍ରୋହୀ-ମନୋଭାବ ସମସ୍ୟା ସମାଧାନର ଉପାୟ ଭାବେ ମଣିଷର ସାମାଜିକ ଧାରଣାକୁ ପ୍ରଭାବିତ କଲା । ସାହିତ୍ୟ ଓ ସମାଜର କ୍ରମ ବିବର୍ତ୍ତନରେ ବିପ୍ଳବ କେବଳ ଅନ୍ୟାୟ ଅତ୍ୟାଚାର, ଅବ୍ୟବସ୍ଥା ଓ ଶ୍ରେଣୀ ସଂଘର୍ଷରେ ସୀମାବଦ୍ଧ ନ ରହି ନୈତିକ ଜଗତକୁ ମଧ୍ୟ ପ୍ରଭାବିତ କରିଛି । ତେଣୁ କବି ସମାଜ ସହିତ ନିବିଡ ହୋଇ ନିଜର ବ୍ୟକ୍ତିଗତ ଚେତନାକୁ ସମାଜ ଅଭିମୁଖୀ କରିବାପାଇଁ ଉଦ୍ୟମ ଅବ୍ୟାହତ ରଖିଥାଏ ।

ପ୍ରଥମେ ୟୁରୋପରେ ଏହି ସାମାଜିକ-ଦର୍ଶନଟି କାଲମାର୍କସ ଓ ଏଙ୍ଗେଲସ୍‌ଙ୍କ ଚିନ୍ତାଧାରାରୁ ସୃଷ୍ଟି ହୋଇ ରାଜନୀତି ଓ ସମାଜ କ୍ଷେତ୍ରରେ ଏକ ବିରାଟ ପରିବର୍ତ୍ତନ ଆଣିଥିଲା । ସାମ୍ୟବାଦୀ ନେତା ଲେନିନ୍ ୧୯୧୭-ଋଷ ବିପ୍ଳବ ମାଧ୍ୟମରେ ଏହି ଚିନ୍ତାଧାରାର ପ୍ରଭାବକୁ ପ୍ରମାଣ କରିଥିଲେ । ଜାର୍‌ଶାସନ ବିରୋଧରେ ସଂଗ୍ରାମକରି ଶ୍ରମିକ ଓ ମେହେନତୀଶ୍ରେଣୀ ବିଜୟ ଲାଭ କଲେ । ଏହାଦ୍ୱାରା ଏକ ସାମ୍ୟବାଦୀ ସାମାଜିକ ମୂଲ୍ୟବୋଧ ପ୍ରତିଷ୍ଠିତ ହୋଇପାରିଲା । ସେହି ସମୟରେ ମାର୍କସ ଦର୍ଶନ ଉପରେ ପ୍ରତିଷ୍ଠିତ ଋଷ୍ ସାହିତ୍ୟ ଥିଲା ଲେନିନଙ୍କ ପ୍ରେରଣାର ଉତ୍ସ । ତୃତୀୟ ଦଶକର ଆରମ୍ଭରେ ପାଶ୍ଚାତ୍ୟ ସାହିତ୍ୟରେ ସାମ୍ୟବାଦୀସ୍ୱର ଅନୁରଣିତ ହୋଇଥିଲା । ୧୯୨୦-୩୫ ମସିହା ବେଳକୁ ସମଗ୍ର ଇଉରୋପୀୟ କାବ୍ୟମାନସ ଏହି ଚିନ୍ତାଧାରା ଦ୍ୱାରା ପ୍ରଭାବିତ ହେବାକୁ ଲାଗିଲା । ୟୁରୋପର କେତେକ ପ୍ରଗତି କାମୀ ଲେଖକ ଯଥା- ଇଂଲଣ୍ଡର ଅଡେନ ସ୍ପେଣ୍ଡର, ଋଷିଆର ମାୟା କୋଭସ୍କି, ଆମେରିକାର ହୁଇଟମ୍ୟାନ ଓ ଫରାସୀ କବି ଲୁଇ ଆରାଗଁଙ୍କ କବିତାରେ ଏହି ଚେତନା ଆତ୍ମପ୍ରକାଶ କଲା । ଲୁଇ ଆରାଗଁ କହିଲେ-"The red train starts and nothing shall stop it." ଏହି ଲାଲ୍ ଟ୍ରେନ୍ ଥିଲା ସାମ୍ୟବାଦର ପ୍ରତୀକ । ଏହାହିଁ ଥିଲା ତଥା କଥିତ ପାଶ୍ଚାତ୍ୟ ସାହିତ୍ୟରେ ପ୍ରଗତିବାଦୀ କାବ୍ୟ ଆନ୍ଦୋଳନ । ଏହି ଆନ୍ଦୋଳନ ଦ୍ୱାରା ପୃଥିବୀର ଅଗ୍ରଗାମୀ ଲେଖକମାନେ ପ୍ରଭାବିତ ହୋଇଥିଲେ ।

ଏହି ସମୟରେ ଭାରତୀୟମାନେ ଗାନ୍ଧିଜୀଙ୍କର ଅହିଂସାନୀତିରେ ଦୀକ୍ଷିତ ହୋଇ ସ୍ୱାଧିନତା ସଂଗ୍ରାମରେ ମାତି ରହିଥିଲେ । ତେଣୁ ମାର୍କସଙ୍କ ପ୍ରବର୍ତ୍ତିତ ବୈପ୍ଳବିକ ଆଭିମୁଖ୍ୟଟି ପ୍ରତି ପ୍ରଥମେ ଭାରତ ଆଗ୍ରହୀ ହୋଇପାରି ନ ଥିଲା । କିନ୍ତୁ ୧୯୩୦-୪୦ ମସିହା ବେଳକୁ ଏହି ସାମ୍ୟବାଦୀ ଦର୍ଶନଠାରୁ ଭାରତୀୟ ଚିନ୍ତାନାୟକମାନେ ଦୂରେଇ ରହିପାରି ନଥିଲେ । ଠିକ୍ ଏହି ସମୟରେ ପ୍ରଗତି ବାଦୀ କାବ୍ୟ ଚେତନା ଓଡିଆ ସାହିତ୍ୟରେ ପ୍ରବେଶ କରିଥିଲା ।

୧୯୩୫ ମସିହାରେ ସ୍ୱର୍ଗତ ଭଗବତୀ ଚରଣ ପାଣିଗ୍ରାହୀଙ୍କ ନେତୃତ୍ୱରେ ଓଡିଶାରେ "ନବଯୁଗ ସାହିତ୍ୟ ସଂସଦ" ଗଠନ କରାଯାଇଥିଲା । ମାର୍କସୀୟ ଚେତନା ସମ୍ବଳିତ ସାହିତ୍ୟ ସର୍ବପ୍ରଥମେ ସାମାଜିକ ବୈଷମ୍ୟ ବିରୋଧରେ ସ୍ୱର ଉତ୍ତୋଳନ କରିଥିଲା । ଏହି ସଂସଦର ମୁଖ୍ୟ ଲକ୍ଷ୍ୟ ଥିଲା ଏକ ଶୋଷଣ ମୁକ୍ତ ଶ୍ରେଣୀହୀନ ସମାଜ ପ୍ରତିଷ୍ଠା ।

ଓଡିଆ ସାହିତ୍ୟରେ ଏହି ସାମ୍ୟବାଦୀ କାବ୍ୟଧାରାଟି ୧୯୩୫ ରୁ ୪୦ ମସିହା ମଧ୍ୟରେ କାଳିନ୍ଦୀ ଚରଣ ପାଣିଗ୍ରାହୀ, ସଚ୍ଚିଦାନନ୍ଦ ରାଉତରାୟ, ଅନନ୍ତ ପଟ୍ଟନାୟକ ପ୍ରଭୃତି ବିଶିଷ୍ଟ ସାମ୍ୟବାଦୀ

କବିମାନଙ୍କଠାରୁ ଆରମ୍ଭ ହୋଇଛି । କାଳିନ୍ଦୀ ଚରଣ ପାଣିଗ୍ରାହୀଙ୍କର 'ଛୁରୀଟିଏ ଲୋଡ଼ା'(୧୯୩୯), 'ଆଗାମୀ'(୧୯୪୨), 'ଜୟ ଭଗବାନ' (୧୯୩୬), 'କିଏ ଶଳା ଶଇତାନ୍' (୧୯୪୪), ସଚ୍ଚିଦାନନ୍ଦଙ୍କର 'ଅଭିଯାନ' (୧୯୩୯), 'ବାଜିରାଉତ' (୧୯୪୩), ଅନନ୍ତ ପଟ୍ଟନାୟକଙ୍କର 'ରକ୍ତଶିଖା' (୧୯୩୯), ପ୍ରଭୃତି ଏହି ଚେତନାଶ୍ରୟୀ ସୃଷ୍ଟି ମଧ୍ୟରେ ଅନ୍ୟତମ । ଲକ୍ଷ୍ମୀଧର ନାୟକଙ୍କର ପ୍ରଳୟ ପଥେ (୧୯୩୬), 'ପ୍ରଭାତର ଯାତ୍ରୀ' (୧୯୩୭), 'ବଞ୍ଚିତର ବ୍ୟଥା' (୧୯୩୭) ପ୍ରଭୃତି ଏହି ଚିନ୍ତାଧାରାର ପରିପ୍ରକାଶ ।

୧୯୪୦ ରୁ ୫୦ ମସିହା ମଧ୍ୟରେ ଏହି ସାମ୍ୟବାଦୀ ଚେତନା ଓଡ଼ିଆ କବିତାରେ ଶ୍ରୀ ରଘୁନାଥ ଦାସଙ୍କର ''ଅଗଷ୍ଟ ପନ୍ଦର ଓ ଅନ୍ୟାନ୍ୟ କବିତା'' (୧୯୭୩), ଶ୍ରୀ ମନମୋହନ ମିଶ୍ରଙ୍କର 'ମୁକ୍ତି ଡାକରା', 'କୋଟିକଣ୍ଠେ' (୧୯୫୧), ଓ କେତେକ କ୍ଷେତ୍ରରେ କୁଞ୍ଜ ବିହାରୀ ଦାସ, କୃଷ୍ଣଚନ୍ଦ୍ର ତ୍ରିପାଠୀ, ଚକ୍ରଧର ରାଉତ, ଜୀବନାନନ୍ଦ ଆଚାର୍ଯ୍ୟ, ବୈକୁଣ୍ଠନାଥ ଦାସ, ରଜନୀ କାନ୍ତ ଦାସ ଓ ସୁନନ୍ଦ କର ପ୍ରଭୃତି ବହୁ କବିଙ୍କ ଦ୍ୱାରା ପ୍ରତିଷ୍ଠିତ ହୋଇଥିଲା । ସ୍ୱାଧୀନତା ପର୍ଯ୍ୟନ୍ତ ଏହି ବୈପ୍ଳବିକ ଭାବଧାରାଟି ଅଧିକ ଉଗ୍ର ହୋଇ ଆସୁଥିବା ବେଳେ ୧୯୩୯ରୁ ୧୯୪୫ ମଧ୍ୟରେ ଘଟିଥିବା ଦ୍ୱିତୀୟ ବିଶ୍ୱଯୁଦ୍ଧ ପ୍ରଭାବରେ ବିପ୍ଳବ ଅପେକ୍ଷା ଆତ୍ମରକ୍ଷା ଥିଲା କାବ୍ୟ କବିତାର ମୁଖ୍ୟ ସ୍ୱର । ତେଣୁ ସୋଭିଏତ ଋଷଆଡୁ ଆସିଥିବା ଏହି ସାମ୍ୟବାଦୀ ଭାବଧାରାଟି ନିଷ୍ପ୍ରଭ ହୋଇ ପଡିଲା । ଫଳରେ ଓଡ଼ିଶାର ମୁଖ୍ୟ ସାମ୍ୟବାଦୀ କବିମାନେ ସେମାନଙ୍କ କାବ୍ୟ ଚିନ୍ତାରେ ପରିବର୍ତ୍ତନ ଆଣିଲେ । ମାର୍କସଙ୍କ ସଂଗ୍ରାମୀ ମାର୍ଗ ଅପେକ୍ଷା ଗାନ୍ଧିଜୀଙ୍କର ଅହିଂସା ଓ ଅନଶନର ମାର୍ଗ ଅଧିକ ମୂଲ୍ୟବାନ ମନେହେଲା । ତେଣୁ ଏହି ସଂଗ୍ରାମୀ କାବ୍ୟସ୍ୱରଟି ଓଡ଼ିଆ କବିତାରେ ଦୁର୍ବଳ ହୋଇଗଲା । ମାର୍କସୀୟ ଭାବଧାରା ପୁଷ୍ଟ କବିତା ଓଡ଼ିଶା ଭୂଇଁରେ ଯେତେବେଳେ ଆତ୍ମପ୍ରତିଷ୍ଠା ଲୋଡୁଥିଲା, ସେତେବେଳେ ରୋମାଣ୍ଟିକ୍ କବି ବିନୋଦ ନାୟକ ଏହାର ଦୃଢ଼ ପ୍ରତିବାଦ କରି କହିଲେ- ''ଏଥିରେ ଚିନ୍ତା ତଥା ହୃଦୟ ବୃତ୍ତିର କୌଣସି ଶଙ୍କୁ ପ୍ରତିଷ୍ଠିତ ହୋଇପାରୁ ନାହିଁ ।''(- ଶତପଥୀ ନିତ୍ୟାନନ୍ଦ - ସବୁଜରୁ ସାମ୍ପ୍ରତିକ । ପୃଷ୍ଠା-୨୭୩ )

ଏହି ପ୍ରତିବାଦକୁ ସମର୍ଥନ କରି କେତେକ କବି ସାମ୍ୟବାଦୀ କାବ୍ୟଧାରାଟି ପ୍ରତି ସନ୍ଦିହାନ ହୋଇଥିବା ମନେ ହୁଏ । ତେଣୁ ଲକ୍ଷ୍ୟ କରାଯାଏ, ଓଡ଼ିଶାରେ ସାମ୍ୟବାଦୀ କାବ୍ୟଧାରାଟି ବହୁ ଘାତ ପ୍ରତିଘାତ ଦେଇ ଗତି କରିଥିଲେ ମଧ୍ୟ ଏହାର ଏକ କ୍ଷୀଣ ସ୍ରୋତ ଏଯାବତ୍ ଓଡ଼ିଆ ସାହିତ୍ୟରେ ଅବ୍ୟାହତ ରହିଛି ।

ଉତ୍ତର ପଚାଶ ପରେ ପ୍ରଗତିବାଦୀ କବିମାନେ ବୈପ୍ଳବିକ ଭାବଧାରାକୁ ପରିତ୍ୟାଗ କରି ସ୍ୱାଧୀନତା ପରବର୍ତ୍ତୀ ମାନସିକ ସ୍ୱପ୍ନ ଭଙ୍ଗ, ଜଡ଼ତା, ହତାଶା ଓ ଗ୍ଳାନି ପ୍ରଭୃତି କାବ୍ୟ ଚିନ୍ତାକୁ ପ୍ରଭାବିତ କଲା । ଫଳରେ ସାମ୍ୟବାଦୀ ଧାରାଟି ପ୍ରତି ଓଡ଼ିଶାର କବିମାନଙ୍କର ଶ୍ରଦ୍ଧା ଓ ଆକର୍ଷଣ କମିବାକୁ ଲାଗିଲା । ଉଗ୍ର ସାମ୍ୟବାଦୀ କବିମାନେ ପରବର୍ତ୍ତୀ ସମୟରେ ଗାନ୍ଧୀବାଦର ଆଶ୍ରୟ କିପରି ନେଇଥିଲେ, ତା'ର ପ୍ରମାଣ ଅନନ୍ତ ପଟ୍ଟନାୟକଙ୍କର 'ତର୍ପଣ କରେ ଆଜି' ଓ କୁଞ୍ଜ ବିହାରୀ ଦାସଙ୍କର 'ମାଟି ଓ ଲାଠି' କବିତାରେ ଲକ୍ଷ୍ୟ କରାଯାଏ । ତେଣୁ ''ମାର୍କସବାଦ ଭାରତ ତଥା ଓଡ଼ିଶାରେ ଏକ ଆତ୍ମଦ୍ୱନ୍ଦ୍ୱର ସମ୍ମୁଖୀନ ହୋଇଛି ।''( ଶତପଥୀ ନିତ୍ୟାନନ୍ଦ - ସବୁଜରୁ ସାମ୍ପ୍ରତିକ । ପୃଷ୍ଠା-୨୭୫)

ସ୍ୱାଧୀନତା ପରବର୍ତ୍ତି କାଳରୁ ଏହାର ଏକ କ୍ଷୀଣ ଧାରା ଓଡିଆ କବିତାରେ ଗତି ଆସିଛି । ୧୯୬୨ ମସିହାପରେ କବି ସଚ୍ଚି ରାଉତରାୟ ଓଡିଶାର ଜନଜୀବନ ଓ ସମସ୍ୟା ଭିତରକୁ ଫେରି ଆସିବାରୁ ପୁନର୍ବାର ତାଙ୍କ କବିତାରେ ସାମ୍ୟବାଦୀ ବୈପ୍ଳବିକ ଚେତନାଟି ଦେଖାଦେଲା । ସଚ୍ଚି ରାଉତରାୟଙ୍କର ସହୀଦ୍ ପ୍ରଦୀପ୍ତ (୧୯୬୫), ଏସିଆର ସ୍ୱପ୍ନ (୧୯୬୮), ନାଗଭୂଷଣ (୧୯୭୧), ଶ୍ରୀ ରଘୁନାଥ ଦାସଙ୍କ ପଦଧ୍ୱନି (୧୯୫୦) ପ୍ରଭୃତି ଏହାର ଦୃଷ୍ଟାନ୍ତ ।

ଉତ୍ତର ଷାଠିଏ/ସତୁରୀ ବେଳକୁ ଦୀର୍ଘ ଦୁଇଦଶକର ବ୍ୟବଧାନ ପରେ ତଥାକଥିତ ସାମ୍ୟବାଦୀ କାବ୍ୟସ୍ୱରଟି ଅପରିବର୍ତ୍ତିତ ଓ ଅବ୍ୟାହତ ରହିଛି । ଏହି ଲୁପ୍ତ ବିପ୍ଳବୀଧାରାଟିକୁ ଲୋକ ଲୋଚନକୁ ଆଣି ଶ୍ରୀ ରବି ସିଂ, ବ୍ରଜନାଥ ରଥ, ଶ୍ରୀ ସଦାଶିବ ଦାସ ଓ ଶ୍ରୀ ପ୍ରସନ୍ନ ପାଟ୍ଟଶାଣୀ ଉତ୍ତର ସତୁରୀ ବେଳକୁ ଏହାକୁ ସମୃଦ୍ଧ ଓ ପରିପୁଷ୍ଟ କରିଛନ୍ତି । ସମକାଳୀନ ସମାଜରେ ଘଟୁଥିବା ଅନ୍ୟାୟ, ଅନାଚାର ବିଘ୍ନ, ବିଦ୍ୱେଷ ଓ ବୈଷମ୍ୟ ବିରୋଧରେ କାବ୍ୟ ବାଣ ପ୍ରୟୋଗ କରି ଏମାନେ ଆପଣାର ଲେଖନୀକୁ ଶାଣିତ କରିଛନ୍ତି । ବେଳେବେଳେ ପ୍ରତିବାଦ, ପ୍ରତିରୋଧ ଓ ଆଉ ବେଳେବେଳେ କେବଳ ବିଦ୍ରୁପର କଟାକ୍ଷରେ ପରାଙ୍ଗପୁଷ୍ଟ ସମାଜର ଉପାସୀ ଛାରପୋକମାନଙ୍କୁ ଆକ୍ରମଣ କରିଛନ୍ତି । ''ବିରୋଧ, ପ୍ରତିବାଦ ଓ ବିପ୍ଳବ- ଏସବୁ ସମ୍ଭବ ହୁଏ ସେତେବେଳେ, ଯେତେବେଳେ ଆତ୍ମକେନ୍ଦ୍ରିକ ମନ ଜୀବନର ଦୁଃଖଦ ପରିଣତି ଓ ମଣିଷର ବେଦନାକୁ ସମ୍ପୂର୍ଣ୍ଣଭାବେ ହୃଦୟଙ୍ଗମ କରେ ।''( ମହାପାତ୍ର ସୀତାକାନ୍ତ - ଭିନ୍ନ ଆକାଶ ଭିନ୍ନ ଦୀପ୍ତି । ପୃଷ୍ଠା-୨୨)

ସ୍ୱାଧୀନତା ପରେ ଯେତେବେଳେ ଗାନ୍ଧୀବାଦ ଓ ପାଶ୍ଚାତ୍ୟ ଦର୍ଶନ ପ୍ରଭାବରେ ମଣିଷ ବହୁ ପରିମାଣରେ ନିଜ ଭିତରେ ସୀମିତ ରହି ସମୂହ ଭଲମନ୍ଦ କଥା ପାଇଁ ବ୍ୟଗ୍ର ହେଉ ନଥିଲା, ସେତେବେଳେ ରାଜନୀତିରେ ଦେଖାଦେଲା ଅରାଜକତା, ଦେଶୀୟ ନେତାମାନଙ୍କର ଶୋଷଣ ମଣିଷର ସ୍ୱପ୍ନ ଭଙ୍ଗ କଲା । ଫଳରେ ଗାନ୍ଧୀବାଦ ଉପରୁ ଜନତାର ବିଶ୍ୱାସ ତୁଟିଗଲା । ଗାନ୍ଧୀବାଦ, ସ୍ୱାଧୀନତା ସଂଗ୍ରାମ ଓ ଗଣତାନ୍ତ୍ରିକ ପୁଞ୍ଜିବାଦର ବିକାଶ ସହିତ ପଶ୍ଚିମୀ ମନୋଭାବ ଚାପରେ ଓଡିଶାରେ ଦେଖାଦେଇଥିବା ପ୍ରଗତିବାଦୀ ସ୍ୱର ଆନ୍ଦୋଳନାତ୍ମକ ପର୍ଯ୍ୟାୟରେ ପହଞ୍ଚିପାରି ନ ଥିଲେ ମଧ୍ୟ ଏହି ଆବେଦନ କବିତାରୁ ଦୂର ହୋଇ ପାରି ନ ଥିଲା । ଏହି ପରିସ୍ଥିତିରେ କବି ପ୍ରସନ୍ନ ପାଟ୍ଟଶାଣୀ ଓ ତାଙ୍କ ସମସାମୟିକ ଆଉ କେତେକ କବିଙ୍କୁ ଏହି ଚେତନା ଗଭୀରଭାବେ ପ୍ରଭାବିତ କରିଥିବା ଲକ୍ଷ୍ୟ କରାଯାଏ । ଏମାନେ ବିପ୍ଳବ ଓ ମାର୍କସୀୟ ଦର୍ଶନରେ ଗଭୀର ବିଶ୍ୱାସ କରୁଥିଲେ । କବି ପ୍ରସନ୍ନ ପାଟ୍ଟଶାଣୀ ମହାବିଦ୍ୟାଳୟର ଛାତ୍ରଥିବାବେଳେ 'ବେଳା' ନାମକ ପତ୍ରିକାର ସମ୍ପାଦନା କରୁଥିଲେ । ଏଥିରେ ସେ ଗଣତନ୍ତ୍ରର ବିଫଳତା ବିରୋଧରେ ସ୍ୱର ଉତ୍ତୋଳନ କରିବା ସହିତ ମାର୍କସୀୟ ବିପ୍ଳବ ଓ ଅର୍ଥନୈତିକ ସମାନତା କଥା ଶୁଣାଉଥିଲେ । କହିବା ବାହୁଲ୍ୟ ଏହି 'ବେଳା' ପତ୍ରିକା ଏକ ବୈପ୍ଳବିକ ଚେତନାର ବାର୍ତ୍ତାବହ ଥିଲା । ଏହି ସମୟର ପ୍ରାୟ ଅଧିକାଂଶ କବି ଯେଉଁମାନେ ଏହି ଗୋଷ୍ଠୀ ସହ ସମ୍ପୃକ୍ତ ଥିଲେ ସେମାନେ ସମସ୍ତେ ଏହି ଧାରାରେ କବିତା ରଚନା କରୁଥିଲେ । 'ବେଳା' ପତ୍ରିକା କବିଙ୍କୁ ପ୍ରତିଷ୍ଠିତ ହେବାର ସୁଯୋଗ ଆଣି ଦେଇଥିଲା । ପରବର୍ତ୍ତି କାଳରେ 'ବେଳା' ପତ୍ରିକା ସରକାରଙ୍କ ଦ୍ୱାରା ଉଚ୍ଛେଦ ହେବାରୁ ଏହି କବିଙ୍କ ସମେତ କେତେଜଣ ଗୋପନରେ ରହି ଉକ୍ତ ଆନ୍ଦୋଳନକୁ ପ୍ରସାର କରିବାର ପଦକ୍ଷେପ ନେଇଥିଲେ । ଏମାନେ ଓଡିଶା, ଆନ୍ଧ୍ର ଓ ପଶ୍ଚିମ ବଙ୍ଗର ଜଙ୍ଗଲମାନଙ୍କରେ ରହି ନକ୍ସଲପନ୍ଥୀ ଆନ୍ଦୋଳନରେ ନିଜକୁ ସାମିଲ କରାଇଥିଲେ । ଯଦିଓ ନକ୍ସଲ ଆନ୍ଦୋଳନର ନିର୍ଦ୍ଦିଷ୍ଟ

ଭବିଷ୍ୟତ କିଛି ନ ଥିଲା ବା ଏ ପ୍ରକାର ଆନ୍ଦୋଳନର ଉଦ୍ଦେଶ୍ୟ ସ୍ପଷ୍ଟ ହୁଏ ନାହିଁ, ତଥାପି ଏମାନେ ଏକ ରକ୍ତାକ୍ତ ବିପ୍ଳବରେ ବିଶ୍ୱାସ କରୁଥିଲେ । ନକ୍ସଲ ଆନ୍ଦୋଳନ ବର୍ଷ ବର୍ଷ ଧରି ସରକାରଙ୍କ ଦମନମୂଳକ ନୀତିର ଶିକାର ହୋଇ ବିପର୍ଯ୍ୟସ୍ତ ହୋଇଗଲା । ଏହି କବିଙ୍କ ସହିତ ଆହୁରି କେତେକ ଯଦିଓ ଏ'ରାସ୍ତାରୁ ଓହରି ଆସିଲେ, ତଥାପି ପ୍ରଥମରୁ କେତେବର୍ଷ ପୋଲିସ୍‌ର ଅତ୍ୟାଚାର ସହି ବଣଜଙ୍ଗଲରେ ଘୂରିଘୂରି ନିଜର ଯେଉଁ ବାର୍ତ୍ତା ପ୍ରଚାର କରୁଥିଲେ ତାହାହିଁ କବି ପ୍ରସନ୍ନ ପାଟଶାଣୀଙ୍କୁ ବୈପ୍ଳବିକ ଚେତନା ମୂଳକ ସାମ୍ୟବାଦୀ ସାହିତ୍ୟ ସୃଷ୍ଟି କରିବାପାଇଁ ପ୍ରେରଣା ଦେଇଥିଲା ।

ପରବର୍ତ୍ତୀ ସମୟରେ କାବ୍ୟିକ ବିବର୍ତ୍ତନରେ କବିଙ୍କର କାବ୍ୟସ୍ୱର ବଦଳିଛି । ତଥାପି ସେ ଏହି ଧାରାରେ ଯେଉଁ କେତେକ କବିତା ବହି ରଚନା କରିଛନ୍ତି, ତାହା ବିପ୍ଳବର ବଳିଷ୍ଠ ସ୍ୱରଧରି ସତୁରୀ ଉତ୍ତର ଓଡ଼ିଆ କବିତାରେ ପ୍ରତିଷ୍ଠିତ ହୋଇଛନ୍ତି । କାବ୍ୟ ସାଧନାର ପ୍ରଥମ ପର୍ଯ୍ୟାୟରୁ ଲେନିନ୍‌ଙ୍କ ବ୍ୟକ୍ତିତ୍ୱ ଦ୍ୱାରା ପ୍ରଭାବିତ ହୋଇ 'ଲେନିନ୍' ଶୀର୍ଷକ ଦୀର୍ଘ କବିତା ରଚନା କରିଛନ୍ତି । ଏହି କାବ୍ୟ ଏକ ନିର୍ଦ୍ଦିଷ୍ଟ ବ୍ୟକ୍ତି ଚେତନାରୁ ଆରମ୍ଭ ହୋଇ ସାଧାରଣ ଜନତାର ଚେତନାକୁ ସମ୍ପ୍ରସାରିତ ହୋଇଛି । ଲେନିନ୍ ଯେପରି ଏକ ବ୍ୟକ୍ତି ସତ୍ତା ନୁହଁନ୍ତି, ଏକ ସାଧାରଣ ସଚଳ ଆବେଗିକ ଅନୁଭବ । ଯାହା ଜୀବନର ସବୁସ୍ତରରେ ମିଶି ରହିଛି । 'ଲେନିନ'ଙ୍କୁ କବି ନିଜର ଅନୁଭବ ସ୍ତରରେ ଯେପରି ରୂପାୟିତ କରିଛନ୍ତି, ଠିକ୍ ସେମିତି ସାଧାରଣ ଜନତାର ସୁଖ ଦୁଃଖକୁ ଅନୁଭବ କରିଛନ୍ତି । ଲେନିନ୍ ଏକ ରକ୍ତମାଂସଧାରୀ ମଣିଷ ନୁହଁନ୍ତି , କବି ଦୃଷ୍ଟିରେ ସେ ଏକ ଚେତନା । ସେ ଏକ ସଫଳ ବିପ୍ଳବ । ଯେପରି-

> ''ଲେନିନ୍
>
> ଲେନିନ୍ ଏକ ଦୂର ଗାଁ ନଈ
>
> ସବୁଜ ପ୍ରାନ୍ତର ଦେହେ ଧୀରେ ଯାଏ ବହି
>
> ନିର୍ଭୟରେ ଚରେ କାହା ଦୁଧିଆଳୀ ଗାଈ
>
> ପାରି ହୋଇ ପିଚୁ ରାସ୍ତା
>
> ପାଖ ରେଳ ପଇ ।''
>
> (ପାଟଶାଣୀ ପ୍ରସନ୍ନ - ଲେନିନ୍ । ପୃଷ୍ଠା-୬)

ନିର୍ଦ୍ଦିଷ୍ଟ ଚେତନା ଭିତରେ ସୀମାବଦ୍ଧ ନୁହେଁ । ସବୁଠି ସେ ସମ୍ପ୍ରସାରିତ । ଏହି ଜନଗଣ ତାନ୍ତ୍ରିକ ବିପ୍ଳବର ତତ୍ତ୍ୱ ମୂଳ ମାର୍କସତତ୍ତ୍ୱ ସହିତ କୌଣସି ସମ୍ପର୍କ ନ ଥିଲା । ଫଳରେ ନକ୍ସଲ ବିପ୍ଳବ ମଧ୍ୟ ଦୀର୍ଘସ୍ଥାୟୀ ଓ ସମ୍ପୂର୍ଣ୍ଣ ବିପ୍ଳବ ସୃଷ୍ଟି କରିବାରେ କ୍ଷମ ହୋଇପାରିଲା ନାହିଁ । ମୂଳ ମାର୍କସଙ୍କ ନୀତି ସହିତ ସଶସ୍ତ୍ର ବିପ୍ଳବର ସାମଞ୍ଜସ୍ୟ ନାହିଁ । ସବୁ କମ୍ୟୁନିଷ୍ଟ ସଙ୍ଗଠନ ଗୁଡିକର କ୍ଷମତା ୧୯୬୪ ବେଳକୁ ସଙ୍କୁଚିତ ହୋଇଗଲା । ରାଜନୀତି ଭିତରେ କେବଳ ଗୋଷ୍ଠୀକୁ ବଞ୍ଚେଇବା ନାଆଁରେ ଆସ୍ଥାନ ଜମେଇ ରହିଲେ । ତେଣୁ ସ୍ୱାଧୀନତା ପରେ ପରେ କବିତାରେ ଏହାର ରୂପ ଦେଖିବାକୁ ମିଳେ ନାହିଁ । ସେତେବେଳେ ନକ୍ସଲ ଆନ୍ଦୋଳନ ଆନ୍ଧ୍ରପ୍ରଦେଶ ଓ ପଶ୍ଚିମ ବଙ୍ଗରେ ତୀବ୍ର ଆକାର ଧାରଣ କରିଥିଲା । ପ୍ରାୟ ୧୯୬୭-୬୮ ବେଳକୁ ଏହାର ପ୍ରଭାବ ଓଡିଶାରେ ଦେଖିବାକୁ ମିଳିଲା । ନାଗଭୂଷଣ ପଟ୍ଟନାୟକ,

ରବିଦାସ, ଗଣନାଥ ପାତ୍ର ଓ ଭୁବନ ମୋହନ ପଟ୍ଟନାୟକ ପ୍ରମୁଖଙ୍କ ନେତୃତ୍ୱରେ ଏହି ନକ୍ସଲଗୋଷ୍ଠୀ ଓଡିଶାରେ କାର୍ଯ୍ୟ କରୁଥିଲା ।

ଏହି ସମୟରେ ଯେଉଁମାନେ ଏହାର ନେତୃତ୍ୱ ନେଉଥିଲେ ଓ ଯେଉଁମାନେ ଏହାଦ୍ୱାରା ଅନୁପ୍ରାଣିତ ହେଉଥିଲେ, ସେମାନେ ପ୍ରକୃତ ବିପ୍ଳବର କଥା ବୁଝିଥିଲେ ମଧ୍ୟ ଉପାୟଶୂନ୍ୟ ହୋଇ ଏହି ଦର୍ଶନଠାରୁ ଦୂରେଇଗଲେ । ଅନ୍ୟ କେତେକ ଏହି ଗୋଷ୍ଠୀ ସଂସ୍ପର୍ଶରେ ଆସି ବିପ୍ଳବୀ ସାମ୍ୟବାଦୀ ସାହିତ୍ୟ ସୃଷ୍ଟିରେ ମନୋନିବେଶ କଲେ । ସେମାନଙ୍କ ମଧ୍ୟରୁ କବି ପ୍ରସନ୍ନ ପାଟଶାଣୀ ଥିଲେ ଅନ୍ୟତମ ।

ମାର୍କସ ଓ ଲେନିନ ଚେତନାରେ ପ୍ରଭାବିତ ସମାଜ ବିପ୍ଳବର ଆହ୍ୱାନ କବିଙ୍କ ପ୍ରାଣକୁ ଆନ୍ଦୋଳିତ କରିଛି । ଯଦ୍ୱାରା ବିପ୍ଳବର ବାସ୍ତବତା ଏ ଦେଶରେ କିଛି ନ ଥିଲେ ମଧ୍ୟ ସେ ବିପ୍ଳବକୁ ଠିକ୍ ହୃଦୟଙ୍ଗମ କରିଥିଲେ । ଏତେ ସବୁ ଦୁର୍ବଳ କମ୍ୟୁନିଷ୍ଟ ଚିନ୍ତାଧାରା ସାହିତ୍ୟକୁ ମଧ୍ୟ ସମ୍ପଦ ଦୃଷ୍ଟିରୁ ଦୁର୍ବଳ କରିଦେଲା । ମାତ୍ର ହାତଗଣତି ଯେଉଁ କେତେଜଣ ଏହି ଧାରାର କବି ସେମାନେ ପ୍ରାକ୍ ସ୍ୱାଧୀନତା କାଳର । କିନ୍ତୁ ସ୍ୱାଧୀନତା ପରେ ସତୁରୀ ପର୍ଯ୍ୟନ୍ତ ରବି ସିଂ କୁ ଛାଡିଦେଲେ 'ବେଳା' ଜନ୍ମ ଦେଇଥିବା କବିମାନେ ହେଉଛନ୍ତି ପ୍ରଧାନ । କବିତାରେ ଏମାନେ ଫାସିବାଦର ବିରୋଧ କରିଛନ୍ତି । ସାଧାରଣର ସୁଖ ପାଇଁ ବିପ୍ଳବକୁ ଆହ୍ୱାନ କରିଛନ୍ତି ।

ଦ୍ୱିତୀୟ ବିଶ୍ୱଯୁଦ୍ଧ ପରେ ଫାସିବାଦର ମୃତ୍ୟୁ ହେଲା ବୋଲି ଯେଉଁ ଧାରଣା ଥିଲା, ତାହା ଭୁଲ । ''The defeat of the axis Powers has not liquidated fascism. Fascist powers are dead but fascism still survives today; rooted deep in the character of capitalism itself.

( Mukherjee Nihar - Fascist Menance, Page-4)

ଇତିହାସର ଏଇ ପୁନରାବୃତ୍ତି ଫଳରେ ସାରାବିଶ୍ୱର କମ୍ୟୁନିଷ୍ଟମାନେ ନିଜର ସଙ୍ଗଠନ ଗୁଡିକୁ ଅଧିକ ବଳିଷ୍ଠ କରିବାରେ ଲାଗିଲେ । ମାତ୍ର ସମାଜ ରାଜନୈତିକ ପୃଷ୍ଠଭୂମିରୁ ଫାସିବାଦକୁ ହଟେଇବାର ଶକ୍ତି ପାଇଲେ ନାହିଁ । ବିଭିନ୍ନ ରାଜନୈତିକ ସଙ୍ଗଠନ ଓ ପୁଞ୍ଜିପତିମାନଙ୍କର ଅର୍ଥନୀତିକୁ ନିୟନ୍ତ୍ରଣ କରି ଫାସିବାଦର ସୁରକ୍ଷା କରିବା ନିହାତି ଅସଂଗତ ଥିଲା । ଫାସିଷ୍ଟମାନେ ଯେତେବେଶୀ ଶକ୍ତିଶାଳୀ ହୋଇଛନ୍ତି, ବିପ୍ଳବ ସେତେ ଅବଦମିତ ହୋଇଛି ।

ତେଣୁ ଗଣତନ୍ତ୍ରର ବ୍ୟାପକ ପରିସର ଭିତରେ ସାଧାରଣ ଜନତାର ଆଶା, ପ୍ରତ୍ୟୟ ସବୁକିଛି ଅସଫଳ ରହିଗଲା । ସାହିତ୍ୟ ମଧ୍ୟ ଦୁର୍ବଳ ହେଲା । ପ୍ରାକ୍ ସ୍ୱାଧୀନତା କାଳରେ ଯେଉଁ ବିପ୍ଳବୀ କବିତା ଥିଲା, ତାହା ଉତ୍ତର ସ୍ୱାଧୀନତାର ପ୍ରୟୋଗ ବାଦୀ କବିତାର ସୃଷ୍ଟି ବେଳକୁ ବଦଳି ସାରିଥିଲା । ୧୯୭୦ ମସିହା ପରେ ଯୁବକବିମାନେ ପୁଣି ଏ ଧାରାର ଅନୁବର୍ତ୍ତନ କଲେ । ମୂଳତଃ ଏମାନେ ବିପ୍ଳବୀ ଥିଲେ । ବହୁ ବିପ୍ଳବ ଚେତନାଶ୍ରୟୀ କବିତା ଏହି ସମୟରେ ରଚନା କରାଯାଇଛି । ଏହି ଧାରାର ପୁରୋଭାଗରେ କବି ପାଟଶାଣୀ ଓ ସଦାଶିବ ଦାସଙ୍କୁ ଦେଖିବାକୁ ମିଳେ । ମାର୍କସୀୟ ଦର୍ଶନ ଓ ଲେନିନ୍‌ଙ୍କ ବ୍ୟକ୍ତିତ୍ୱ ତଥା ଆଭିମୁଖ୍ୟ କବି ପାଟଶାଣୀଙ୍କୁ ବେଶୀ ଆକୃଷ୍ଟ କରିଛି । 'ଲେନିନ' ଦୀର୍ଘ କବିତା ଗ୍ରନ୍ଥରେ ଏହାର ସୂଚନା ଦିଆଯାଇଛି -

''ଲେନିନ୍ ତ ନୁହେଁ କେବେ ତ୍ୟକ୍ତ ଦୁର୍ଗମାଳା

ଲେନିନ ତ ନୁହେଁ କେବେ ଜରାଜୀର୍ଣ୍ଣ ଶିଳା

ଲେନିନ୍‌ର ଜନ୍ମ ଏଠି ଭାଙ୍ଗିବାକୁ ପୁଞ୍ଜି ସୌଧମାଳା

ମୋଡିବାକୁ ଶୋଷଣର ଗଳା ।''

(ପାଟଶାଣୀ ପ୍ରସନ୍ନ- ଲେନିନ୍ । ପୃଷ୍ଠା-୭)

ଲେନିନ୍‌ଙ୍କ ବୈପ୍ଲବିକ ଆଭିମୁଖ୍ୟ ତଳେ ବାସ୍ତବରେ ଲୁଚି ରହିଥିଲା ବିପ୍ଳବର ନିଆଁ । କବି ଲେନିନ୍‌ଙ୍କୁ ଏକ ସନାତନ ବିପ୍ଳବୀ ଚେତନା ଭାବେ ଗ୍ରହଣ କରିଛନ୍ତି । ସାଧାରଣ ଚେତନାରେ ଲେନିନ୍‌ଙ୍କୁ ମିଶାଇଦେଇ ନିଜେ ତା'ଭିତରେ ପ୍ରବେଶ କରିଛନ୍ତି । ଜରୁରୀ କାଳୀନ ପରିସ୍ଥିତି ଓ ନକ୍ସଲ ଜୀବନର ଅଭିଜ୍ଞତା ଏବଂ ଅଜ୍ଞାତବାସରେ ଥିବା ସମୟର ସଶସ୍ତ୍ର ବିପ୍ଳବ କବି ଆତ୍ମସ୍ଥ କରିଛନ୍ତି । ବିପ୍ଳବର ଏକ ଲୋହିତ ଅଗ୍ନି ପିଣ୍ଡ ପରି କବି ଛିଟିକି ପଡିଛନ୍ତି । ଜନସାଧାରଣଙ୍କ ସୁଖଦୁଃଖ ସହ ଛନ୍ଦି ହୋଇଯାଇଛନ୍ତି । ଏପରି ମାନସିକତାର କବି ନାରୀର ଲୁହ, ପ୍ରେମ ଓ ପ୍ରଣୟ ସମୂହ ଭିତରେ ବିପ୍ଳବକୁ ଖୋଜିଛନ୍ତି । ପ୍ରକୃତିର ଅନନ୍ତ କୋଳରେ ବିପ୍ଳବର ପ୍ରେରଣା ପାଇଛନ୍ତି ।

କାବ୍ୟ ସାଧନାର ପ୍ରଥମରୁ ସେ ଏକ ଉଦ୍ଦେଶ୍ୟ ରଖି କବିତା ରଚନା କରିଛନ୍ତି । ରୋମାଣ୍ଟିକ୍ ଭାବବିଳାସ ମଧ୍ୟରେ ସେ କେବେ ବିପ୍ଳବକୁ ଅବହେଳା କରିନାହାନ୍ତି । ସେ କେବଳ ପ୍ରକୃତିର ଅଭିବ୍ୟକ୍ତିରେ ବିମୋହିତ ନୁହଁନ୍ତି, ଶାସନ, ଶୋଷକର ଅତ୍ୟାଚାରରେ ରକ୍ତାକ୍ତ ମଧ୍ୟ ହୋଇଛନ୍ତି । କବିତାରେ ସେ ଯେମିତି ବିପ୍ଳବୀ, ବାସ୍ତବ ଜୀବନରେ ମଧ୍ୟ ସେତିକି ସଂଗ୍ରାମଶୀଳ । ଲକ୍ଷ ଲକ୍ଷ ନିରନ୍ନ ମଣିଷର ଅନ୍ତର ତଳର କ୍ଷୁଧା ସେ ଅନୁଭବ କରିଛନ୍ତି । ତଥାକଥିତ ସରକାର, ବୁର୍ଜୁଆମାନଙ୍କୁ ବିରୋଧ କରି ବିପ୍ଲପକୁ ସାଧାରଣ ସ୍ତରରେ ପହଞ୍ଚାଇବା ଚେଷ୍ଟା କବିତାରେ କରିଛନ୍ତି । ତାଙ୍କର ବିପ୍ଳବ କେତେବେଳେ ମହତ୍ତର ମାନବବାଦ ସହିତ ପ୍ରକଟିତ ହୋଇଛି । ପୁଣି କେତେବେଳେ ନିଜେ ଜଣେ ସଶସ୍ତ୍ର ବିପ୍ଳବୀ ଭାବେ ଓହ୍ଲାଇ ଆସିଛନ୍ତି । ଏହି ଧାରାରେ କବି ଅସଂଖ୍ୟ କବିତା ରଚନା କରିଛନ୍ତି । ପାଟଶାଣୀଙ୍କ କବିତା ପାଠ କଲେ ସତେ ଯେପରି କବିତା ଭିତରେ ଗୋଟିଏ ଜୀବନ୍ତ ମଣିଷର ବିପ୍ଳବୀ ଛବି ଠିଆ ହୋଇଯାଏ ।

ତାଙ୍କ କବିତାରେ ସମାଜବାଦ ଏକ ପରମ୍ପରା ହୋଇ ଦେଖାଦେଇଛି । ଏ ସମାଜବାଦ ଗରୀବ, ସର୍ବହରାଙ୍କ ପାଇଁ ଉଦ୍ଦିଷ୍ଟ । ନିଜର ଧର୍ମ, ସମାଜବାଦ ଓ ବିପ୍ଳବକୁ କେବେ ସେ ଅଲଗାଅଲଗା ଦେଖିନାହାନ୍ତି । ଧର୍ମ, ସମାଜବାଦ, ବିପ୍ଳବ - ଏହି ତିନୋଟି ମଧ୍ୟରେ ପାର୍ଥକ୍ୟ ଥିଲେ ବି ଅନ୍ତର୍ନିହିତ ଉଦ୍ଦେଶ୍ୟରେ ଏସବୁ ସମାନ । ସବୁବେଳେ ସେ ଗଭୀର ନୀରବତା ଭିତରୁ ବିଦ୍ରୋହକୁ ଖୋଜିଛନ୍ତି । ସମାଜ ଓ ପ୍ରକୃତିକୁ ନେଇ ଦେଖାଦେଇଥିବା କବି ପ୍ରାଣର ଦ୍ୱନ୍ଦ୍ୱ ତାଙ୍କୁ ବିପ୍ଳବୀ କରିଛି ।

''ମୁଁ ଏକ ଜଳନ୍ତା

ପରବତ ଚୂଲିଝିଙ୍କା

ବାରୁଦ ଧୂଳି ଧଉଳା

ରାତ୍ରିର ଆଟିକା

ମୋ ଗୁହାରେ ଫୁଟନ୍ତା

ଅଗ୍ନିର କଣିକା ।''

( ପାଢଶାଣୀ ପ୍ରସନ୍ନ- ଅଗ୍ନିଯୁଗ । ପୃଷ୍ଠା-୭୧ ।)

ଲେନିନ୍ (୧୯୭୬)ଠାରୁ ଆରମ୍ଭ କରି କବି ଯେତେଯେତେ ଆଗକୁ ଯାଇଛନ୍ତି, ଏହି ବିପ୍ଳବୀ ଆଭିମୁଖ୍ୟଟି ସେତେ ବଳିଷ୍ଠ ହୋଇଛି । ସତୁରୀ ପରବର୍ତ୍ତୀ ପ୍ରାୟ ଅଧିକାଂଶ କବିତାରେ କବି ଏହି ରୂପରେ ପାଠକମାନଙ୍କ ଆଗରେ ଠିଆ ହୋଇଛନ୍ତି । ବିପ୍ଳବୀ ପ୍ରତି କେବେ ସେ ଆଶାହତ ହୋଇନାହାନ୍ତି । ବିପ୍ଳବର ଶେଷ ନାହିଁ । ଓଡ଼ିଆ

କବିତାରେ ଏମିତି ଏକ ପ୍ରତ୍ୟୟ ଧରି ପାଢଶାଣୀଙ୍କ ଅଭ୍ୟୁଦୟ ଘଟିଛି । ଯାହା 'ବାଘ ଆଁ ଭିତରେ ପିକନିକ୍' (୧୯୭୬), 'ଅଗ୍ନିଯୁଗ' (୧୯୮୮), 'ରକ୍ତପଥ' (୧୯୮୨) ଆଦି କବିତା ପୁସ୍ତକରେ ତାଙ୍କୁ ଜଣେ ଉଦ୍ଦାମ ଅଥଚ ସଂଗ୍ରାମୀ ପୁରୁଷ ଭାବେ ଦେଖିବାକୁ ମିଳିବ । ବିପ୍ଳବର ଲେଲିହାନ ଶିଖା ଭିତରୁ ସେ ନିଜ ପ୍ରାଣର କଥା ଶୁଣାଇଛନ୍ତି ।

ମଣିଷର ସୁଖ, ଦୁଃଖ, ଆଶା ହତାଶା ଆଦିକୁ ନିଜର ବୋଲି ଗ୍ରହଣ କରିଛନ୍ତି । ଆମ ଦେଶରେ ବିପ୍ଳବ ଏକ ସଙ୍କଟମୟ ପରିସ୍ଥିତିର ସମ୍ମୁଖୀନ ହୋଇ ରହିଯାଇଛି । ବୁର୍ଜୁଆ ମନୋଭାବର ଲେଖକମାନେ ପ୍ରଥମେ ମଣିଷର ସୁଖଦୁଃଖ କଥା କହି ଝଡ ସୃଷ୍ଟି କରନ୍ତି । ନିର୍ଦ୍ଦିଷ୍ଟ ସମୟରେ ସେମାନେ ପରିବର୍ତ୍ତିତ ହୋଇଯାଆନ୍ତି । ମାତ୍ର କବି ପାଢଶାଣୀ ସେ ଦୃଷ୍ଟିରୁ ସ୍ୱତନ୍ତ୍ର । ସାମ୍ୟବାଦ ହିଁ ତାଙ୍କର ମୌଳିକ ଆଦର୍ଶ । ଏପରିକି ତାଙ୍କର 'ବର୍ଷା' ପରି ରୋମାଣ୍ଟିକ କବିତାରେ ମଧ୍ୟ ବର୍ଷା ଆସିଛି ବିପ୍ଳବ ରୂପରେ ମାନବ ବାଦୀତାର ରଥ ଘେନି ।

ତାଙ୍କ କବି ଚେତନାରେ ଏହି ଚିନ୍ତାଧାରା ଏମିତି ଏକ ଆସନ ବାନ୍ଧି ରହିଛି, ଯାହା ଫଳରେ କି ଆତ୍ମିକଭାବେ ନିମ୍ନସ୍ତରରେ ଥିବା ମଣିଷମାନଙ୍କ ସହ କବି ସହଜରେ ମିଶିପାରିଛନ୍ତି । ବୈପ୍ଳବିକ ସାହିତ୍ୟ ବିକାଶର ସମ୍ଭାବନା ଉପରେ ତାଙ୍କର ଗଭୀର ଆଶା ଓ ବିଶ୍ୱାସ ରହିଛି । କବି ଏକ ବୃହତ୍ତର ଗଣବିପ୍ଳବ ପ୍ରତି ଆଶା ବାଦୀ, କବିଙ୍କର ଏ'ପ୍ରକାର ଅଗ୍ନିମୟ ଚିନ୍ତାଧାରା କଳାର ମର୍ଯ୍ୟାଦାକୁ ଧରି ରଖିଛି । କାବ୍ୟିକ ସତ୍ୟର ବର୍ଣ୍ଣନା ବେଳେବେଳେ ବ୍ୟାବହାରିକ ଜୀବନ ସହ ସାମଞ୍ଜସ୍ୟ ରଖେ ନାହିଁ । କିନ୍ତୁ କବି ସବୁବେଳେ ତାଙ୍କ ଜୀବନ ସହ ଚେତନାକୁ ଗତି କରାଇବା ସହ ବୁର୍ଜୁଆ ଜୀବନ ପ୍ରତି ସଚେତନ ରହିଛନ୍ତି । ବିପ୍ଳବର ଅସଂଖ୍ୟ ଶିଖାମଧ୍ୟରେ ସେ ନିଜେ ଏକ ଶିଖା ହୋଇ ଜଳିଛନ୍ତି । ନିଜର ଆବେଗକୁ ସାଧାରଣ ଜନତାର ଜୀବନ ସହ ମିଶାଇ ଦେଇଛନ୍ତି । ଫଳରେ ତାଙ୍କ କବିପ୍ରାଣ ଜନତାର ଅସ୍ଥିରତା ଦେଖି ବିଦ୍ରୋହ କରି ଉଠିଛି । ତାଙ୍କ କବିତାରେ ଜୀବନ ଆବେଗ ସହିତ କାବ୍ୟିକ ଆବେଗ ମିଶି ସବୁବେଳେ ଏକ ବିପ୍ଳବକୁ ସୃଷ୍ଟି କରିଛି ।

ସମାଜ ସଚେତନାତାହିଁ ବିପ୍ଳବର ପୃଷ୍ଠଭୂମି ତିଆରି କରେ । ପରିବର୍ତ୍ତନ ବା ଗତିଶୀଳତ ବିପ୍ଳବର ବାସ୍ତବ ଆଭିମୁଖ୍ୟ । ଓଡ଼ିଆ କବିତାରେ ଯେଉଁ ସମୟରେ ଏହି ସ୍ୱର ଦୁର୍ବଳ ହୋଇପଡ଼ିଛି ସେହି ସମୟରେ କବି ପାଢଶାଣୀ ତାଙ୍କ କବିତାରେ ଏହାକୁ ବାରମ୍ବାର ଘୋଷଣା କରି ପରିପୁ

କରିଛନ୍ତି । ଏକ ନିର୍ଦ୍ଦିଷ୍ଟ ଉଦ୍ଦେଶ୍ୟ ତାଙ୍କ କବିତାକୁ ନିୟନ୍ତ୍ରଣ କରୁଥିବାରୁ ସାମାଜିକ ସଚେତନତା ବେଶୀ ସ୍ପଷ୍ଟ ହୋଇଛି ।

ପ୍ରାକ୍ ସତୁରୀ ଓଡିଆ କବିତାରେ ତାଙ୍କ ସାମ୍ୟବାଦୀ ଚିନ୍ତାର ଅନୁଭବ ଅତ୍ୟନ୍ତ ତୀବ୍ର । ମଣିଷର ମୁକ୍ତି ସ୍ୱପ୍ନରେ ସେ ବିଭୋର । ମଶାଣି ଭିତରେ ହାତ ପୁରାଇ ବାରମ୍ବାର ଆଉ ଏକ ଜୀବନ ସାଉଁଟିବାର ପ୍ରଚେଷ୍ଟା ତାଙ୍କର ଅବ୍ୟାହତ ରହିଛି । କେବେ କ୍ଷୁଧାର ନିଆଁରେ ପୁଞ୍ଜିବାଦୀ ସାମ୍ରାଜ୍ୟକୁ ନିଆଁ ଲଗାଉଛନ୍ତି ତ କେବେ ପୁଣି ଉଜୁଡି ଯାଉଥିବା ଜୀବନ ପ୍ରତି ସମ୍ବେଦନଶୀଳ ହୋଇ ଉଠିଛନ୍ତି । 'ଅଗ୍ନିଯୁଗ' କବିତା ସଂକଳନର ପ୍ରାୟ ସମସ୍ତ କବିତା ବିପ୍ଲବର ଅଖଣ୍ଡ ଅଗ୍ନିରେ ଜ୍ୱଳମାନ । ଗଣବିପ୍ଳବରେ ବିଶ୍ୱାସୀ କବି ସବୁ କବିତାରେ ସାମ୍ୟବାଦର କଥା ହିଁ କହିଛନ୍ତି ।

କବିଚେତନା ଏକ ସାମାଜିକ ପରିବର୍ତ୍ତନକୁ ବହୁ ପାଖରେ ଅନୁଭବ କରିଛି । ଜୀବନର ବିଭିନ୍ନ ସମସ୍ୟା ଦୁଃଖ, ଯନ୍ତ୍ରଣା ତାଙ୍କୁ ଯେତେ ମାତ୍ରାରେ ବିପ୍ଲବୀ କରିଛି, ସେତିକି ମଧ୍ୟ ସମ୍ବେଦନଶୀଳ କରିଛି । ମାଟିରେ ସେ ଦେଖିଛନ୍ତି ସଂଗ୍ରାମର ଛବି । ନିଜେ ଉତ୍ସର୍ଗୀକୃତ ଏହି ସଂଗ୍ରାମ ପାଇଁ, ନିଜର ଦେହ, ମନ, ଆତ୍ମା ସବୁ ସମର୍ପିତ ମଣିଷର ସୁଖଦୁଃଖ ପାଇଁ । ଏହି ପର୍ଯ୍ୟାୟର ପ୍ରାୟ ସମସ୍ତ ରଚନାରେ କବିପ୍ରାଣର ମାର୍କସୀୟ ଚିନ୍ତାଧାରା ପ୍ରକାଶିତ । 'ବାଘ ଆଁ ଭିତରେ ପିକନିକ୍', 'ସାପ ଗାତରେ ସକାଳ' ଆଦି କବିତାରେ ପ୍ରଜ୍ଞା ଭିତ୍ତିକ ନାମକରଣ, ଶକ୍ତିଶାଳୀ ଇମେଜ୍ ଓ ସିମ୍ବଲ ମାଧ୍ୟମରେ କବିତାର ଭାବବସ୍ତୁକୁ ସହଜ ଭଙ୍ଗୀରେ ପ୍ରକାଶ କରିଛନ୍ତି । ବଞ୍ଚିବାର ସବୁ ଅବାସ୍ତବ ଇଚ୍ଛାମାନଙ୍କ ବିରୋଧରେ, ଏକ ନୈରାଶ୍ୟ ଜଡିତ କୃତ୍ରିମ ଜୀବନ ବିରୋଧରେ ଏହି କବିତା ଏକ ସାଲିସ୍ ବିହୀନ ବିଦ୍ରୋହ । ଦଳିତ ମଣିଷର ମୁକ୍ତି - ସ୍ୱପ୍ନ କବିତାକୁ ଆବୋରି ଧରିଛି ।

> ''ଉତ୍ତୀର୍ଣ୍ଣ ଉଷାର ପଣତ ଟେକି ସୂର୍ଯ୍ୟର ପ୍ରବେଶ
>
> ଉଠ ଉଠ ରାଜଧାନୀର ସକଳ ମଣିଷ
>
> ଛାଇର ଥାଳିରେ ଖରା ଭିକ ଭଳି
>
> ଚୂର୍ଣ୍ଣ ହୋଇଯାଏ
>
> ଭିକାରୀର ଭିକ ହୁଏ ଅଳସ ହାଇର ଧୂଆଁ
>
> ରାହା ଟେକି ଆକାଶରେ ମିଶେ ।''
>
> ( ପାଢଶାଣୀ ପ୍ରସନ୍ନ- ବାଘ ଆଁ ଭିତରେ ପିକନିକ୍ । ପୃଷ୍ଠା-୮୯ )

କାବ୍ୟ ସାଧନାର ପ୍ରଥମରୁ ମାର୍କସ ଓ ଲେନିନ୍‌ଙ୍କ ଦ୍ୱାରା ପ୍ରଭାବିତ ହୋଇ ସେ କିଛି କବିତା ରଚନା କରିଛନ୍ତି । ଯେତେବେଳେ କମ୍ୟୁନିଷ୍ଟ ସଙ୍ଗଠନ ଗୁଡିକ ଦୁର୍ବଳ ହୋଇଗଲା, ସେତେବେଳେ ଗଣ ବିପ୍ଲବର ସ୍ୱପ୍ନ ବିଫଳ ହେଲା । ତେଣୁ ନକ୍ସଲ୍ ନାମରେ ସଶସ୍ତ୍ର ବିପ୍ଲବର ଆୟୋଜନ ହେଲା । ନକ୍ସଲ ଆନ୍ଦୋଳନର ଜଣେ ସଶସ୍ତ୍ର ବିପ୍ଲବୀଭାବେ ନିଜର ନିଛକ ଅନୁଭୂତିକୁ ଦକ୍ଷତାର ସହିତ ରୂପ ଦେଇଛନ୍ତି କବି । ନିଜ ଚେତନା ସମ୍ବଳିତ ଏକ ଯୁଗ ସହିତ ମରି ଆସୁଥିବା ବିପ୍ଲବର ସ୍ୱରକୁ ସାହିତ୍ୟରେ ଜୀବନ୍ୟାସ ଦେବାରେ ସେ ପ୍ରଧାନ । ଅବଧୂତ ଗୋଷ୍ଠୀର କିଛି କବି ନିଜ ଚେତନାକୁ ବିକେନ୍ଦ୍ରୀକରଣ

କରି ଏହି ଧାରାକୁ ପରିପୁଷ୍ଟ କରିଥିଲେ । ଅବକ୍ଷୟୀ ଧାରାରେ ପୂର୍ଣ୍ଣଚ୍ଛେଦ ଟାଣି କବିତାକୁ ଗଣବୋଧ୍ୟ କରାଇବାରେ ପାଟଣାଶୀଙ୍କ ପ୍ରଚେଷ୍ଟା ଯଥେଷ୍ଟ ଅଛି । ସାଧାରଣର ଦୁଃଖହିଁ କବିର ଦୁଃଖ । ଅନୁଭବ ସ୍ତରରେ ନିହିତ ସାଧାରଣ ସତ୍ୟଟିଏ ଚିରନ୍ତନ ସତ୍ୟ ପାଲଟିଯାଇଛି । ଜୀବନ ସତ୍ୟର ନିଛକ ପ୍ରକାଶହିଁ ତାଙ୍କ କବିତା । କବିତାର ନାନ୍ଦନିକ ମୂଲ୍ୟବୋଧ ଓ ସରଳତାକୁ ନଷ୍ଟ ନ କରି ବାସ୍ତବତାକୁ ପ୍ରକାଶ କରିବା କଷ୍ଟ । ଏଥିପାଇଁ କବି ଦକ୍ଷତାର ସହିତ ପ୍ରଯତ୍ନ କରିଛନ୍ତି । କବି ଅତିମାତ୍ରାରେ ଆଧୁନିକ ହେଲେ ମଧ୍ୟ ପରମ୍ପରାର ମୋହରେ ମୋହମୟ ଅଥଚ ଆଧୁନିକ ଦୃଷ୍ଟି କୋଣର ସାଙ୍ଗଠନିକ ସ୍ଥିତି ପ୍ରତି ଯତ୍ନଶୀଳ । ତାଙ୍କର କାବ୍ୟ ବକ୍ତବ୍ୟ ସତସତ ଲାଗେ । ଓଡିଆ କବିତାରେ ବହୁ କବି ବିପ୍ଲବୀ ସାହିତ୍ୟ ରଚନା କରିଛନ୍ତି । କିନ୍ତୁ କବି ହେଉଛନ୍ତି ସ୍ୱତନ୍ତ୍ର, କାରଣ ସେ ପ୍ରଥମେ ବିପ୍ଲବୀ ଓ ପରେ କବି । ଗୋଟିଏ ବିପ୍ଳବ ପାଇଁ ଯାହା ଖୋରାକ ଯୋଗାଇବ, ବୈପ୍ଳବିକ ଆଭିମୁଖ୍ୟକୁ ନେଇ ଓଡିଶାରେ ସାହିତ୍ୟ ସେପରି ବଳିଷ୍ଠ ଭୂମିକା ନେଇନାହିଁ । ତେଣୁ ସ୍ୱାଧୀନତାର ବହୁ ବର୍ଷପରେ ପାଟଣାଶୀ ଓ ତାଙ୍କ ଗୋଷ୍ଠୀ ବୈପ୍ଳବିକ ସାହିତ୍ୟ ରଚନା ଉପରେ ଆସ୍ଥାବାନ୍ ହେବା ସ୍ୱାଭାବିକ୍ କଥା । ତୀବ୍ର ଅଭାବ ଭିତରେ ଯେଉଁ ଧାରାର ଜୀବନ୍ୟାସ ଦିଆଗଲା, ତାହାହିଁ ଗୁରୁତ୍ୱପୂର୍ଣ୍ଣ କଥା ।

ମାର୍କସବାଦର ଅସାଧାରଣ ଶିଳ୍ପୀ କବି ପାଟଣାଶୀ ସବୁଠି ଶ୍ରେଣୀ ସଂଘର୍ଷର କଥା କହିଛନ୍ତି । ବୁର୍ଜୁଆ ପ୍ରଭାବିତ ଭାରତୀୟ ତଥା ଓଡିଶୀ ଜୀବନ କବିଙ୍କୁ ଆନ୍ଦୋଳିତ କରିଛି । ମୂଳରୁ କୁହାଯାଇଛି ସେ ପ୍ରତିକ୍ରିୟାଶୀଳ ନୁହଁନ୍ତି । ଯୌବନରେ ବିପ୍ଳବୀଭାବେ ତାଙ୍କଠି ଯେଉଁ ଉଦ୍ଦାମତା ଲକ୍ଷ୍ୟ କରାଯାଏ, ସେହିପରି ମଧ୍ୟ କାବ୍ୟଚେତନା ଋଦ୍ଧିମନ୍ତ ହୋଇଛି ସ୍ଥିତପ୍ରଜ୍ଞତାରେ । କବି କବିତାରେ ଯେଉଁଠି ବିପ୍ଳବର କଥା କହିଛନ୍ତି ସେଇଠି ଆଶାବାଦ କବିତାର ବାର୍ତ୍ତା ହୋଇ ପ୍ରକାଶ ପାଇଛି । ସାଧାରଣ ଜନତାର କ୍ଷୁଧା ଆଗରେ ବୁର୍ଜୁଆର ବିଳାସ ହାର ମାନିବ । ମଣିଷ ପୁଣି ତା'ର ଦାବୀ ଓ ଅଧିକାରକୁ ଉପସ୍ଥାପନ କରିବ । ସେଦିନ ହବ ମଣିଷର ବିଜୟ । ସେଦିନ ହେବ ଜୀବନର ଜୟ । ଏକ ସୁନ୍ଦର ଚିତ୍ର କଳ୍ପ ମାଧ୍ୟମରେ କବି ଏହି ଶ୍ରେଣୀ ସଂଘର୍ଷର କଥା ପ୍ରକାଶ କରିଛନ୍ତି ।

''ସକାଳର କୃଷକ ଦେଖିଲା
ସମୁଦ୍ରରେ ଉଠିଛି ତରଙ୍ଗ
ମାଛମାନେ ପାଳୁଥିଲେ
ବିଜୟର ପର୍ବ
ଜାଲକାଟି ମାଛସତେ
ବୁଡାଇଛି ବଣିକର ମଙ୍ଗ ।''
(ପାଟଣାଶୀ ପ୍ରସନ୍ନ- ଅଗ୍ନିଯୁଗ । ପୃଷ୍ଠା-୧୦)

ବହିଦୃଷ୍ଟିରେ ଯାହାକୁ ଦେଖି ଦେଖି ମଣିଷ ସତ୍ୟ ବୋଲି ବିଶ୍ୱାସ କରି ଆସିଛି, ତାହା ସତ୍ୟ ନୁହେଁ । ଆପେକ୍ଷିକ ସତ୍ୟର ବାହାରେ ଆଉ ଏକ ଚିରନ୍ତନ ସତ୍ୟ ରହିଛି । ମଣିଷର ଇଚ୍ଛା ଅନିଚ୍ଛାର କଥା ସେଠି ଉଠେ ନାହିଁ । ଏହି ସତ୍ୟକୁ ଦେଖେଇବା ପାଇଁ କବି ପାଟଣାଶୀ ତାଙ୍କ କବିତାରେ ସତତ ପ୍ରୟାସ କରିଛନ୍ତି । ସେ ପ୍ରକୃତିର ଅନିର୍ବଚନୀୟତାରେ ଆଧ୍ୟାତ୍ମିକ ଆନନ୍ଦରେ ଯେତେ ବିମୋହିତ

ସେତିକି ମଧ୍ୟ ସେ ବିପ୍ଳବ ମୁଖର । ତାଙ୍କ କବିତା କେବଳ ବିଦ୍ରୋହର ସ୍ଲୋଗାନ ନୁହେଁ । ସେଥିରେ ଏକ ନିବିଡ ଜୀବନ ବୋଧ ରହିଛି । ଜରୁରୀକାଳୀନ

ପରିସ୍ଥିତି ଜନିତ ମଣିଷର ଦୁଃଖରେ ଅସ୍ଥିର ପ୍ରତିକ୍ରିୟା ହେଉଛି -'ବାଘ ଆଁ ଭିତରେ ପିକନିକ୍' । ଏଠାରେ କବି ଅନ୍ୟାୟ ବିରୋଧରେ ସଶସ୍ତ୍ର ବିପ୍ଳବ ଉପରେ ବେଶୀ ଆସ୍ଥାବାନ ହେଲେ ମଧ୍ୟ ପରବର୍ତ୍ତୀ ସମୟରେ ସାଧାରଣ ମଣିଷର ଚେତନା ସ୍ତରରେ ବିପ୍ଳବ ସୃଷ୍ଟି କରିବା ଉପରେ ଅଧିକ ଜୋର୍ ଦେଉଛନ୍ତି ।

ଏଥିପାଇଁ କବିଙ୍କ ଉପରୁ ନକ୍ସଲ ଆନ୍ଦୋଳନର ପ୍ରଭାବକୁ ଏଡେଇ ଦିଆଯାଇ ନ ପାରେ । ସଶସ୍ତ୍ର ବିପ୍ଳବର ସ୍ୱପ୍ନରେ କବିତାକୁ ରକ୍ତମୁଖୀ କରିଛନ୍ତି କବି । ଜୀବନ ଆବେଗର ବୌଦ୍ଧିକ ଉପସ୍ଥାପନା ଅପେକ୍ଷା ପ୍ରାଞ୍ଜଳ ଉପସ୍ଥାପନା ଦ୍ୱାରା କବିତାରେ ପରିବେଷିତ ତଥ୍ୟକୁ ସାଧାରଣ ଜନତାଙ୍କ ନିକଟରେ ପହଞ୍ଚାଇ ସଚେତନତା ସୃଷ୍ଟି କରିବା ଥିଲା ତାଙ୍କର ଉଦ୍ଦେଶ୍ୟ । କବି ପ୍ରକୃତି ଓ ମଣିଷ ସହିତ ଅନ୍ତରଙ୍ଗଭାବେ ମିଶିଛନ୍ତି । ତାଙ୍କୁ ପ୍ରକୃତି ଆଶୀର୍ବାଦରେ ଦେଇଛି ବିପ୍ଳବ । ଭୋକର କବିତା ସେ ରଚନା କରିଛନ୍ତି । ଯେଉଁଠି ବଞ୍ଚିବାର ଅହେତୁକ ନିଶାରେ ମଣିଷକୁ ଜୀବନହୀନ ନିଷ୍ପ୍ରାଣ କବିତା ଶୁଣାଇବା ଅପେକ୍ଷା, ନୂଆ ସକାଳର କଥା ଓ ନୂତନ ସୂର୍ଯ୍ୟର କଥା ସେ କହିଛନ୍ତି । ରାଜନୈତିକ ଜୀବନର ଅସ୍ଥିରତା ସତ୍ତ୍ୱେ ବି ଜୀବନ ପ୍ରତି ଏକ ପ୍ରତ୍ୟୟନିଷ୍ଠ ଦୃଷ୍ଟିଭଙ୍ଗୀ ତୋଳିଛନ୍ତି ।

ଭାରତୀୟ ରାଜନୀତିର ପୃଷ୍ଠଭୂମିରେ ଯେଉଁ ଅସଫଳତା କମ୍ୟୁନିଷ୍ଟମାନଙ୍କୁ ମିଳିଲା, ତାହା ନକ୍ସଲମାନଙ୍କୁ ଜନ୍ମ ଦେଲା । ନକ୍ସଲରେ ଯୋଗଦେଇ ଏକ ଅର୍ଥନୈତିକ ଗଣତନ୍ତ୍ରର ପ୍ରତିଷ୍ଠା ପାଇଁ ସେମାନେ ସ୍ୱପ୍ନ ଦେଖୁଥିଲେ । ଆନ୍ଧ୍ରରେ ମୁଣ୍ଡ ଟେକିଥିବା ଦିଗମ୍ବର ଗୋଷ୍ଠୀ ଓ ଓଡିଶାରେ ଅବଧୂତ ଗୋଷ୍ଠୀ ଏହି ତଥ୍ୟକୁ ଭିତ୍ତିକରି ଲେଖନୀ ଉଠାଇଛନ୍ତି । ବ୍ୟକ୍ତିବାଦ ନୁହେଁ, ସମାଜର ନିମ୍ନସ୍ତରର ମଣିଷମାନଙ୍କ ଭିତରେ ଜୀବନ ସଂଧାନ କରି କବି ଧାରାବାହିକ ସଚେତନ ମଧ୍ୟରେ ରହୁଥିଲେ । କବି ଚେତନାର ଜାଗରଣ ମଣିଷ ବା ଜୀବନଠାରୁ ବିଚ୍ଛିନ୍ନ ନୁହେଁ । ଛଳନା ହୀନ ଭାବେ ସେ ଯାହା କହିଛନ୍ତି ତାହାହିଁ ଜୀବନ ଓ ଜୀବନର ପ୍ରତ୍ୟୟ । ଏ ସମ୍ପର୍କରେ ସେ ନିଜେ ସ୍ୱୀକାର କରି କହିଛନ୍ତି - "ଯେଉଁ ଚେତନାର ବାହକ ଭାବରେ ନିଜକୁ ରକ୍ତାକ୍ତ କରିଛି, ସେଥିରୁ ମୋତେ ଏ ଯାବତ୍ କେହି ବିଚ୍ୟୁତ କରିପାରି ନାହିଁ , ଏତିକି ଆତ୍ମସନ୍ତୋଷ । ସାଧନାରେ ସିଦ୍ଧି ନ ହେଉ ପଛକେ, ପଥଚ୍ୟୁତ ନ ହେଉ ମୋର ଲେଖନୀ ।" ( ରାଉତ ଶ୍ରୀ ବଂଶୀଧର ,ସମ୍ପାଦକ- ମହଲ , ୧୨ଶବର୍ଷ, ୨ୟ ଖଣ୍ଡ, ପ୍ରସନ୍ନ ପାଟଶାଣୀଙ୍କ ସହ ସାକ୍ଷାତକାର । ପୃଷ୍ଠା-୧୨ )

'ଲେନିନ୍' କବିତାରେ ଦେଖା ଦେଇଥିବା ବିପ୍ଳବର ଆଦିଉତ୍ସ ଆହୁରି ରକ୍ତମୁଖ ହୋଇଛି 'ବାଘ ଆଁ ଭିତରେ ପିକ୍‌ନିକ୍' କବିତାରେ । କବି ଏଠାରେ ଏକ ଅଗ୍ନିମୟ ପିଣ୍ଡ ଭାବରେ ପ୍ରକାଶିତ ହୋଇଛନ୍ତି । ଥିଲା ବାଲା ଓ ନ ଥିଲାବାଲାଙ୍କୁ କେନ୍ଦ୍ରକରି , ବିଭକ୍ତ ସାମାଜିକ ଜୀବନକୁ ବିରୋଧ କରି , ସାହିତ୍ୟର ସାଧାରଣ ପାଠକମାନଙ୍କୁ ନଥିବା ବାଲାଙ୍କ ସାମାଜିକ ସ୍ଥିତି ଆଡକୁ ଆକର୍ଷିତ କରିବା ଥିଲା ତାଙ୍କ କବିତାର କାବ୍ୟିକ ଆହ୍ୱାନ । କବିଙ୍କର ପ୍ରାୟ ଅଧିକାଂଶ କବିତା ଏଇ ଜୀବନ ଦୃଷ୍ଟିରୁ ଜନ୍ମ ଜଣେ ନୂଆ ମଣିଷ, ଯିଏ ଦଳିତ ଜନସଂଘର ମୁକ୍ତିପାଇଁ ଅଣ୍ଟାଭିଡି ଠିଆ ହୋଇଛି ।

ସ୍ୱାଧୀନତା ପରେ ବ୍ରଜନାଥ ରଥ ଓ ରବି ସିଂଙ୍କୁ ବାଦ୍‌ଦେଲେ କବି ପ୍ରସନ୍ନ ପାଟ୍ଟଶାଣୀ ଏହି ସାମ୍ୟବାଦୀ କାବ୍ୟଧାରାର ଶକ୍ତିମାନ ବିଦ୍ରୋହୀ । ନିଜସ୍ୱ ମୌଳିକତାରେ ତାଙ୍କ କବିତା ଋଦ୍ଧିମନ୍ତ । କବି ଏକ ଗୋଷ୍ଠୀ ତିଆରି କରି ବୁର୍ଜୁଆ ବିରୋଧୀ ସାହିତ୍ୟ ସୃଷ୍ଟିରେ ବ୍ରତୀ ହୋଇଛନ୍ତି । କବି ଏ ସମୟରେ ସରକାରଙ୍କ ଦୃଷ୍ଟିରୁ ମୁକ୍ତ ରହିବା ପାଇଁ ''ଅଗ୍ନିଶର୍ମା'' ଛଦ୍ମ ନାମରେ କବିତା ଲେଖୁଥିବା ସେ ନିଜେ ଏକ ସାକ୍ଷାତ କାରରେ ପ୍ରକାଶ କରିଛନ୍ତି । ସତୁରୀ ପରେ ପରେ ସାମ୍ୟବାଦୀ କବିତା ଏହି ଗୋଷ୍ଠୀ ଦ୍ୱାରା ବଳିଷ୍ଠ ହୋଇଛି । ବେଳା, ଆଭା, ଜ୍ୱାଳା, ମୁକ୍ତି, ଜନତା ଆଦି ପତ୍ରିକା ମାନଙ୍କରେ ଏମାନେ ଧାରାବାହିକ ଭାବେ ବିପ୍ଳବୀ କବିତା ପ୍ରକାଶ କରୁଥିଲେ । ଆନ୍ଧ୍ରର ଦିଗମ୍ବର ଗୋଷ୍ଠୀ ଏହି ଧାରାର କବିମାନଙ୍କ ସମ୍ପର୍କରେ ଯାହା କହିଛନ୍ତି ତାହା ଏଠାରେ ଉଲ୍ଲେଖନୀୟ - "Todays writers and poets with a greater social awareness not only reflect in their writings the socio - political problems of the day, but they also actively participate in people strugles for a better world." (ପାଟ୍ଟଶାଣୀ ପ୍ରସନ୍ନ - ''ମୋ ଦୃଷ୍ଟିରେ ସାମ୍ପ୍ରତିକ ସାହିତ୍ୟ, (ମୋ ଦୃଷ୍ଟିରେ ସାମ୍ପ୍ରତିକ ସାହିତ୍ୟରେ ଗୋଷ୍ଠୀ ବିଚାର)'' ପୃ - ୧୩୯.)

'ବାଘ ଆଁ ଭିତରେ ପିକ୍‌ନିକ୍' କବିତାରେ ଏକ ମଧ୍ୟବିତ୍ତ ମଣିଷର ନିରାଶାରୁ ଜନ୍ମ ନେଇଥିବା ବିଦ୍ରୋହ ଏବଂ ସାମାଜିକ ଅଙ୍ଗୀକାର ଦେଖିବାକୁ ମିଳେ । ନିଃସନ୍ଦେହରେ କୁହାଯାଇ ପାରେ କବି ପାଟ୍ଟଶାଣୀ ସ୍ୱାଧୀନତା ପରବର୍ତ୍ତୀ କାଳରେ ଏହି ପ୍ରଗତି ଚେତନାର ଜଣେ ବଳିଷ୍ଠ ବାହକ । କାବ୍ୟିକ ବିବର୍ତ୍ତନ ଭିତରେ ଏହି କବି ସତ୍ତାଟିର ପରିବର୍ତ୍ତିତ ଆଭିମୁଖ୍ୟକୁ ଲକ୍ଷ୍ୟ କରାଯାଇ ପାରେ । ଏହାରି ଭିତରେ ୧୯୮୧ ମସିହା ବେଳକୁ କବି 'ବର୍ଷା' କବିତା ପୁସ୍ତକ ରଚନା କରି ସାରିଥିଲେ । କବି ମାନସ ଏଠି ପ୍ରକୃତିକୁ ଏକ ରୋମାଣ୍ଟିକ୍ ଭଙ୍ଗୀରେ ତର୍ଜମା କଲାବେଳେ ମଣିଷର ଦୁଃଖକୁ ପାସୋରି ପାରି ନାହାନ୍ତି । କବି ଅତ୍ୟନ୍ତ ଜୀବନ ସଚେତନ । ମଣିଷର କ୍ଷୁଧା ତାଙ୍କୁ କ୍ଷତବିକ୍ଷତ କରିଛି । ସେଥିପାଇଁ କବି ପୁସ୍ତକର ଉତ୍ସର୍ଗରେ କହିଛନ୍ତି - ''ବର୍ଷା ତୋତେ ଉପହାର ଦେଲି ମରୁଡ଼ି ଜମିକୁ ।'' ବର୍ଷା ଯେତେ ସ୍ୱପ୍ନାଚ୍ଛନ୍ନ କରିଛି, ତା'ଠାରୁ ଅଧିକ କ୍ଷୁଧାର ନିଆଁକୁ ଶାନ୍ତ କରିବାର ଉପାୟଟିଏ ହୋଇ ଓହ୍ଲାଇ ଆସିଛି । କବି କହିଛନ୍ତି -

''ମୁଁ ଦେଖିଛି ବହୁବାର ମନୋହର ଧୂସର ସ୍ୱର୍ଗର
ଦରଜାରେ ମେଘଭଳି ବେଶ୍ୟାର ଚେହେରା
କବାଟର ଫଟା କାନ୍ଥ ତଳେ ବଞ୍ଚିବାର ଆର୍ତ୍ତନାଦ
କାଠକଟା କୀଟର ହାଡ କଣା କରି
ବାଜି ଉଠେ ମୃତ୍ୟୁର ପଞ୍ଜରାରେ
ଆଲୋକର ପ୍ରଣୟ ସଙ୍ଗୀତ ।''

(ପାଟ୍ଟଶାଣୀ ପ୍ରସନ୍ନ - ବର୍ଷା । ପୃଷ୍ଠା - ୯୮ । )

ବଞ୍ଚିବାର ପ୍ରତ୍ୟୟ ଏଠାରେ ବର୍ଷା ଅଗଣିତ ମଣିଷର ଲୁହ ହୋଇ କବିର ଆଖିରୁ ଝରିଯାଇଛି । ଜୀବନର ଘୁଙ୍ଗୁର ଶୁଣିଛନ୍ତି ବର୍ଷାର ଟପ୍‌ଟପ୍ ସ୍ୱର ଭିତରେ । ସତେ ଯେପରି ମଣିଷର

ସୁଖଦୁଃଖକୁ ବାଦ୍ ଦେଇ କବିତା ରଚନା କରିବା ଅସମ୍ଭବ । ବର୍ଷାରେ ଭିଜୁଥିବା ଏହି କବି ପୁଣି 'ରକ୍ତପଥ' କବିତା ରଚନା କଲାବେଳକୁ ହାତରେ ସଙ୍ଗୀନ୍ ଧରି ଠିଆ ହୋଇଛନ୍ତି । କର୍କଶ ପାହାଡ ଓ ଘଞ୍ଚ ଅରଣ୍ୟର ଅନ୍ଧାର ଭିତରେ ଲୁଚି ଲୁଚି ଶୋଷକର ସାମ୍ରାଜ୍ୟକୁ ଭାଙ୍ଗିଦେବାର ସ୍ୱପ୍ନରେ ବିଭୋର ହୋଇଛନ୍ତି । ଏହି କାବ୍ୟ ଗ୍ରନ୍ଥଟିରେ ଦେଖିବାକୁ ମିଳେ କବିର ଶବ୍ଦ ସଂଗ୍ରାମ ।

'ରକ୍ତପଥ' କବିର ରକ୍ତାକ୍ତ ସଂଗ୍ରାମ ଓ ସରକାରଙ୍କର ବିଭତ୍ସ ଦମନଲୀଳାର ଏକ ଜୀବନ୍ତ ଦଲିଲ୍ । ଏକ ଦୀର୍ଘ ରକ୍ତପଥ ନକ୍ସଲ୍ ଆନ୍ଦୋଳନର ଯେଉଁ ନିଆଁ ଲାଗିଥିଲା, ଓଡିଶାରେ ତାହା ପ୍ରଥମେ ଉଠିଥିଲା ଗୁଣୁପୁରରୁ । ଓଡିଶାର ଅଧିକାଂଶ ଯୁବ ବିପ୍ଳବୀ ଏହି ନିଆଁରେ ଝାସ ଦେଇଥିଲେ । ନକ୍ସଲ୍ ଆନ୍ଦୋଳନର ସଫଳତା ଯଦିଓ ସୁଦୂର ପରାହତ ତଥାପି ଏହି ସମୟରେ ଇତିହାସରେ ଯେଉଁ ଆଲୋଡନ ସୃଷ୍ଟିକରି ବିପ୍ଳବୀମାନଙ୍କୁ ନିର୍ଯ୍ୟାତିତ କରାଯାଉଥିଲା । ତା'ର ଏକ କରୁଣ ପ୍ରତିଫଳନ 'ରକ୍ତପଥ' । ୧୯୭୪ - ୭୬ ମସିହାରେ ରଚିତ ଏହି କବିତା ଆତ୍ମପ୍ରକାଶ କଲା ୧୯୮୨ ମସିହାରେ । ଜରୁରୀ କାଳୀନ ପରିସ୍ଥିତିର ମୁକାବିଲା କରି ନପାରି ଅଧିକାଂଶ ବିପ୍ଳବୀ 'ଅଜ୍ଞାତବାସ'ରେ ରହିଲେ । 'ରକ୍ତପଥ' ମୁଖବନ୍ଧରେ କବି କୁଳମଣି ଜେନା କବିଙ୍କ ସମ୍ପର୍କରେ ମତାମତ ଦେଇ କହିଛନ୍ତି - ''ରକ୍ତପଥ''ର ଉପରୋକ୍ତ ପଂକ୍ତିରେ କବି କ୍ରୁଶବିଦ୍ଧ ହୋଇ ନାହାନ୍ତି ସତ, କିନ୍ତୁ ମହାନ୍ ଆନ୍ଦୋଳନର ଧାରାରେ ସେଦିନ ବାରମ୍ବାର ଯେଉଁମାନେ କ୍ରୁଶବିଦ୍ଧ ହୋଇଥିଲେ ସେଇମାନଙ୍କ ପାଇଁ ଗାଇଛନ୍ତି ସୃଷ୍ଟିର ଚିରନ୍ତନ ସାୟରୀ ।''(ପାଟଶାଣୀ ପ୍ରସନ୍ନ - ରକ୍ତପଥ (ମୁଖବନ୍ଧ) ପୃ - ଡ)

'ରକ୍ତପଥ'ରେ କବିଙ୍କ ନିଜସ୍ୱ ସ୍ୱୀକାରୋକ୍ତି ହିଁ ତାଙ୍କ ପଛରେ ଥିବା ସମସ୍ତ ପ୍ରାମାଣକତାକୁ ବହନ କରେ । ବିପ୍ଳବ ଓ ସେହି ଆଦର୍ଶର ଏକ ଶାବ୍ଦିକ ପରିପ୍ରକାଶ ଏଠାରେ ପ୍ରତିପାଦନ କରାଗଲା ।

''ଆଦର୍ଶ ମୋ ରକ୍ତପଥ ଗଡିଚାଲେ

ଦିଗନ୍ତ ଦିଗନ୍ତ

ତା' ଭିତରେ ସୂର୍ଯ୍ୟ ହୋଇ ଜଳେ

ମୁକ୍ତିର ପୌରୁଷ

ଆଦର୍ଶ ମୋ ଭୂର୍ଜପତ୍ର

ମୁଁ ତାହାର ତିକ୍ତଶାଖା

ମେଲିପାରେ ଆଲୋକରେ ଅସଂଖ୍ୟ ପ୍ରଶାଖା ।''

(ପାଟଶାଣୀ ପ୍ରସନ୍ନ - ରକ୍ତପଥ । ପୃ - ୭୧)

ରକ୍ତପଥର ଏହି ଆଦର୍ଶ ପୁରୁଷ ସରକାର ଓ ଶାସନ ବିରୋଧରେ ଅସ୍ତ୍ର ଉଠାଇଛି । ଅରଣ୍ୟ ଅନ୍ଧାରରେ ନିଜେ ବିପ୍ଳବୀ ସାଜି ଆତ୍ମଗୋପନ କରିଛନ୍ତି । ଶୋଷକମାନଙ୍କୁ ବିଦ୍ରୂପ କରି ସେମାନଙ୍କ ଚରିତ୍ରର ଦଲିଲ୍ ଥୋଇଛନ୍ତି । ମାତ୍ର ସେ ଭୟଭୀତ ନୁହଁନ୍ତି ।

''କାନ ଡେରି ଶୁଣ ଯେତେକ ଗୁଜବ

ଗରୀବ ରକ୍ତକୁ ଆଉଟି ମାତାଲ ହୁଅ

ମଦ ପିଅ

ଯେତେ ସବୁ ସ୍ୱଦେଶବତ୍ସଳ ନିଦ୍ରାଯାଅ

କୁମାରୀ କନ୍ୟାର ନିରପରାଧ ସତୀତ୍ୱ ଶେଯରେ ।''

( ପାଟଶାଣୀ ପ୍ରସନ୍ନ - ରକ୍ତପଥ । ପୃ-୬୨ ।)

କବି ମାର୍କସବାଦୀ ଦର୍ଶନର ଜଣେ ସଫଳ ପ୍ରତିନିଧି । ସର୍ବହରା ପାଇଁ ମୁକ୍ତିର ଗୀତ ଗାଇଛନ୍ତି । ମଣିଷକୁ ନୂତନ ଆଲୋକ ଦେଖାଇବାର ରକ୍ତଶପଥ ତାଙ୍କୁ ବିପ୍ଳବୀ କରାଇଛି । ଏଠି 'ରକ୍ତପଥ'ର କବିତା ମାର୍କସବାଦର ପ୍ରଚାର କଲାପରି ଲାଗେ । ହେଲେ ଏ ସ୍ଲୋଗାନ ଭିତରୁ କବିଙ୍କ ଆଖିରେ ଜଳୁଥିବା ରଡନିଆଁ ସ୍ପଷ୍ଟ ବାରିହୁଏ । ଏ କବିତା ସିଧାସଳଖ ଅନୁଭୂତି ହୋଇଥିବାରୁ, ବର୍ଣ୍ଣନାଧର୍ମୀ ଶୈଳୀଯୋଗୁଁ ସାମାନ୍ୟ ପ୍ରଚାର ହେଲା ପରି ଲାଗେ । ତଥାପି ଏହାକୁ କବିର ମାର୍କସବାଦ ପ୍ରତି ଆବେଗିକ ସମର୍ଥନ (Emotional support) କୁହାଯିବ ନାହିଁ । ଏହା କବିର ସଚେତନତା, କବିର କମିଟମେଣ୍ଟ ।

''ଆମର ବିବାହ ବିପ୍ଳବକୁ

ସୂର୍ଯ୍ୟର ଦୀପ ଜହ୍ନର ଶୀତଳ ଧୂପ

ଝଡର ସଂଖୋଳା

ମେହେନତି ମଣିଷର ଶ୍ରଦ୍ଧା

ଶାନ୍ତିର ଉପଧା ।''( ପାଟଶାଣୀ ପ୍ରସନ୍ନ - ରକ୍ତପଥ । ପୃ - ୩୧ )

'ରକ୍ତପଥ'ର ବିପ୍ଳବୀ କବିଙ୍କର ବୈପ୍ଳବିକ ଆଭିମୁଖ୍ୟର ବୌଦ୍ଧିକ ଉପସ୍ଥାପନା ଆହୁରି ଶାଣିତ ହୋଇ ପ୍ରକାଶିତ ହୋଇଛି 'ଅଗ୍ନିଯୁଗ' କବିତା ଗ୍ରନ୍ଥରେ ୧୯୮୮ ମସିହାରେ । ଗଭୀର ଜୀବନ ବୋଧରେ 'ଅଗ୍ନିଯୁଗ'ର କବିତା ସବୁ ପରିପୁଷ୍ଟ । ଏଥିରେ ସ୍ଲୋଗାନ ସବୁ ନାହିଁ । ଏହାର ପ୍ରକାଶ କାଳ ୧୯୮୮ ମସିହା ହେଲେ ମଧ୍ୟ ଏହା ଅନେକ ପୂର୍ବରୁ ରଚିତ । କବିର ଛାତି ତଳେ ମଣିଷର ଦୁଃଖ ଯେତେଯେତେ ଦୋହଲି ଉଠେ, ତା'ର ଅନୁଭବ ସେତେ ଶାଣିତ ଓ ସାନ୍ଦ୍ର ହୁଏ । କବି ପ୍ରକୃତି, ଝରଣା, ନଦୀ, ଅରଣ୍ୟ, ଗଛପତ୍ର ସବୁଠି ଏକ ବିପ୍ଳବର ନିଆଁକୁ ଦେଖିଛନ୍ତି । ଏହି ନିଆଁ ହୋଇପାରେ ମଣିଷର ଶେଷ ନିଆଁ । ମାତ୍ର ଏହି ନିଆଁ ହିଁ ଆଉ ଏକ ଜୀବନ ଆରମ୍ଭର ସୂଚନା ମଧ୍ୟ ଦେଇଯାଏ । ଏ ନିଆଁ କବିର ଆଖିରୁ ଝରୁଥିବା ମଣିଷର ତତଲା ଲୁହ, ସବୁ ଅନ୍ଧାରକୁ ଦୂର କରି ଶୋଷକର ଖାଣ୍ଡବ ଦହନ ପାଇଁ ଏହାର ଜନ୍ମ । କବି ଅନୁଭବର ଅଗ୍ନିରେ ପ୍ରଜ୍ୱଳିତ ।

'ଅଗ୍ନିଯୁଗ'ର ସାମାନ୍ୟ କଥନରେ କବି ଏହାର ପ୍ରକାଶ ସମ୍ପର୍କରେ କହିଛନ୍ତି ।-' (All the Fundamental values of creation and evolution are contained in 'A' and their forst elaboration are three qualities of 'G','N' and 'I' in this way AGNI contains the seed and first sprouting of all knowledge and the mechanics of creation and evolution."(୧୭)ସେଇ ଗୋଟିଏ ଅଗ୍ନି ଭିତର ଦେଇ କବି ଯେତେଥର ଜୀବନକୁ ଦେଖିଛନ୍ତି ସେତେଥର କରୁଣ ମୁହଁ ଗୁଡାଏ ଦିଶିଛି, ସେତେ ଦିଶିଛି ଭୁଷୁଡି ପଡୁଥିବା ଏକ ସମାଜ । ଗୋଟେ ପଟେ ବିଜ୍ଞାନର ଦ୍ରୁତଗତିଶୀଳତା ଓ ଅନ୍ୟପଟେ ସାମାଜିକ ଜୀବନର ବିପର୍ଯ୍ୟୟ । ଏସବୁ ଦେଖି ଦେଖି କବି ହୃଦୟରେ ଦେଖାଦେଇଛି ସମବେଦନା, ମଣିଷ ପ୍ରତି ଏକ ସହାନୁଭୂତିଶୀଳ ଦୃଷ୍ଟି । ଏହିପରି ଅନେକ ଅନୁଭବ କବିଙ୍କୁ କ୍ରାନ୍ତଦର୍ଶୀ କରିଛି । କବି ନିଜର ଦୂର ଦୃଷ୍ଟିରେ ଅନେକ କିଛି ଦେଖିପାରିଛନ୍ତି । ବିଜ୍ଞାନର ଅଗ୍ରଗତିସହ ସାମାଜିକ ଅଗ୍ରଗତିରେ ସେ ସନ୍ଦିହାନ । ପ୍ରକୃତିର ନିୟମ ବିରୋଧରେ ବିଜ୍ଞାନର ଆସ୍ପର୍ଦ୍ଧା କବିଙ୍କୁ ସଚେତନ କରାଇଛି ।''ଯଥାର୍ଥରେ ଆମ ଶାସ୍ତ୍ରରେ କବିଙ୍କୁ କ୍ରାନ୍ତଦର୍ଶୀ ବୋଲି କହିବାର ଆସ୍ପର୍ଦ୍ଧା କରାଯାଇଛି । କ୍ରାନ୍ତଦର୍ଶୀ ଅର୍ଥାତ୍ ଯିଏ ଆମର ଏ ଆଖି ଦୁଇଟାକୁ ଦିଶୁଥିବା ଦିଗରେଖାଗୁଡିକର ସେପଟକୁ ମଧ୍ୟ ଅନାଇ ଦେଖି ପାରେ । ଏହି କ୍ଷଣଟାର ସେ ପାଖକୁ ବି ସଞ୍ଚରି ଯାଇପାରେ । ଯିଏ ଅଳ୍ପ ଚାହେଁ ନାହିଁ, ଅଳ୍ପରେ ସନ୍ତୁଷ୍ଟ ହୋଇ ରହିଯାଏ ନାହିଁ, ଅଳ୍ପକୁ ବହୁତ ବୋଲି କହେ ନାହିଁ କିମ୍ବା ଅଳ୍ପର ବଦଳରେ ବହୁତ ଦାବୀକରେ ନାହିଁ ।'' (ଦାସ ଚିତ୍ତରଞ୍ଜନ - ଆଧୁନିକ ଓଡିଆ କବିତାର ଦିଗ୍‌ଦର୍ଶନ ପୃ - ୧୭ )

କବି ଶାସନର ହାତଟେକା ଦୟାରେ ସନ୍ତୁଷ୍ଟ ନୁହଁନ୍ତି । 'ଅଗ୍ନିଯୁଗ'ରେ ଏହି କାନ୍ତିକାରୀ ଶିଳ୍ପୀର ଚରମ ବିଦ୍ରୋହ ପ୍ରକାଶ ପାଇଛି । ସାମାଜିକ ଓ ମାନବିକ ଅବକ୍ଷୟର କଥା ସେ 'ରାଉରକେଲା' କବିତାରେ ପ୍ରକାଶ କରିଛନ୍ତି । ଯାହା ଅଗ୍ନିଯୁଗର ପ୍ରମାଣିକତାକୁ ବହନ କରି ରଚିତ ହୋଇଛି ।ଯେପରି

'ଚିମିନିରେ ଓହଳିଛି କଳା କଳା ଆଖି
ସାଇରନ୍ ପ୍ରଳାପରେ ନିଦ୍ରାଯାଏ ଭାଜି
ରାସ୍ତା ଭୁଲି ହଜିଲା ପାହାଡୀ ଛେଳି
ହୋଟେଲ୍ କରେଇ ଦେଖେ ତୋର ଛବି
ଲୁହାର ଥାଳିଆରେ ପହଁରୁଛି ଶୋଷଣର ଝୋଳ ।
ରାଉରକେଲା ଲୋ କିପରି ବଞ୍ଚିବି କହ ।'
(ପାଟଶାଣୀ ପ୍ରସନ୍ନ - ଅଗ୍ନିଯୁଗ । ପୃ - ୬୩ )

କଚେରୀ, କୋରାପୁଟ, ଭଙ୍ଗାବତାସ ଆଦି କବିତାରେ ଏହି ଦୃଷ୍ଟିଭଙ୍ଗୀ ବେଶ୍ ପ୍ରାଞ୍ଜଳ । ହତାଶା, ଅବସାଦ, ଅବକ୍ଷୟ ଇତ୍ୟାଦିଠାରୁ ଦୂରରେ ରହି ସେ ଆଶାର ସଙ୍ଗୀତ ଶୁଣାଇଛନ୍ତି । ବ୍ୟର୍ଥତା ଏଠି କବିର ଜୀବନକୁ ପ୍ରଭାବିତ କରିନାହିଁ । କବିତାଗୁଡିକ ସଂଗ୍ରାମର ପ୍ରଚାର ନୁହେଁ, ଏହା ମଣିଷର ମୁକ୍ତିବେଦ । ଏଠାରେ ବହିର୍ଦୃଷ୍ଟି ଅପେକ୍ଷା ଅନ୍ତର୍ନିହିତ ମୂଲ୍ୟବୋଧ ବେଶୀ ବଳିଷ୍ଠ । ଏକ ଦାର୍ଶନିକତାରେ କବିତା ସବୁ ଉଦ୍ଭିମନ୍ତ । ''କବି ପାଟଶାଣୀ ମଣିଷର ବେଦନାକୁ ଯେଭଳି ଭାବରେ ଆତ୍ମସ୍ଥ କରିଛନ୍ତି,

ସେପରି ମଧ୍ୟ ଆକାଶର ଗ୍ରହ ନକ୍ଷତ୍ର, ସବୁଜ ବିଲ, ଝରଣା ଓ ପାହାଡ ତାଙ୍କ ସୃଷ୍ଟିରେ ପ୍ରାଣବନ୍ତ । ରୂପମୟ ଏଇ ଜଗତ ଜୀବନ ଓ ଜୀବନ ନୀତିର ଧାରା ଏକ ଆଶ୍ଚର୍ଯ୍ୟ ଆଲେଖ୍ୟ, ଆଙ୍ଗିକ ଉପସ୍ଥାପନ ଏବଂ ବକ୍ତବ୍ୟ ଓଡିଆ ସାହିତ୍ୟରେ ତାଙ୍କର ଏକାନ୍ତ ନିଜସ୍ୱ ଓ ଅଭିନବ । ଏକା ସାଥିରେ ଜୀବନ ଓ ମହାଜୀବନର ପ୍ରତିଛବି ।''(୨୦) (ସାହୁ ଭାଗୀରଥି - ସାମ୍ପ୍ରତିକ କବିତା ଓ କବି ପ୍ରସନ୍ନ ପାଟଶାଣୀ - ପୃ - ୬୬ )

'ଅଗ୍ନିଯୁଗ' କବିତା ଗ୍ରନ୍ଥର 'ପ୍ରତିଧ୍ୱନି' ଶୀର୍ଷକ କବିତାଟି ଏକ ପ୍ରତିନିଧି ଶ୍ରେଣୀୟ ରଚନା । କବି ଶୋଷଣ, ଧ୍ୱଂସ ଓ ଅତ୍ୟାଚାରର ସ୍ତୂପତଳୁ ଜୀବନର ବେଦ ଶୁଣିଛନ୍ତି । ଧ୍ୱଂସର ପାହାଡ ଉପରେ ଆଉ ଏକ ଜୀବନର ଅଭିଷେକ କରୁଛନ୍ତି । ଅସହାୟତା ମଣିଷକୁ କବଳିତ କରିପାରୁନି, ମୃତ୍ୟୁ ମଧ୍ୟ କବଳିତ କରି ପାରୁନି । ମୃତ୍ୟୁର ଅନ୍ଧାରଠାରୁ ଆଉ ପାଦେ ଆଗେଇ ଯାଉଛି ଜୀବନ । ଗଭୀର ଆଶାବାଦ ଓ ପ୍ରତ୍ୟୟର ସ୍ୱର ଧରି ଏ କବିତାଟି ପ୍ରକାଶିତ ।

''ଶୁଣ କାନ ଡେରି

ମାଟିତଳେ ଅଙ୍କୁରିତ ଘାସର କଦମ୍

ପ୍ରତିଧ୍ୱନି ବଜାରର କ୍ଷେତ

ଜାଳିଦିଏ ଖରା ପତ୍ରର ପର୍ବତ ।''(ପାଟଶାଣୀ ପ୍ରସନ୍ନ - ଅଗ୍ନିଯୁଗ । ପୃ-୩)

ମୁମୂର୍ଷୁ ଜନତାର ପ୍ରତୀକ ଭାବେ ପକ୍ଷୀକୁ ଗ୍ରହଣ କରି ତା'ର ସମସ୍ତ ଶକ୍ତି ଯେ ଶୋଷଣର କାରାକୁ ଭାଙ୍ଗିପାରେ, ଯୁଗଯୁଗର ଅତ୍ୟାଚାରକୁ ପୋଛିପାରେ ତାହା ଦର୍ଶାଇଛନ୍ତି 'ପକ୍ଷୀ' କବିତାରେ । ଏଥିରେ ସେ ଅତ୍ୟନ୍ତ ପ୍ରତିକ୍ରିୟାଶୀଳ । ସତର୍କତାର ସହିତ ନିଜର ପ୍ରତିକ୍ରିୟାକୁ ପ୍ରକାଶ କରିଛନ୍ତି -

''ପକ୍ଷୀଟିଏ ଚାଳିପାରେ ଗୁଳି

ପକ୍ଷୀଟିଏ ଖେଳିପାରେ ହୋରି

ପକ୍ଷୀଟିଏ ଉଡିପାରେ ସୁଦୂର ଆକାଶ

ମୋଡିପାରେ ମଗଜର ଚୁଲି ।''(ପାଟଶାଣୀ ପ୍ରସନ୍ନ -ଅଗ୍ନିଯୁଗ । ପୃ-୨୨ )

'ଅଗ୍ନିଯୁଗ'ର ପ୍ରାୟ ଅଧିକାଂଶ କବିତାରେ ଏହିପରି ବହୁ ଦାର୍ଶନିକ, ପ୍ରଜ୍ଞାଭିତ୍ତିକ ଦୃଷ୍ଟିଭଙ୍ଗୀର କଥା କୁହାଯାଇଛି । ନୂଆ ପୃଥିବୀର ସ୍ୱପ୍ନ, ଜୀବନର ସ୍ୱପ୍ନ ଏସବୁ ରୋମାଣ୍ଟିକ୍‌ର ଲକ୍ଷଣ ହେଲେ ମଧ୍ୟ ଏହି ଚିନ୍ତାଧାରା ଫୁଲର ପରାଗରେ ଚିତ୍ରିତ ନୁହେଁ, ମଣିଷର ରକ୍ତରେ ରଞ୍ଜିତ । ଏସବୁ ସମାଜବାଦୀ ବାସ୍ତବତାର କଥା, ସାମ୍ୟବାଦର କଥା ।

କବି ସାମାଜିକ ବୈଷମ୍ୟ ବିରୋଧରେ ପ୍ରଚଣ୍ଡ ସ୍ୱର ଉତ୍ତୋଳନ କରିଛନ୍ତି । ଏକ ଶ୍ରେଣୀହୀନ ସମାଜ ପ୍ରତିଷ୍ଠାକୁ ନିଜ ଜୀବନର ଏକ ଆଦର୍ଶ ବା ନୀତି ଭାବରେ ସେ ଗ୍ରହଣ କରିଛନ୍ତି । ଓଡିଶାର ବିଶିଷ୍ଟ ସାମ୍ୟବାଦୀ ବିପ୍ଳବୀ କବି ଅନନ୍ତ ପଟ୍ଟନାୟକ, ସଚ୍ଚିଦାନନ୍ଦ ରାଉତରାୟ, ରବି ସିଂ ଓ ରଘୁନାଥ ଦାସଙ୍କ ସହିତ ପ୍ରସନ୍ନ ପାଟଶାଣୀଙ୍କୁ ତୁଳନା କଲେ, ସେମାନଙ୍କଠାରୁ ପ୍ରସନ୍ନ ପାଟଶାଣୀ ସ୍ୱତନ୍ତ୍ର ଜଣାପଡନ୍ତି । ରବି ସିଂ ଓ ରଘୁନାଥ ଦାସଙ୍କ କବିତାରେ ଉଗ୍ର ସାମ୍ୟବାଦୀ ସ୍ୱର ପ୍ରତିଫଳିତ

ହୋଇଥିବା ବେଳେ ସଚ୍ଚିଦାନନ୍ଦ ରାଉତରାୟ ଓ ଅନନ୍ତ ପଟ୍ଟନାୟକଙ୍କ କବିତାରେ ସାମ୍ୟବାଦୀ ସ୍ୱର ସହିତ ଏକ ସୌନ୍ଦର୍ଯ୍ୟତାତ୍ତ୍ୱିକ ସ୍ପର୍ଶ ରହିଛି । କିନ୍ତୁ ପ୍ରସନ୍ନ ପାଟଶାଣୀଙ୍କ କବିତାରେ ସାମ୍ୟବାଦୀ ସ୍ୱର ସହିତ ଏକ ରୋମାଣ୍ଟିକ୍ ଆବେଗ ମିଶି ରହିଛି । ଯେପରି -

''ଶୁଣ କାନ ଡେରି
ମାଟିତଳେ ଅଙ୍କୁରିତ ଘାସର କଦମ୍
ପ୍ରତିଧ୍ୱନି ବଙ୍କାରର କ୍ଷେତ
ଛାଳିଦିଏ ଖରା ପତ୍ରର ପର୍ବତ
ବୃନ୍ତ ତଳେ ନିଆଁ ଝୁଲ
ଫୁଟିଲା ଫୁଲ କବରୀରେ
ଡିନାମାଇଟ୍ ଚୂନର ପରାଗ
ପାଖୁଡାରେ ଗୋଳାବାରୁଦ ମହକ
ଅରଣ୍ୟରେ ବାଜି ଉଠେ ପ୍ରଳୟର ଡ୍ରମ୍ ।'' ( ପାଟଶାଣୀ ପ୍ରସନ୍ନ - ଅଗ୍ନିଯୁଗ । ପୃ-୩ )

ମାଟିତଳେ ଅଙ୍କୁରିତ ଘାସର କଦମ୍, ବୃନ୍ତତଳେ ନିଆଁଝୁଲ, ଫୁଲ କବରୀରେ ଡିନାମାଇଟ୍, ପାଖୁଡାରେ ଗୋଳାବାରୁଦ ମହକ ପ୍ରଭୃତି ଶବ୍ଦମାନଙ୍କରେ ବିପ୍ଳବର କଥା କୁହାଯାଉଥିଲେ ମଧ୍ୟ ଏଥିରେ ଏକ ରୋମାଣ୍ଟିକ ଆବେଗ ମିଶି ରହିଛି । ଏହି ଉପଲବ୍ଧି କବି ପାଟଶାଣୀଙ୍କର ନିଜସ୍ୱ । ଏଥିପାଇଁ ସେ ପ୍ରକୃତିରୁ ଚିତ୍ରକଳ୍ପ ଆହରଣ କରିଛନ୍ତି । ଯାହା ତାଙ୍କୁ ତାଙ୍କ ସମସାମୟିକ କବିମାନଙ୍କଠାରୁ ସ୍ୱତନ୍ତ୍ର କରିଛି । ଏହି ଭାବଧାରାଟି ତାଙ୍କର 'ରକ୍ତପଥ', 'ଅଗ୍ନିଯୁଗ', 'ବାଘ ଆଁ ଭିତରେ ପିକ୍‌ନିକ୍' ଓ 'ଲେନିନ୍' ପ୍ରଭୃତି ଗ୍ରନ୍ଥର ଅଧିକାଂଶ କବିତାରେ ଦେଖିବାକୁ ମିଳିବ । ଏହି ପ୍ରସଙ୍ଗ ଭିତ୍ତିରେ ଅନ୍ୟ ଦୁଇଟି ଉଦାହରଣକୁ ଏଠାରେ ଲକ୍ଷ୍ୟ କରା ଯାଇପାରେ -

୧ - ''କଟା ନାସ୍‌ପାତି ଭଳି
ଦିଗନ୍ତରେ ଦିଶେ ଶେଷ ଜହ୍ନ
କୁଚ କୁଚ ପତଙ୍ଗଙ୍କ ଶବ
ବତୀ ଖୁଣ୍ଟ ତଳେ
ପୂର୍ବ ଦିଗ ଲାଲ୍ ହେବ
ବୋଧ ହୁଏ ଅଳ୍ପବେଳ ବାକି ।''(ପାଟଶାଣୀ ପ୍ରସନ୍ନ - ଶହେ ଏକ କବିତା । ପୃ -୬ )

୨ - ''ତୋ ଓଠରୁ ଶୁଭୁଅଛି
ଝଡର ଓଁକାର ।'' (ପାଟଶାଣୀ ପ୍ରସନ୍ନ - ଶହେ ଏକ କବିତା । ପୃ-୩୮ )

ଏକ ଶ୍ରେଣୀହୀନ ସମାଜ ପ୍ରତିଷ୍ଠାକୁ କବି ପୂର୍ବଦିଗ ଲାଲ ସହ ଏକ ନୂତନ ଉଷାର ଅଭ୍ୟୁଦୟ ସହିତ ତୁଳନା କରିଛନ୍ତି । କିନ୍ତୁ ଦିଗନ୍ତରେ କଟାନାସପାତି ପରି ଶେଷ ଜହ୍ନ । ବତୀଖୁଣ୍ଟତଳେ, ପତଙ୍ଗର ଶବ ଇତ୍ୟାଦିରେ

ଏକ ରୋମାଣ୍ଟିକ ଆବେଗ ରହିଛି । ଦ୍ୱିତୀୟ ଉଦାହରଣରେ ଶିଶୁ କଣ୍ଠରୁ ବିପ୍ଳବର ଧ୍ୱନି ଶୁଭିବା ଏକ ରୋମାଣ୍ଟିକ୍ ଅନୁଭୂତିର ପ୍ରକାଶକ ।

''ଦେଖିଛି / ରକ୍ତରେ ଚକଟା /

ଅଠା ଅଠା ମାଟି /

ଯେଉଁଠି / ବାରୁଦର ଫୁଲଫୁଟେ /

ଗଛତଳେ ଗଡୁଥାଏ /

ରକ୍ତରଙ୍ଗା /

ଚଢେଇର ଛାତ /

ଦେଖିଛି /

ମା'ର ଆଖିରେ ସେଠି /

ଲୋତକର ଝୋଟି /''(ପାଟଣାଣୀ ପ୍ରସନ୍ନ - 'ଶହେ ଏକ କବିତା' ପୃ-୪୭ )

ଗର୍କିଙ୍କର " The Mother " ଉପନ୍ୟାସର ପ୍ରଭାବ ପରୋକ୍ଷ ଭାବରେ ଏ' କବିତାରେ ଅନୁଭୂତ ହେଉଛି । ମା'ର ଲୁହଧାର ଯେପରି ଋଷ ମାଟିରୁ ଜାର୍ ଶାସକମାନଙ୍କର ନିର୍ମମ ଅତ୍ୟାଚାରକୁ ଧୋଇ ଦେଇ ଥିଲା, ସେହିପରି କବି ନିଜ ଦେଶରୁ ପୁଞ୍ଜିପତି, ଧନୀ ଶାସକ ମାନଙ୍କର ଅତ୍ୟାଚାର ଓ ଶୋଷଣକୁ ଦୂର କରିବା ପାଇଁ ମା'ର ଆଶୀର୍ବାଦ କାମନା କରିଛନ୍ତି । ଯେପରି -

''ନରମ କୋମଳ ମାଆଟି /

ଦୁଇ ବାହୁରେ ମୋ ଭରିଦେ ଅସୀମ ଶକ୍ତି /

ତୋରି ସୁରକ୍ଷା ପାଇଁ /

ଭାଙ୍ଗି ବାରିବି / ଶୋଷଣର କାରା /

ଲଂଘିବି ତେର ନଈ /''(ପାଟଣାଣୀ ପ୍ରସନ୍ନ - ଶହେ ଏକ କବିତା । ପୃ-୫ )

କବି ସମସ୍ତ ଯନ୍ତ୍ରଣା ଓ ଲୁହକୁ ଅଙ୍ଗୀକାର କରି ଏକ ନୂତନ ଅଗ୍ନିଯୁଗର ସନ୍ଧାନ ଦେଇଛନ୍ତି ତାଙ୍କର କବିତା ମାନଙ୍କରେ । ଶୋଷକର ନଗ୍ନରୂପ ଓ ଛଦ୍ମତାକୁ ଖୋଲା ଖୋଲି ଭାବେ ଆକ୍ଷେପ କରି କହିଛନ୍ତି -

''ନିର୍ଯ୍ୟାତିତ ଫୁଲରେ ଚିପୁଡା /

ଢକ ଢକ ମହୁ ଆଉ ସୁରା /

ଦରବାରୀ ଦିଲ୍ଲୀର ବଖରା

ଖସାଇଛି ତୋ ଚାଳରୁ ନଡା /'' (ପାଟଣାଣୀ ପ୍ରସନ୍ନ - 'ଅଗ୍ନିଯୁଗ'ପୃ-୭୬ )

କବି ପାଟଶାଣୀଙ୍କର ଏଠାରେ ସାଧାରଣ ନିର୍ଯ୍ୟାତିତ ପ୍ରଜାଙ୍କୁ ଶାସକ ଗୋଷ୍ଠୀର ଶୋଷଣ ବିରୁଦ୍ଧରେ ଏକ ବୈପ୍ଲବିକ ଆହ୍ୱାନ ଦେଖିବାକୁ ମିଳେ ।

ଫରାସୀକବି ଲୁଇ ଆରାଗଁଙ୍କର 'Red Train' ଯାହାଥିଲା ସାମ୍ୟବାଦର ପ୍ରତୀକ, ସେହିପରି କବି ନିଜକୁ ଏକ ଚଳନ୍ତା ଗିରିଝରଣାର ସ୍ରୋତ ସହିତ ତୁଳନା କରି ସାମ୍ୟବାଦର ବାର୍ତ୍ତାଧରି ବିପ୍ଳବ ମାର୍ଗରେ ନିଜକୁ ବ୍ରତୀ କରାଇଛନ୍ତି । ଯେପରି-

''ମୁଁ ଏକ ଚଳନ୍ତା ଗିରି ଝରଣାର ସ୍ରୋତ

ଫୁଟାଇ ବାଟରେ ପାହାଡ ପଥର ପେଟ

ଘନ ବନାନୀର ଗୁରୁ ଗରଜନ

ସବୁଜ ମାଟିରେ କମ୍ପିତ ଭୂମିତଟ ରାସ୍ତାରେ ଭେଟେ

ଗୁହାରେ ତରାଟେ ଆଖିର ନାଟ

ମଣିଷ ବାଘକୁ ମୁକାବିଲା କରେ

ମୁଁ ଏକ ରକ୍ତବାଟ ।''(ପାଟଶାଣୀ ପ୍ରସନ୍ନ - 'ଅଗ୍ନିଯୁଗ' । ପୃ-୮୨ )

କବି ସମାଜର ଶୋଷକ ମଣିଷବାଘ ବିରୋଧରେ ଏକ ଅବାରିତ ବିପ୍ଳବର ସ୍ୱର ଗତିମନସ୍କ ଝରଣାର ସ୍ରୋତ ଭିତରେ ଅନୁଭବ କରିଛନ୍ତି । ପୁନର୍ବାର ମରଣର ପୃଷ୍ଠା ଉପରେ ବଞ୍ଚିବାର ଭାଷା ଲେଖିବାକୁ ଚାହୁଁଥିବା କବିଙ୍କର ଚିନ୍ତାଧାରା ଲକ୍ଷ୍ୟ କରାଯାଉ ।

''ସେ ନେଇଛି ଶପଥ

ମରଣର ପୃଷ୍ଠା ପରେ

ଲେଖିବାକୁ ବଞ୍ଚିବାର ଭାଷା

ସେ ଏକ ରକ୍ତ ରଞ୍ଜିତ

ଅନୂଦିତ ଯୁଗର ଗୋଲକ

ଜ୍ୱଳନ୍ତ ସୂର୍ଯ୍ୟର ମନୀଷା ।''(ପାଟଶାଣୀ ପ୍ରସନ୍ନ - 'ଅଗ୍ନିଯୁଗ' । ପୃ-୭୬ )

କବି ନିଜକୁ ଲେନିନ୍‌ଙ୍କର ପଟଶିଷ୍ୟ ଭାବେ ତାଙ୍କର ଅନ୍ୟ ଏକ କାବ୍ୟ ଦୃଷ୍ଟାନ୍ତରେ ସାମ୍ୟବାଦୀ ଚିନ୍ତାଧାରାର ଏକ ସ୍ୱଷ୍ଟ ଉଚ୍ଚାରଣ କରିଛନ୍ତି । ବିପ୍ଳବୀ କବି କାଜି ନଜରୁଲ୍ ଇସଲାମ୍‌ଙ୍କ ଐତିହାସିକ ବିଦ୍ରୋହୀ କବିତାରେ ତାଙ୍କର ଗୋଟିଏ ହାତରେ ବଂଶୀ ଓ ଅନ୍ୟ ହାତରେ ରଣଭେରୀ ପରି, ବିପ୍ଳବୀ କବି ପ୍ରସନ୍ନ ପାଟଶାଣୀଙ୍କ ହାତରେ କୃଷି ଓ କୃଷ୍ଟିର ଚିହ୍ନ ଦାଆ ଓ ହାତୁଡି ଶୋଭା ପାଉଛି । ଯେପରି -

''ଏକ ହାତେ ଧରିଥାନ୍ତି ମାର୍‌ତୁଲ୍

ଆର ହାତେ ଦାଆ

ଠେକା କରି ଭିଡିଥାନ୍ତି

ମୋ ମଥାରେ ସର୍ବହରାଙ୍କ ଦାବୀ

ବାହୁଥାନ୍ତି ଏକା ଏକା ସାମ୍ୟବାଦୀ ନାଆ ।''(ପାଟଶାଣୀ ପ୍ରସନ୍ନ - ଦେଖା ହେଲେ କହିବି ସେ କଥା । ପୃ-୪୬ )

ନିପୀଡିତ ମଣିଷର ଦୁଃଖ, ଅନ୍ତର୍ଦାହକୁ କବି ଏକ ସାମାଜିକ ଅଙ୍ଗୀକାର ବୋଲି ଗ୍ରହଣ କରିଛନ୍ତି । ଯେପରି -

''ଯେତେ ଦିନ ଯାଏ ଥିବ

ଶୋଷଣ ଆଉ କଷଣ

ନିପୀଡିତ ମଣିଷ ପାଇଁ

କବିତାକୁ କରିଥିବି ହତିଆର୍ ।''(ପାଟଶାଣୀ ପ୍ରସନ୍ନ - ଆକାଶର କାଠଗଡାରେ ବନ୍ଦୀ ସୂର୍ଯ୍ୟଙ୍କୁ ଜେରା । ପୃ-୨୩ ।)

କବି ପାଟଶାଣୀଙ୍କର ପ୍ରଥମ ଜୀବନ ଦର୍ଶନର ଉତ୍ସଭାବେ ଲେନିନ୍‌ଙ୍କ ସମ୍ପର୍କରେ ସେ ଆଲୋକପାତ କରିବା ସହିତ ଅସ୍ପୃଶ୍ୟତା ତଥା ସାମାଜିକ ବିଭେଦ ସମ୍ପର୍କରେ ତାଙ୍କର ଅଙ୍ଗୀକାର ବଦ୍ଧତା ଲକ୍ଷ୍ୟ କରାଯାଉ -

''ଲେନିନ୍ ଭାଙ୍ଗିଛି ଏଠି

ଯେତେ ସବୁ ଅସ୍ପୃଶ୍ୟତା

ଘୃଣ୍ୟ ପରମ୍ପରା

ପତିତର ଅଧିକାର ପାଇଁ

ଭାଙ୍ଗିଅଛି କଳଙ୍କିତ ଆଇନ୍ ଜଞ୍ଜିର ।'' (ପାଟଶାଣୀ ପ୍ରସନ୍ନ- ଲେନିନ୍ ,ପୃ-୧୮ )

ଶ୍ରେଣୀହୀନ ସମାଜ ପ୍ରତିଷ୍ଠା ପାଇଁ କାଳିନ୍ଦୀ ଚରଣ ପାଣିଗ୍ରାହୀଙ୍କର 'ଆଗାମୀ' ଓ ଅନନ୍ତ ପଟ୍ଟନାୟକଙ୍କର 'ସ୍ୱପ୍ନ ଦେଖୁଛି' ପ୍ରଭୃତି କବିତାରେ ଯେଉଁ ବ୍ୟାକୁଳତା ଓ ବ୍ୟଗ୍ରତା ଫୁଟି ଉଠିଛି, ପାଟଶାଣୀଙ୍କର 'ଶେଷ ପ୍ରହାର' କମ୍ରେଡ, ସଂଗ୍ରାମ, ପରିଚୟ, ଛୁଟି, ମୁଁ ଶବ ନୁହେଁ, ଧରିତ୍ରୀ, ଭିଏତ୍‌ନାମ୍ ପ୍ରଭୃତି କବିତାରେ ସେହି ଭାବଟି ଲକ୍ଷ୍ୟ କରାଯାଏ ।

''ଜୀବନର ଦାବୀ

ମାଗିଲେ ମିଳେନା

ଛଡେଇ ନେ ।

ମାଟି ମା ପାଦକୁ

ରକତରେ ତୋ

ଭିଜେଇ ଦେ ।'' (ପାଟଣାଣୀ ପ୍ରସନ୍ନ -ଶହେ ଏକ କବିତା । ପୃ-୨୩ )

ହାତ ପତେଇ ମଣିଷର ଦାବୀ ହାସଲ କରିହୁଏ ନାହିଁ ।ସର୍ବହରାର ଦାବୀ ହାସଲ କରିବାକୁ ହେଲେ ଏକ ପ୍ରତ୍ୟକ୍ଷ ବିପ୍ଳବର ଆବଶ୍ୟକତା ଅଛି ବୋଲି କବି ଅନୁଭବ କରିଛନ୍ତି । ଯେପରି ଲେନିନ୍ ଧନୀ ଶିଳ୍ପପତି ମାନଙ୍କଠାରୁ ଧନ ଛଡାଇ ଗରୀବମାନଙ୍କ ମଧ୍ୟରେ ବାଣ୍ଟି ଦେଇଥିଲେ । ସେହିପରି ଏକ ସମଧର୍ମୀ ଆହ୍ୱାନ ତାଙ୍କ କବିତାରେ ରହିଛି ।

''ରକ୍ତର ଖେଳ ଖେଳିବ /

ଦିନେ ମଣିଷ ଛୁଆ /

ମଣିଷ ହାତରେ ଜଳିବ /

ଦିନେ କ୍ରାନ୍ତି ନିଆଁ /''(ପାଟଣାଣୀ ପ୍ରସନ୍ନ - ଶହେ ଏକ କବିତା । ପୃ-୨୫ )

ଶୋଷିତ ଅବହେଳିତ ମଣିଷ ଭିତରେ ଥିବା ରୁଦ୍ଧ ଅସନ୍ତୋଷ ଦିନେ ବିସ୍ଫୋରିତ ହେବାର ସମ୍ଭାବନା ଉପରେ କବି ଆସ୍ଥା ରଖିଛନ୍ତି ।

''ସମତଳ କର ପାହାଡ ବିଲ /

ଉଡୁଛି ଆକାଶେ /

ମୁକ୍ତିପ୍ଲାବନ ଶଙ୍ଖଚିଲ /

ଚୂରିବାକୁ ହେବ ଶୋଷଣଗଡ /

ତୋଳିବାକୁ ହେବ /

ଲାଲ୍ ମୁଣାଇ ରକ୍ତନାଡ /'' ( ପାଟଣାଣୀ ପ୍ରସନ୍ନ - ଶହେ ଏକ କବିତା ପୃ-୩୯ )

ଅନ୍ୟ ଏକ ଉଦାହରଣରେ କବି ଏକ ମୁକ୍ତିର ସକାଳ ଅପେକ୍ଷାରେ ରହିଥିବା ଦେଖାଯାଏ ।

''ସମୁଦ୍ର / ଏକ କୋଳାହଳ /

ଗଣ ସମାବେଶ /

ଲାଲ୍ ପ୍ଲାକାର୍ଡ ଧରି /

ସୂର୍ଯ୍ୟ ଉଠେ /

ଦେଖ ତୋର ବିପ୍ଳବୀର ବେଶ /

+ + + + + + +

ମୁଁ ନାଗଛୁଆ /

ଜନ୍ମ ଦେବି ମୁକ୍ତିର ସକାଳ ।'' ( ପାଟଣାଣୀ ପ୍ରସନ୍ନ - ଶହେ ଏକ କବିତା । ପୃ-୫୨ )

ସାମ୍ୟବାଦୀ ଚିନ୍ତାଧାରା ବିଶ୍ୱର ସର୍ବହରା ନିଷ୍ପେଷିତ ମଣିଷ ପାଇଁ ଥିଲା ଏକ ଆହ୍ୱାନ ।

ସାମ୍ୟବାଦୀ ଚିନ୍ତାଧାରାର ପୃଷ୍ଠପୋଷକ ଭାବେ ଯେଉଁମାନେ ବିଶ୍ୱରେ ସ୍ମରଣୀୟ, ସେମାନଙ୍କ ଭାବାବେଗରେ ପ୍ରଭାବିତ ହୋଇ ନିମ୍ନ ମଧ୍ୟବିତ୍ତ ପରିବାରରେ ଜନ୍ମଗ୍ରହଣ କରିଥିବା କବିଙ୍କ ପାଇଁ ଏହା ଥିଲା ଏକ ସର୍ତ୍ତ । ତେଣୁ ସେ ଅନ୍ୟାୟ, ଶୋଷଣ ଓ ନିର୍ଯାତନା ବିରୋଧରେ ସଂଗ୍ରାମ କରିବା ପାଇଁ ଯୁବକ ଅବସ୍ଥାରୁ ନିଜ ଜୀବନକୁ ଉତ୍ସର୍ଗ କରି ଦେଇଥିଲେ । ଏକ ଶୋଷଣ ମୁକ୍ତ ସାମ୍ୟବାଦରେ ସେ ବିଭୋର ହୋଇ ଗଣ ସଂଗ୍ରାମ ଭିତରକୁ ଲମ୍ଫ ପ୍ରଦାନ କରିଛନ୍ତି । ନିଜର ବ୍ୟକ୍ତିଗତ ବୈପ୍ଳବିକ ଚେତନାକୁ କବିତା ମାଧ୍ୟମରେ ପ୍ରକାଶକରି ଗଣ ସଚେତନତା ସୃଷ୍ଟି କରିବା ଥିଲା ତାଙ୍କର ମୁଖ୍ୟ ଲକ୍ଷ୍ୟ ।

ବୈପ୍ଳବିକ ଆଭିମୁଖ୍ୟକୁ ନେଇ କବି ଯେତେ କବିତା ରଚନା କରିଛନ୍ତି, ସେଥି ମଧ୍ୟରୁ କବିଙ୍କର ଆକାର କବିତା ଏକ ବ୍ୟତିକ୍ରମ । ଏଥିରେ କବିତା ନାମ ଅନୁସାରେ ତା'ର ରୂପ ରଚନା କରାଯାଇଥାଏ । କବିତାର ଏହି ଚିତ୍ରଧର୍ମୀ ଶୈଳୀ ପାଠକକୁ ଆକୃଷ୍ଟ କରେ । ଏପରି ଉପସ୍ଥାପନା ସ୍ୱାଧୀନତା ପରବର୍ତ୍ତୀ କାଳରେ ପାଙ୍ଗଶାଣୀ ହେଉଛନ୍ତି ପ୍ରଥମ ଓ ସ୍ୱତନ୍ତ୍ର । ବିପ୍ଳବର ପ୍ରାଥମିକ ସ୍ତରରେ କବି ଭିତରେ ଯେଉଁ ଉଦ୍ଦାମତା ଦେଖା ଦେଇଥିଲା, ସେହି ବିପ୍ଳବୀ ଆବେଗର ଏହା ଫଳ ସ୍ୱରୂପ । ଏହି ସମୟକୁ ସେ ମାର୍କସ୍ ଓ ଲେନିନ୍‌ଙ୍କ ଦ୍ୱାରା ଯଥେଷ୍ଟ ଭାବରେ ପ୍ରଭାବିତ । ତେଣୁ କବିଙ୍କ ଭିତରେ ଥିବା ପ୍ରଭାବର ସିଧାସଳଖ ଏକ ଦର୍ପଣୀତ ପ୍ରତିଛବି ଘଟିଛି 'ଆକାର କବିତା' ପୁସ୍ତକରେ । ଦେଶର ସାମାଜିକ ଅବ୍ୟବସ୍ଥା ପ୍ରତି ସେ ଖୁବ୍ ପ୍ରତିକ୍ରିୟାଶୀଳ । ପ୍ରତିକ୍ରିୟାର ପ୍ରତ୍ୟକ୍ଷ ପ୍ରକାଶ ହେତୁ ଯଦିଓ ଏହା ପ୍ରଚାରଧର୍ମୀ ହୋଇଛି ତଥାପି ଏଥିରେ କବି ମାର୍କସ୍ ଓ ଲେନିନ୍‌ଙ୍କର ପ୍ରଭାବ, ବ୍ୟକ୍ତିତ୍ୱକୁ କବିତାର ମୁଖ୍ୟ ବିଭବ କରି ପ୍ରକାଶ କରିଛନ୍ତି । ଆକାର କବିତାର ଶବ୍ଦ ସଂଯୋଜନା ଶୈଳୀ, ମଣିଷର ଭୋକ ଓ ଦୁଃଖକୁ ଜୀବନ୍ତ ଭାବେ ଧରି ରଖି ପାରିଛି ।

### (ଖ) ଅଧ୍ୟାତ୍ମବାଦୀ ଧାରା :

ଭାରତୀୟ ସନାତନ ପରମ୍ପରାରେ ଧର୍ମର ବଳିବର୍ଦ୍ଧିତ୍ୱ ଅପେକ୍ଷା ଆଧ୍ୟାତ୍ମିକତାର ପରିଦୃଷ୍ଟି ଥିଲା ସବୁକାଳରେ ମହୋଜ୍ଜ୍ୱଳ । ଧର୍ମର ଉପ୍ସ୍ତଳେ ଆଧ୍ୟାତ୍ମିକତା ଅଗ୍ନିର ଯେଉଁ ଉତ୍ତାପ ଓ ଶକ୍ତି ଲୁଚି ରହିଥିଲା, ତାହାରି ଶୁଦ୍ଧଚର୍ଚ୍ଚା ପାଇଁ ପ୍ରାଗ୍ ଐତିହାସିକ କାଳରେ ରଚିତ ହୋଇଥିଲା ବେଦ ପରେ ବେଦାନ୍ତ । ବେଦର ସବୁ କ୍ରିୟାଚାରକୁ ଅତିକ୍ରମ କରି ଉପନିଷଦ ଗୁଡ଼ିକରେ ବିଶୁଦ୍ଧ ବ୍ରହ୍ମତତ୍ତ୍ୱର ଯେଉଁ ବ୍ୟାଖ୍ୟା କରାଯାଇଥିଲା, ତାହାହିଁ ଥିଲା ଭାରତୀୟ ଆଧ୍ୟାତ୍ମିକତା ଓ ରହସ୍ୟବାଦୀ ଚେତନାର ମୂଳାଧାର । ସେହି ଅଲୌକିକ ଅଜ୍ଞାତ ଶକ୍ତିକୁ ବ୍ରହ୍ମଭାବରେ କଳନା କରି ସକଳ ମାନବ ସମାଜକୁ ''ଅମୃତସ୍ୟ ପୁତ୍ର'' ଭାବରେ ସେଥିରେ ବର୍ଣ୍ଣନା କରାଯାଇଥିଲା । ତେଣୁ ଧର୍ମର ବନ୍ଧନ, କ୍ରିୟାଚାରର ଜଟିଳତା, ସଂଘର ପକ୍ଷପାତିତା, ସ୍ୱାର୍ଥ, ମୋହାନ୍ଧତାକୁ ପରିହାର କରି ଏକ ସାର୍ବଜନୀନ ବିଶ୍ୱ ଚେତନାର ଦୀପ୍ତି ଏଥିରେ ପ୍ରକଟିତ ହୋଇଥିଲା । ପରବର୍ତ୍ତୀ ସମୟରେ ମଧ୍ୟ ଯୁଗରେ ଧର୍ମାନୁଶାସନର କୁଟ୍ଟ ରୀତି ଭିତରେ ଏହି ଭାରତୀୟ ଐକ୍ୟବୋଧ ଓ ମହାମାନବୀୟ ଚେତନା ଯେଭଳି ଭାବରେ ବିଲୁପ୍ତ ହୋଇପଡିଥିଲା ସେଥିରୁ ତାହାକୁ ମୁକ୍ତି ଦେଲେ ଜଗତ୍‌ଗୁରୁ ଆଦି ଶଙ୍କରାଚାର୍ଯ୍ୟ ଓ ତାଙ୍କ ପରବର୍ତ୍ତୀ ମଧ୍ୟଯୁଗୀୟ ସନ୍ଥ ଓ ଯୋଗୀଗଣ । ପ୍ରାଚୀନ ଯୁଗର ଋଷି ଓ ଆର୍ଯ୍ୟମାନଙ୍କ ପରି ଭାରତୀୟ ସନାତନ

ପ୍ରଜ୍ଞାକୁ ଏମାନେ ସାଧାରଣ ଜନଗଣଙ୍କ ପାଖରେ ପହଞ୍ଚାଇବା ପାଇଁ ନିଜସ୍ୱ ରୀତିରେ ଆପ୍ରାଣ ପ୍ରୟାସ କରିଥିଲେ । ମୁଖ୍ୟତଃ ଏମାନେ ଥିଲେ ଭକ୍ତ ଓ କବି । ଲୌକିକ ଭାଷା ଓ ଛନ୍ଦମୟ ଗୀତକୁ ଆଧାର କରି ଏମାନେ ଯେଉଁ ଭଜନ ଓ ଜଣାଣ ଭଳି ଭକ୍ତି ସଙ୍ଗୀତର ସ୍ରୋତ ଫିଟାଇଥିଲେ, ତାହା ସମଗ୍ର ଭାରତୀୟ ମାନସକୁ ସେତେବେଳେ ଭକ୍ତି ରସରେ ଆପ୍ଳୁତ କରି ରଖିଥିଲା ।

ସମାଜର ବିଭିନ୍ନ ଶ୍ରେଣୀ ଓ ବର୍ଣ୍ଣ ଭିତରୁ ସେମାନେ ଆସି ଏକ ବିଶ୍ୱଜନୀନ ମାନବତାବାଦୀ ଐକ୍ୟବୋଧର ପ୍ରଚାର କରିଥିଲେ । ସେମାନଙ୍କର ଧର୍ମ ଓ ଦର୍ଶନର ବିଭେଦତା ସତ୍ତ୍ୱେ ଗୋଟିଏ ନିର୍ଦ୍ଦିଷ୍ଟ ମୌଳିକ ସତ୍ୟ ଓ ଶାଶ୍ୱତ ମୂଲ୍ୟବୋଧର ତତ୍ତ୍ୱହିଁ ସେମାନଙ୍କ ଭକ୍ତି ଗାଥାରେ ଉଦ୍‌ଘୋଷିତ ହେଉଥିଲା । ଅତ୍ୟନ୍ତ ସରଳ ହୃଦ୍ୟ ଓ ଆତ୍ମୀୟ ଭାଷାରେ ବିଭିନ୍ନ ଉପମା ଓ ରୂପକର ସମନ୍ୱୟରେ, ରହସ୍ୟ ପୂର୍ଣ୍ଣ ଭାବରେ ସେମାନେ ନିଜ ନିଜର ଭକ୍ତିଗୀତରେ ସମାଜର ତଥାକଥିତ ଭ୍ରଷ୍ଟାଚାରିତା, ଛଳନା, ମୂଲ୍ୟହୀନ ଅହଂକାର ଓ ଆଡମ୍ବର, ସର୍ବୋପରି ମତାନ୍ଧ କ୍ରିୟାଚାର ବିରୋଧରେ ସେମାନେ ସମାଜର ସାଧାରଣ ଲୋକଙ୍କୁ ସଚେତନ କରୁଥିଲେ । ସତ୍ୟନିଷ୍ଠା, ଅନାବିଳ ପ୍ରତ୍ୟୟ, ସର୍ବଜୀବ ପ୍ରତି ସମଦର୍ଶନ ଓ ସର୍ବମାନବୀୟ ସଂହତି ବୋଧ ଥିଲା ଏହି ସବୁ ସନ୍ଥ ସାହିତ୍ୟର ଭାବନିର୍ଯ୍ୟାସ ।

ଯେତେବେଳେ ବିଶାଳ ହିନ୍ଦୁ ସାମ୍ରାଜ୍ୟର ପତନ ହେଲା, ରାଜନୈତିକ ଆକ୍ରମଣ ସହିତ ସାଂସ୍କୃତିକ ଆକ୍ରମଣରେ ଭଗ୍ନପୃଷ୍ଠ ସନାତନ ଭକ୍ତିଧର୍ମ ସଙ୍କଟମୟ ଅବସ୍ଥାରେ ରହିଲା । ସେତେବେଳେ ବିଭୁପ୍ରେରିତ ଦୂତ ଭଳି ଏହି ସନ୍ଥମାନେ ପଦବ୍ରଜରେ ଭ୍ରମଣ କରି ଜନସାଧାରଣଙ୍କ ଭିତରେ ଭୌତିକ ଚେତନାକୁ ଉଦ୍‌ବୁଦ୍ଧ କରୁଥିଲେ । ବିଭିନ୍ନ ଭେକ ଧରି ବହୁ ଭାବରେ ଜନମାନସକୁ ଆକର୍ଷଣ କରି ଶାଶ୍ୱତ କଥାକୁ ସଦ୍ୟରୂପ ଦେଇ ମାନବଧର୍ମ ପ୍ରଚାର କରୁଥିଲେ, କ୍ଷଣଭଙ୍ଗୁର ସାଂସାରିକ ମୋହକୁ ଅତିକ୍ରମ କରି ଶାଶ୍ୱତ ମୂଲ୍ୟବୋଧର ପ୍ରତିଷ୍ଠା ପାଇଁ ଆହ୍ୱାନ ଦେଉଥିଲେ । ଶ୍ରଦ୍ଧା ଓ ବିଶ୍ୱାସ ଭିତରେ ହିଁ ଭକ୍ତିଧର୍ମର ନିରାଜନା କରିବା ପାଇଁ ଅଭିଜାତଠାରୁ ଆରମ୍ଭ କରି ଅବହେଳିତ ପର୍ଯ୍ୟନ୍ତ ସମସ୍ତଙ୍କୁ ଶିକ୍ଷା ଦେଉଥିଲେ । ବିଭିନ୍ନ ସଂସ୍କୃତିର ସଂଘର୍ଷ ଓ ସମନ୍ୱୟ ଭିତରେ ବିଭିନ୍ନ ତତ୍ତ୍ୱର ସମ୍ମିଶ୍ରଣ ଓ ସଂଶ୍ଳେଷଣ ଭିତରେ ଗୋଟିଏ ସଂହତିର ସ୍ୱରହିଁ ସଷ୍ଟ ହୋଇ ଉଠୁଥିଲା । ତାହା ହେଉଛି ଧର୍ମଉପରେ ଆଧ୍ୟାତ୍ମିକତାର, ଦେବତ୍ୱ ଉପରେ ମାନବତ୍ୱର ଓ କୁଟିଳତା ଜଟିଳତା ଉପରେ ଶ୍ରଦ୍ଧା ଓ ବିଶ୍ୱାସର ମହତ୍ତର ସ୍ୱର । ଏହିଭଳି ନାଥ ସମ୍ପ୍ରଦାୟ, ତିରୁମଲ୍ଲ ଅଲୱାର ମାନଙ୍କଠାରୁ ଆରମ୍ଭ କରି ଜ୍ଞାନେଶ୍ୱର, ବିଦ୍ୟାପତି, କବୀର, ଶଙ୍କର ଦେବ, ନାନକ, ଚଣ୍ଡୀଦାସ, ମୀରାବାଈ, ରୂପ ଗୋସ୍ୱାମୀ ଓ ଜୀବ ଗୋସ୍ୱାମୀ, ସୂରଦାସ, ହରିଦାସ, ତୁକାରାମ, ରାମାନନ୍ଦ ଓ ତୁଳସୀ ଦାସ ପ୍ରଭୃତି ଭାରତର ବିଭିନ୍ନ ପ୍ରାନ୍ତରେ ବହୁ ସନ୍ଥକବି ମାନଙ୍କ ଦ୍ୱାରା ସେହି ଆଧ୍ୟାତ୍ମିକ କାବ୍ୟଧାରା ପରିପୁଷ୍ଟ ହୋଇଥିଲା ।

ଓଡିଆ ସାହିତ୍ୟରେ ଏହି ଭାବଧାରାର ପ୍ରବର୍ତ୍ତକ ଥିଲେ ପଞ୍ଚସଖାର ସାଧକଗଣ । ଶ୍ରୀ ଚୈତନ୍ୟ ଦେବଙ୍କ ରାଗାନୁଗା ଭକ୍ତିଧର୍ମ ଭିତରେ ଉତ୍କଳୀୟ ଜ୍ଞାନମିଶ୍ରା ଭକ୍ତି ଚେତନାର ସମନ୍ୱୟରେ ଏମାନେ ଏକ ଅଭିନବ ବିପ୍ଳବର ସୂତ୍ରପାତ କରିଥିଲେ । ବଳରାମ ଦାସଙ୍କ ଭକ୍ତିମତ୍ତା, ଅତିବଡୀ ଜଗନ୍ନାଥ ଦାସଙ୍କର ଭାଗବତର ସାର୍ବଜନୀନତା, ଅଚ୍ୟୁତାନନ୍ଦଙ୍କର ନିର୍ଗୁଣ ଦର୍ଶନ ଆଦି ଆଧ୍ୟାତ୍ମିକ ବିଜ୍ଞାନର ପୃଷ୍ଠଭୂମି ଉପରେ ରଚିତ ହୋଇଥିଲା । ପୁଣି କାବ୍ୟଯୁଗର ଶେଷ ଆଡକୁ କବିସୂର୍ଯ୍ୟ, ଗୋପାଳକୃଷ୍ଣ,

ବନମାଳୀ ଓ ଅନ୍ଧକବି ଭୀମ ଭୋଇ ପ୍ରଭୃତିଙ୍କ ପଦାବଳୀରେ ଓ ଆହୁରି ଅନେକ ଅନାଲୋଚିତ ସନ୍ଥ କବିଙ୍କ ଭଜନ, ଜଣାଣରେ ସେହି ଧାରାଟିର ଜୀବନ୍ତ ରୂପ ଦେଖିବାକୁ ମିଳିଥିଲା ।

ଆଧୁନିକ କାଳରେ ଭକ୍ତକବି ମଧୁସୂଦନଙ୍କ ବହୁ ବ୍ରହ୍ମବାଦୀ କବିତା ଭିତରେ ଯେଉଁ ରୋମାଣ୍ଟିକ୍ ଏକେଶ୍ୱରବାଦ ଓ ଅତୀନ୍ଦ୍ରିୟ ଚେତନା ପୂରି ରହିଛି ବା ଆହୁରି ପରବର୍ତ୍ତୀ ସମୟରେ ସବୁଜ କବି ବୈକୁଣ୍ଠନାଥଙ୍କର ବହୁ କବିତାରେ ଯେଉଁ ରହସ୍ୟବାଦୀ ଆଧ୍ୟାତ୍ମିକତାର ସ୍ପର୍ଶ ମିଳେ, ତାହା ଏହି ସୁପ୍ରାଚୀନ ପରମ୍ପରାର ଉତ୍ତରାଧିକାର ଘେନି ଜନ୍ମ ଲାଭ କରିଛି ଓ ସେଥିରେ ଆସି ମିଳିତ ହୋଇଛି ରୋମାଣ୍ଟିକ ଆବେଗ ବୋଧ, ନିଓକ୍ଲାସିକ ନବମାନବତା ଓ ନିଓ ରୋମାଣ୍ଟିକ୍ ଅନ୍ତର୍ଗୁଢ଼ ବ୍ୟଥା । ଆଧୁନିକ ଭାରତର ଶ୍ରେଷ୍ଠଶିଳ୍ପୀ କବି ଗୁରୁ ରବୀନ୍ଦ୍ରନାଥଙ୍କ କାବ୍ୟରଚନାରେ ଯେପରି ପ୍ରେମ ଓ ଜ୍ଞାନ ଉଭୟ କାବ୍ୟଧାରାର ଏକ ଅଦ୍ଭୁତ ସମନ୍ୱୟ ସାଧିତ ହୋଇଥିଲା, ତାହା ଅନ୍ୟତ୍ର କ୍ୱଚିତ୍ ଦେଖିବାକୁ ମିଳେ । ବିଭିନ୍ନ ଯୁଗରେ ଇଂରେଜୀ ସାହିତ୍ୟରେ ୱାଡସୱାର୍ଥ, ବ୍ଲେକ୍ ଓ ସୁଇନ୍‌ବର୍ଣ୍ଣଙ୍କ କାବ୍ୟସୃଷ୍ଟିରେ ଯାହା ପ୍ରକଟିତ ହୋଇଥିଲା, ତାହାକୁ ଆହରଣ କରି ଆମ ସଂସ୍କୃତିର ଆଧ୍ୟାତ୍ମିକ କାବ୍ୟଦର୍ଶନ ସହିତ ତାହାକୁ ସମିଶ୍ରିତ କରି ମଧୁସୂଦନ, ଗୋପବନ୍ଧୁ ଓ ବୈକୁଣ୍ଠନାଥ, ପରବର୍ତ୍ତୀ କାଳରେ ସୀତାକାନ୍ତ ପ୍ରଭୃତି କବି ମାନଙ୍କର ରଚନାରେ ସେହି ଆଧ୍ୟାତ୍ମିକ ଭାବ ସୁଷମା ଫୁଟି ଉଠିଛି । ରବୀନ୍ଦ୍ରନାଥ ମନ୍ଦିର, ମସ୍‌ଜିଦ୍, ଗୀର୍ଜାରେ ଠାକୁର ନାହାନ୍ତି, ଦଳିତ ହୃଦୟରେ ଦେବତା ଅଛନ୍ତି ବୋଲି ଯେଉଁ ତତ୍ତ୍ୱର ଅବତାରଣା କଲେ ତାହା ବହୁ କବିଙ୍କୁ ଆକୃଷ୍ଟ କରିଥିଲା । ଆଧ୍ୟାତ୍ମିକତା ଏଣିକି ଆଉ ନିର୍ଦ୍ଦିଷ୍ଟ ଧର୍ମକୁ କେନ୍ଦ୍ରକରି କାବ୍ୟ କବିତା ପ୍ରକାଶ ପାଇଲା ନାହିଁ ବରଂ ମାନବ ପ୍ରାଣ ଅନ୍ତର୍ଶୁଦ୍ଧିକୁ ସୂଚିତ କଲା ।

ରେନେସାଁ ପ୍ରଭାବିତ ସାହିତ୍ୟରେ ଈଶ୍ୱର ଅପେକ୍ଷା ମଣିଷର କଥା ଅଧିକ କୁହାଗଲା । ମଣିଷକୁ ଦେବତାଠୁ ବଡ କରି ଦିଆଗଲା । ସାହିତ୍ୟରୁ ନିର୍ଦ୍ଦିଷ୍ଟ ଧର୍ମ ତଥା ଈଶ୍ୱର ସମ୍ପର୍କିତ ଚିନ୍ତାଧାରା ଦୂରେଇ ଯାଇ ତା' ଜାଗାରେ ଦେଖାଦେଲା ବିଶ୍ୱମାନବତା ବାଦ ।

ଆଲୋଚ୍ୟ କବି ପ୍ରସନ୍ନ ପାଟଶାଣୀ ଭାରତୀୟ ସଂସ୍କୃତି ଓ ପରମ୍ପରାକୁ କେବେ ବି ଅସ୍ୱୀକାର କରି ନାହାନ୍ତି । ଆଧୁନିକ କବି ଭାବରେ ସେ ଆଗକୁ ଯେତେ ଗତି କରିଛନ୍ତି, ସେତିକି ପରମ୍ପରା ପ୍ରତି ଦୃଷ୍ଟି ରଖିଛନ୍ତି । ପୁରାଣ ପରମ୍ପରାଠାରୁ ସେ କେବେବି ବିଚ୍ଛିନ୍ନ ହୋଇନାହାନ୍ତି ।

> '' ସତ୍ତ୍ୱାନୁରୂପା ସର୍ବସ୍ୟ ଶ୍ରଦ୍ଧା ଭବତି ଭାରତ
>
> ଶ୍ରଦ୍ଧାମୟୋଽୟଂ ପୁରୁଷୋ ଯୋ ଯଚ୍ଛ୍ରଦ୍ଧ ସଃ ଏବସଃ ।''
>
> (ଶ୍ରୀମଦ୍ ଭାଗବତ ଗୀତା ୧୭/୩ )

ପୁରୁଷ ଶ୍ରଦ୍ଧାମୟ ଅଟେ । ଯାହାର ଯେପରି ଶ୍ରଦ୍ଧା ବା ଯିଏ ଯେପରି ଶ୍ରଦ୍ଧାକୁ ଆମୃଣ କରେ ସେ ସ୍ୱୟଂ ଶ୍ରଦ୍ଧାରୂପ ହୋଇଥାଏ । କବିଙ୍କର ଏମିତି ଗୋଟିଏ ଶ୍ରଦ୍ଧାରୂପ ପ୍ରତି ଆକର୍ଷଣ ଥିବା ତାଙ୍କ କବିତାରେ ଦେଖିବାକୁ ମିଳେ । ବିପ୍ଲବ ପର୍ଯ୍ୟାୟର ରଚନାଠାରୁ ଆରମ୍ଭ କରି ନିହାତି ରୋମାଣ୍ଟିକ୍ କବିତା ମାନଙ୍କରେ ମଧ୍ୟ ମଣିଷ ପ୍ରତି ଅନ୍ତରଙ୍ଗ ଶ୍ରଦ୍ଧାର ଅଫୁରନ୍ତ ଫଲ୍‌ଗୁ କବିତାର ଅନ୍ତରାଳରେ ତାଙ୍କର ରହିଛି । ଏହି ସଶ୍ରଦ୍ଧ ଦୃଷ୍ଟିହିଁ ତାଙ୍କର ଆଧ୍ୟାତ୍ମିକତା । ଏହା ତାଙ୍କୁ ଅତି ମାତ୍ରାରେ ମାନବବାଦୀ କରିଛି ।

କବି କେଉଁଠାରେ ପରମ୍ପରାରୁ ବିଚ୍ୟୁତ ହେବାକୁ ଚେଷ୍ଟା କରିନାହାନ୍ତି । ବରଂ ତାଙ୍କର କାବ୍ୟିକ ସୌନ୍ଦର୍ଯ୍ୟକୁ ଆହୁରି ତୀବ୍ର ଓ ଶାଣିତ କରିବା ପାଇଁ ସେ ପରମ୍ପରାରୁ ଉପାଦାନ ଗ୍ରହଣ କରିଛନ୍ତି । କବି ଅତି ମାନବିକ ସ୍ତରରେ ଜୀବନ ଯାପନ କରେ । ସାଧାରଣ - ଚେତନା, ସାଧାରଣ ଆବେଗଠାରୁ ଊର୍ଦ୍ଧ୍ୱରେ ରହିଥିଲେ ମଧ୍ୟ ସେ ସାଧାରଣ ଚେତନାଠାରୁ ଅଲଗା ହୋଇପାରେ ନାହିଁ, କାରଣ ଏହି ସାଧାରଣ ସ୍ତରରୁ ହିଁ ତା'ର ବିକାଶ ଆରମ୍ଭ ହୋଇଥାଏ । କବି ଚେତନ ସ୍ତରରେ ବିପ୍ଳବକୁ ବିଶ୍ୱାସ କରେ । ରୂପାନ୍ତରକୁ ବିଶ୍ୱାସ କରେ । ଜୀବନର ଆରୋହ ଓ ଅବରୋହ ମଧ୍ୟରେ ସେ ଯେଉଁ ଲକ୍ଷ୍ୟ ହାସଲ କରେ ବା ଯେଉଁ କେନ୍ଦ୍ରବିନ୍ଦୁକୁ ଆଖି ଆଗରେ ରଖି ଗତି କରେ ତାହା ତା'ର ଚୈତ୍ତିକ ସ୍ତରର ଉତ୍ତରଣ ବା ମାନସିକ ଉତ୍‌ଥାନ । କବି ନିକଟରେ ଏହା ଆହୁରି ଶୀଘ୍ର ଆତ୍ମପ୍ରକାଶ କରେ । ଏ ପ୍ରକାର ଚୈତ୍ତିକ ରୂପାନ୍ତରଣ କବିଙ୍କୁ ନିରୀଶ୍ୱରବାଦୀ କରାଏ ନାହିଁ । କାରଣ ଚେତନାକୁ କେନ୍ଦ୍ରକରି ଯେତେସବୁ ରୂପାନ୍ତରଣ କବିଠାରେ ଘଟେ, ଯେତେସବୁ ଅତିମାନବିକ ମୂଲ୍ୟବୋଧ ଜନ୍ମନିଏ, ସେ ସବୁକୁ ଆଧ୍ୟାତ୍ମିକ ଦର୍ଶନର ଅନ୍ତର୍ଭୁକ୍ତ କରାଯାଇ ପାରିବ । କବି ପାଟଶାଣୀ ଏହିପରି ଏକ ଚୈତ୍ତିକ ରୂପାନ୍ତରକୁ ଦେଖିଛନ୍ତି ନିଜ ଭିତରେ । ଆଖିଥିବା ପର୍ଯ୍ୟନ୍ତ ସେ ତୀବ୍ର ଭାବରେ ଆତ୍ମ ଦର୍ଶନର ସୁଯୋଗ ପାଇ ନଥିଲେ । ଅନ୍ଧ ହୋଇ ସ୍ଥୂଳ ଚକ୍ଷୁ ହରାଇବା ପରେ ସେ ନିଜକୁ ଅନ୍ତର୍ଦୃଷ୍ଟିରେ ଦେଖି ପାରିଛନ୍ତି । ଐଶୀଚେତନା ସହିତ ସମ୍ପୃକ୍ତ ହୋଇ ପାରିଛନ୍ତି । ଫଳରେ କବିଙ୍କର କାବ୍ୟସ୍ୱର ବଦଳି ଯାଇଛି ।

ଏଠାରେ କାବ୍ୟସ୍ୱର ଆଉ ଈଶ୍ୱର ବିରୋଧୀ ନୁହେଁ, ଏଠି ବିପ୍ଳବ ରକ୍ତର ନୁହେଁ । ଆଧ୍ୟାତ୍ମିକ ଚେତନାର । କବିତାର ସ୍ଥାନ ଏଠି ଅତିମନ ବା ଅତିମାନସର । କବି ପାଟଶାଣୀଙ୍କୁ ଆଧ୍ୟାତ୍ମିକ ଈଶ୍ୱରାନୁଚିନ୍ତାଠାରୁ ଅଲଗା କରି ହୁଏ ନାହିଁ । ପାଟଶାଣୀଙ୍କ ଭିତରର କାବ୍ୟ ପରୁଷଟି, ଯିଏ ଶାସ୍ତ୍ର, ତତ୍ତ୍ୱ ଓ ଗୀତା ଦର୍ଶନର ଜୀବନ୍ତ ମଣିଷଟିଏ । ଯାହାକୁ ଉପଲବ୍ଧି କରାଯାଏ, ମଣିଷର ସୁଖ, ଦୁଃଖ ଓ ହସକାନ୍ଦକୁ ନେଇ ରଚିତ ''କିଛି ଲୁହ କିଛି ଲହୁ'' (୧୯୮୪) କବିଙ୍କର ଆଧ୍ୟାତ୍ମିକ କାବ୍ୟଗ୍ରନ୍ଥ ଭିତରେ ।

କବି ନିଜ ଭିତରେ ଈଶ୍ୱରଙ୍କୁ ଆବିଷ୍କାର କରିଛନ୍ତି । ଯେତିକି ଯେତିକି ଆତ୍ମଦର୍ଶନର ସୁଯୋଗ ପାଇଛନ୍ତି, ସେତେ ମଣିଷର ଦୁଃଖ ତାଙ୍କୁ ଆବୋରି ବସିଛି । ଏକ ଆନ୍ତରିକ ବିଷାଦଭାବହିଁ କବିତାରେ ସର୍ବତ୍ର ଦେଖାଯାଏ । ଯେହେତୁ ଆନନ୍ଦରୁ ଏହାର ସୃଷ୍ଟି । ଆତ୍ମାର ସ୍ୱରୂପ ମଧ୍ୟ ଆନନ୍ଦମୟ ଅଟେ । ଆଧ୍ୟାତ୍ମିକତାର ଅନ୍ୟନାମ ପ୍ରସନ୍ନତା । ନିଜେ ନିଜ ଭିତରେ ପ୍ରଥମେ ଆନନ୍ଦିତ ହେବାକୁ ହୁଏ । ଏହାଦ୍ୱାରା କବିର ସର୍ବତ୍ର ଏକ ପ୍ରେମମୟ ଦୃଷ୍ଟି ସଞ୍ଚରି ଯାଏ । ''ପ୍ରେମର ଅନୁଭବ ଭିତରେ ଘେରି ରହେ ଏକ ଅନ୍ତର୍ନିହିତ ବେଦନା ବୋଧ, ଯାହା ଜଙ୍ଗଲର ଅନ୍ଧାର ରାତି ଓ ତାରା ପରି ସୁନ୍ଦର କେତେବେଳେ ପୁଣି ଭିତ୍ତିପ୍ରଦ ଓ ଆଉ କେତେବେଳେ ଶାଶ୍ୱତର ଆହ୍ୱାନ ଓ ମୃତ୍ୟୁର ଆଭାସ ପରି ।'' (ମହାପାତ୍ର, ସୀତାକାନ୍ତ - ଭିନ୍ନ ଆକାଶ ଭିନ୍ନ ଦୀପ୍ତି । ପୃ-୨୪୪ )

ଅବଶ୍ୟ କବିଙ୍କର କବିତା ଭିତରେ ଯେଉଁ ବେଦନା ବୋଧ ରହିଛି, ତା'ହିଁ ତାଙ୍କର ଆନନ୍ଦର ଉପଜୀବ୍ୟ । ଏହି ବେଦନାବୋଧହିଁ ଶାଶ୍ୱତ ପ୍ରତି କବିଙ୍କୁ ଆକୃଷ୍ଟ କରିଛି, କବିତାରେ ଆଧ୍ୟାତ୍ମିକ ଦର୍ଶନ ହୋଇ ପ୍ରକାଶ ପାଇଛି ।

ମାନବିକତା, ବିଶ୍ୱଭାତୃତ୍ୱବୋଧ ଓ ଈଶ୍ୱରାନୁଚିନ୍ତା ଆଦି ଆଧ୍ୟାତ୍ମିକତାର ଅନୁସଙ୍ଗ । ଦେଣୁ କବିଙ୍କର ମାନବବାଦୀ ଆଭିମୁଖ୍ୟକୁ ଆଧାର କରି ଯେତେ ସବୁ ଚିନ୍ତାଧାରା କବିତାରେ ପ୍ରକାଶ ପାଇଛି, ସେସବୁ ଆଧ୍ୟାତ୍ମିକ ଦର୍ଶନ ହୋଇ ଈଶ୍ୱରାନୁଭୂତିର ଉପାୟ ଭାବରେ ଦେଖା ଦେଇଛି । ଏହି ଦୃଷ୍ଟିରୁ କବି ପାଟଶାଣୀ ଈଶ୍ୱରାନୁଭୂତିର ଚରମ ସୀମାରେ ପହଞ୍ଚି ପାରିଛନ୍ତି । ଜାଗତିକ ଦୁଃଖକୁ ନିଜର ଦୁଃଖରେ ମିଶାଇ ଦେଇଛନ୍ତି । ମଣିଷର ବେଦନା ଓ ନୈରାଶ୍ୟ ଭିତରେ କବି ଶୁଣିଛନ୍ତି ସୃଜନ ସଙ୍ଗୀତ । ନୂତନ ପ୍ରତ୍ୟାଶାରେ କବି ବିଭୋର ହୋଇଛନ୍ତି । ଉତ୍କଳୀୟ ପରମ୍ପରାକୁହିଁ ଶ୍ରେଷ୍ଠ ମଣିଛନ୍ତି । ଜଗନ୍ନାଥ ସଂସ୍କୃତି କବିଙ୍କୁ ପ୍ରେରଣା ଦେଇଛି । ଜୀବନର ଓଁକାର ଶୁଣିଛନ୍ତି କବି ଏହି ସଂସ୍କୃତିର ଆତ୍ମା ଭିତରେ । ତେଣୁ ''କିଛି ଲୁହ କିଛି ଲହୁ'' କବିତାରେ ଦେଖା ଦେଇଥିବା କବି ପ୍ରାଣର ଶାଶ୍ୱତ ଦୁଃଖହିଁ ତାଙ୍କୁ ଈଶ୍ୱର ବିଶ୍ୱାସୀ କରାଇଛି । ଅନ୍ଧ ହୋଇ ରହିବା ଅପେକ୍ଷା ଜଗନ୍ନାଥଙ୍କ ଆଖିରେ ଏକାତ୍ମ ହୋଇଯିବା ଆନନ୍ଦ ବେଶୀ । ସେ ଆତ୍ମଲୀନ ହୋଇ ଯିବାକୁ ଭଲ ପାଇଛନ୍ତି । ସମର୍ପିତ ହୃଦୟର କଥା କହିଛନ୍ତି -

'ଅନ୍ଧକାରଟିଏ ହୋଇ ଚିରଦିନ ପୋତି ହୋଇ

ରହିବାକୁ ଚାହେଁ ସେଇ କାଳିଆ ଆଖିରେ ।' (ପାଟଶାଣୀ ପ୍ରସନ୍ନ - 'କିଛି ଲୁହ କିଛି ଲହୁ' ପୃ-୧୫ )

ଜଣେ ଶୁଦ୍ଧବାଦୀ ଶିଳ୍ପୀ ଭାବରେ କବିଙ୍କର ନିଜସ୍ୱ ଦୃଷ୍ଟିକୋଣ ଓ ମୌଳିକତା ରହିଛି । ଇନ୍ଦ୍ରିୟଉପଲବ୍ଧ ଅନୁଭୂତିର ବାହାରେ ଆଉ ଏକ ଅତିନ୍ଦ୍ରୀୟ ଚେତନା କବିଙ୍କ ମାନସିକତାକୁ ଘେରି ରହିଛି । କବି ନିଜ ଅଗ୍ରଜମାନଙ୍କ ଠାରୁ ଦୂରରେ ରହି ଏମିତି ଏକ ବାଟ ତିଆରି କରିଛନ୍ତି ଯେ, ଯାହା ତାଙ୍କର ପାଠକମାନଙ୍କୁ ସ୍ୱତନ୍ତ୍ର କରିଛି । ଏ ବାଟ ସରଳତାର । କବିଙ୍କର ଦିବ୍ୟାନୁଭୂତି ଜନିତ ଦାର୍ଶନିକତା ଓ କାବ୍ୟ ପ୍ରୟୋଗରେ ରୂପକର ବହୁଳତା ଥିଲେ ମଧ୍ୟ ଏଗୁଡ଼ିକ ଖୁବ୍ ସରଳ । ଏକଥା ସତ ଯେ, ବେଳେ ବେଳେ ସରଳତାହିଁ ବିରାଟ ଦର୍ଶନକୁ ଧରି ରଖେ । 'କିଛି ଲୁହ କିଛି ଲହୁ' କବିତା ପୁସ୍ତକରେ ଏହି ସରଳତା ପ୍ରାଣସ୍ପର୍ଶୀ । କବିର ଜିଜ୍ଞାସୁ ଦୃଷ୍ଟି ସବୁଠି ଶାଣିତ । ଏହି ଦୃଷ୍ଟି କୋଣ କେତେବେଳେ ସୌନ୍ଦର୍ଯ୍ୟର ରୂପ ନେଇଛି ତ ପୁଣି କେତେ ବେଳେ ଆଧ୍ୟାତ୍ମିକ ଅଭିପ୍ସା (Spiritual anguish ) ଭିତର ଦେଇ କବିଙ୍କଠାରେ ଆନନ୍ଦ ଲାଭରେ ପର୍ଯ୍ୟବସିତ ହୋଇଛି । ଏହି ଆନନ୍ଦହିଁ ଭଗବତ ଚିନ୍ତନର ଆନନ୍ଦ । '' ଭଗବତ ଅନୁଚିନ୍ତନରେ କବି ପୂର୍ଣ୍ଣତଃ ଈଶ୍ୱର ବିଶ୍ୱାସୀ ହୋଇପଡ଼ିଛନ୍ତି । ଈଶ୍ୱରଙ୍କୁ ଜାଣିବାପାଇଁ କବି ଏକ ନିଭୃତ କକ୍ଷରେ ତାଙ୍କର ଦିବ୍ୟଦର୍ଶନ ପାଇବା ପାଇଁ ସତେ ଯେପରି ଅନ୍ଧ ହୋଇ ପଡ଼ିଛନ୍ତି । (ପାଟଶାଣୀ ପ୍ରସନ୍ନ - କିଛି ଲୁହ କିଛି ଲହୁ । ମୁଖବନ୍ଧ - ପୃ-ଛଅ ।)

ଏହି ଦୃଷ୍ଟିରୁ ପାଟଶାଣୀଙ୍କ କବିତା ଅନୁଧ୍ୟାନ କଲେ ଜଣାଯାଏ, କବିର ସାଧନା ତାଙ୍କ ପାଇଁ ସାମୟିକ ନୁହେଁ । ବରଂ ରାଜନୀତିକ ତଥା ବାସ୍ତବ ଜୀବନର ବ୍ୟବସ୍ଥା ଭିତରେ କବି କବିତାକୁ ସବୁବେଳେ ଏକ ଆନ୍ତରିକ ଦୃଷ୍ଟିରେ ଦେଖିଛନ୍ତି । ପ୍ରକୃତି ଓ ମଣିଷକୁ ଅନୁଶୀଳନ କରିବାରେ ଉଭୟ ଗଭୀରତା ଓ ଆନ୍ତରିକତା ହିଁ ତାଙ୍କୁ ଅଧିକ ସିଦ୍ଧି ଆଣି ଦେଇଛି । ସମଧିକ ଭାବରେ ଏହି ଆନ୍ତରିକତା ଈଶ୍ୱର ଭକ୍ତି ପରମ୍ପରା ପ୍ରୀତିରେ ପ୍ରତିଫଳିତ । ନୂତନତାକୁ ଖୋଜିବାକୁ ଯାଇ କବି ପୁରୁଣା ପରମ୍ପରା ଭିତରେ ହଜି ଯାଇଛନ୍ତି । ଦୁର୍ଘଟଣାରେ ଅନ୍ଧ ହୋଇଯିବା ପରେ କବି ନିଜର ଏକକ ସତ୍ତା ଭିତରେ ଅନେକର ଅନୁଭବ କରିଛନ୍ତି । ନିଜ ଦୁଃଖରେ ବୁଡ଼ି ନ ରହି ସର୍ବ ମଣିଷର ଦୁଃଖକୁ ଅନୁଭବ କରିଛନ୍ତି ।

କବିଙ୍କର କୌଣସି ପରିସ୍ଥିତିରୁ ଏହି ଈଶ୍ୱରାନୁଭୂତି ଜନ୍ମ ନେଇନାହିଁ । ଏହା କବି ଚେତନାର ଏକ ମୌଳିକ ଅନୁଭବ । କବି ସାମ୍ୟବାଦୀ ବିପ୍ଳବୀ କବିତା ଲେଖୁଥିଲା ବେଳେ ଏହି ଚିନ୍ତାଧାରାଟି ବଳିଷ୍ଠ ଭାବରେ ପ୍ରକାଶିତ ହେବାର ସୁଯୋଗ ପାଇନଥିଲା । ଆଖି ଦୁର୍ଘଟଣା ସାଙ୍ଗକୁ ବିପ୍ଳବୀ ଜୀବନରୁ ଓହରି ଆସିଲା ପରେ ଆଧ୍ୟାତ୍ମ ଚିନ୍ତାଧାରା ତାଙ୍କ କାବ୍ୟରେ ସ୍ପଷ୍ଟ ରୂପ ନେଇଛି । ସତୁରୀ ପୂର୍ବରୁ ଓଡିଆ କବିତା ଓ ସେଥିରେ ପ୍ରତିଫଳିତ ଆଧ୍ୟାତ୍ମିକ ଚେତନାକୁ ଦେଖିଲେ ଜଣାଯିବ, ଯେତେବେଳେ କବି ସରା ଭିତରେ ନୈରାଶ୍ୟ ଦେଖା ଦେଇଛି, ସେତେବେଳେ ଜୀବନକୁ ସାମ୍ନା କରିବାର ସମସ୍ତ ସାହାସ ହରାଇ ଉପାୟହୀନ ଭାବେ ସେ ଭାରତୀୟ ଧର୍ମଦର୍ଶନ ପାଖରେ ଆତ୍ମସମର୍ପଣ କରିଛି । ଆଧ୍ୟାତ୍ମିକ ଅନୁଚିନ୍ତା ଏଠାରେ କାବ୍ୟ ନାୟକ ପାଇଁ ଏକ ପ୍ରୟୋଜନ ଭାବରେ ଦେଖା ଦେଇଥିଲା । ତେଣୁ ଗୁରୁପ୍ରସାଦ ମହାନ୍ତିଙ୍କ ନିଃସଙ୍ଗ କାବ୍ୟନାୟକ ସେହି ଉପନିଷଦୀୟ ଦର୍ଶନ ନିକଟରେ ଆତ୍ମସମର୍ପଣ କରିଛି । ମାତ୍ର ସତୁରୀ ପରବର୍ତ୍ତୀ କବି ପାଟଶାଣୀଙ୍କ ବେଳକୁ ପ୍ରଚଳିତ ଧାରାରେ ଅନେକ ପରିବର୍ତ୍ତନ ଆସିସାରିଛି । ଏ ସମୟରେ କବିର ପରମ୍ପରା ମୋହ ଓ ଈଶ୍ୱର ଆସକ୍ତି ଆସିଛି କବିତାରେ । କବି ପାଟଶାଣୀ ଅନୁଭବ କରିଥିଲେ ଯେ ଭାରତୀୟ ଆଧ୍ୟାତ୍ମିକ ପରମ୍ପରା ହେଉଛି ଏକମାତ୍ର ଆଶ୍ରୟ, ଯାହାକି ବଞ୍ଚିବା ପାଇଁ ଆଶା ସୃଷ୍ଟି କରିପାରିବ । ତେଣୁ ଏ ସମୟର କବିତାରେ ଯେଉଁ ଈଶ୍ୱରାନୁ ଚିନ୍ତାର ପ୍ଲାବନ ଦେଖାଦେଲା ତାହା କବିର ସ୍ୱଭାବିକ କାବ୍ୟିକ ତଥା ନୈତିକ ଉତ୍ତରଣ । ସବୁଠାରୁ ଗୁରୁତ୍ୱ ପୂର୍ଣ୍ଣ କଥା ହେଉଛି, ଏସବୁ କବିତାରେ ଈଶ୍ୱରଙ୍କ ନିର୍ଦ୍ଦିଷ୍ଟ ସ୍ୱରୂପ ତଥା ତାଙ୍କର ପ୍ରଚାର ହୋଇନାହିଁ । ତାଙ୍କର ଐଶୀଅନୁଭବକୁ କବି ପ୍ରକୃତି ଭିତରେ ତଥା ଲକ୍ଷ ଲକ୍ଷ ନିରନ୍ନ ମଣିଷର ଆତ୍ମା ଭିତର ଦେଇ ପ୍ରକାଶ କରିଛନ୍ତି । ନିଜକୁ ସେଥିପାଇଁ ଅନ୍ୟର ଦୁଃଖରେ ମିଶାଇ ଦେଇଛନ୍ତି । ପୃଥିବୀର ସକଳ ଯନ୍ତ୍ରଣାକୁ ନିଜେ ସହି ମଣିଷର ମୁକ୍ତି ପାଇଁ ପ୍ରାର୍ଥନା କରିଛନ୍ତି । ''କିଛି ଲୁହ, କିଛି ଲହୁ''ର ସମଗ୍ର କବିତାରେ ଏକ ଅନ୍ତର୍ନିହିତ ବେଦନା ବୋଧରେ କବି କୁହୁଳି ଉଠନ୍ତି । ଏହାକୁ କିଛି ମାତ୍ରାରେ ରହସ୍ୟବାଦୀ କବି ବୈକୁଣ୍ଠନାଥ ପଟ୍ଟନାୟକଙ୍କର ରୋମାଣ୍ଟିକ୍ ବିଷାଦବୋଧ ସହିତ ମଧ୍ୟ ତୁଳନା କରାଯାଇ ପାରେ । କାରଣ ପ୍ରତି ମୁହୂର୍ତ୍ତରେ ଏମିତି କିଛି ଦୁଃଖହିଁ କବି ପାଟଶାଣୀଙ୍କୁ ଐଶୀଚେତନା ଆଡକୁ ଅଧିକରୁ ଅଧିକ ଆକର୍ଷିତ କରିଛି ।

ଏକ ରୋମାଣ୍ଟିକ୍ ଆବେଗ ଭିତରେ କବି ଯେଉଁ ତ୍ୟାଗର କଥା ଶୁଣାଇଛନ୍ତି, ତାହା ସମସାମୟିକ ଅନ୍ୟ କବିତାରେ ବିରଳ ।

''ପୃଥିବୀର ସବୁ କଣ୍ଟାଗୁଡିକ

ମୋ ଆଖିରେ ଫୁଟି ଯାଉଛନ୍ତି ସୁନ୍ଦରୀ

ତୋର ଆଉ ଡରିବାର ନାହିଁ

ତୁ ଆ ଈଶ୍ୱରୀ

ତୋ ପାଦରେ କଣ୍ଟା ଫୁଟିବାର ନାହିଁ ।'' ( ପାଟଶାଣୀ ପ୍ରସନ୍ନ - କିଛି ଲୁହ କିଛି ଲହୁ । ପୃ-୨୧ )

କବିଙ୍କର ଏହି ମନୋଭାବକୁ ଲକ୍ଷ୍ୟକଲେ ମନୁସଂହିତା ସ୍ମରଣକୁ ଆସେ । ନିଜେ କଷ୍ଟରେ ରହି ମଧ୍ୟ ଅନ୍ୟକୁ କଷ୍ଟ ନଦେବାହିଁ ଧର୍ମ । ଅନ୍ୟମାନଙ୍କ ପ୍ରତି ଦ୍ରୋହ କରାନଯାଉ । ଅନ୍ୟମାନଙ୍କୁ କଷ୍ଟ ଦେବା ଭଳି ବାଣୀ ବୋଲା ନଯାଉ । ସଂହିତାର ଏହି ଆଧ୍ୟାତ୍ମିକ ଭାବନା କବିଚେତନାକୁ ଗଭୀର ଭାବେ ପ୍ରଭାବିତ କରିଛି ।

''ମାରନ୍ତୁଦଃ ସ୍ୱାଦାର୍ତୋଽପି ନ ପରଦ୍ରୋହ କର୍ମଧୀଃ

ଗାୟାଽସ୍ୟୋ ଦ୍ୱିଜତେ ବାଚାନା ଲୋକ୍ୟଂ ତାମୁଦାରୟେତ୍ ।''(ମନୁସଂହିତା, ୨/ ୧୬୧ ) କବିଙ୍କର ମଣିଷ ପ୍ରତି ଓ ପରମ୍ପରା ପ୍ରତି ଗଭୀର ଅନ୍ତର୍ଦୃଷ୍ଟି ଥିବା ଯୋଗୁଁ ତାଙ୍କ କବିତାରେ ଏପରି ଗୈରିକ ଚେତନା ପ୍ରତିଫଳିତ ହୋଇଛି । ତେଣୁ ତାଙ୍କର 'କିଛି ଲୁହ କିଛି ଲହୁ' ସମ୍ପୂର୍ଣ୍ଣ କବିତା ପୁସ୍ତକଟି ଆଧ୍ୟାତ୍ମିକ ଅନୁଚିନ୍ତା ଓ ଚେତନାର ସ୍ତରକୁ ସ୍ପର୍ଶ କରିଛି ।

ସେହିପରି 'ବାଘ ଆଁ ଭିତରେ ପିକ୍‌ନିକ୍' କବିତା ପୁସ୍ତକରେ କବି ଜଣେ ବିପ୍ଲବୀ ସତ, ମାତ୍ର ତା'ଠାରୁ ଅଧିକ ଦରଦୀ । ଦରଦୀ କାବ୍ୟ ପୁରୁଷ ଅନ୍ୟର ଭୋକ ଦେଖି ସହି ପାରିନାହିଁ । 'ରକ୍ତାକ୍ତ ପନିକି ଓ ମାଛର ଡୋଳା' କବିତାରେ ସେଥିପାଇଁ କହିଛନ୍ତି -

''ପୋଡ ନାହିଁ ମୋର ଶବ

ରକ୍ତକୁ ଅଙ୍ଗାର କରି ଲାଭ କ'ଣ ?

ଜାଳ ନାହିଁ ଈର୍ଷାର ଜୁଇ

ମୋ କୋକେଇ କାଠରେ ଯଦି ଜଳେ କା'ର ଚୁଲି,

ଅନ୍ୟକୁ କ୍ଷୁଧାରେ ମାରି ଲାଭ କ'ଣ ?'' (ପାଙ୍କଶାଣୀ ପ୍ରସନ୍ନ - 'ବାଘ ଆଁ ଭିତରେ ପିକ୍‌ନିକ୍' । ପୃ-୧୭ ) ଏଠାରେ ସ୍ପଷ୍ଟ ଅନୁଭୂତ ହୁଏ, କବି ଭାରତୀୟ ସଂସ୍କୃତି ଓ ଆଧ୍ୟାତ୍ମିକ ପରମ୍ପରାକୁ ଆତ୍ମସ୍ଥ କରିଛନ୍ତି ।

କାବ୍ୟ ସତ୍ତା କେବେ ଦିବ୍ୟସତ୍ତା ବା ଈଶ୍ୱରଙ୍କୁ ସାକାର ତ କେବେ ନିରାକାର ଭାବେ ଗ୍ରହଣ କରିଛି । କବି ଏଠାରେ ସୂକ୍ଷ୍ମଦର୍ଶୀ । ସେ ଈଶ୍ୱରଙ୍କ ସୂକ୍ଷ୍ମ ତଥା ନିରାକାର ସ୍ୱରୂପକୁ ଅନୁଭବ କରିଛି । କବି ଚେତନାରେ ଏହି ଦିବ୍ୟସତ୍ତା ଯେତେବେଳେ ଦୃଶ୍ୟମାନ ହୁଅନ୍ତି ସେତେବେଳେ କବି ପ୍ରକୃତି ମାଧ୍ୟମରେ ତାଙ୍କୁ ଦେଖି ପାରେ । ଶରୀର ଭିତରେ ମନ, ବୁଦ୍ଧି, ବିବେକ ଓ ଅହଙ୍କାରକୁ ଦେଖି ନ ପାରିଲେ ମଧ୍ୟ ଯେଉଁପରି ଏ'ଗୁଡିକର ଉପସ୍ଥିତିକୁ ଅନୁଭବ କରାଯାଏ, ସେହିପରି କବି ଈଶ୍ୱରଙ୍କୁ ଅନୁଭବ କରିଛନ୍ତି ।

ଚେତନାର କୌଣସି ଏନାଟୋମିକାଲ ବା ଫିଜିକାଲ ଗଠନ ନାହିଁ । ସବୁବେଳେ ଏହାକୁ ଅନୁଭବ କରାଯାଏ । ବ୍ୟକ୍ତିସତ୍ତା ନିଜ ଭିତରୁ ବାହାରି ଯେତିକି ପ୍ରକୃତି ସହିତ ତଦାତ୍ମ୍ୟ ସ୍ଥାପନ କରେ, ସେତେ ଅଧିକ ସେ ବ୍ରହ୍ମାଣ୍ଡୀୟ ଚେତନାର ନିକଟବର୍ତ୍ତୀ ହୁଏ । ପ୍ରକୃତିର ସୌନ୍ଦର୍ଯ୍ୟ ଭିତରେ ଭଗବତ୍ ସତ୍ତାର ଅନୁଭବ ସମ୍ଭବ ହୁଏ । କବି ପ୍ରକୃତିକୁ ଅନୁଭବ କରୁକରୁ ପ୍ରକୃତିର ଅଲୌକିକତା ପ୍ରତି ସଚେତନ

ହୁଏ । ଏହି ଅଲୌକିକତା କବିର ଅନୁଭବକୁ ରହସ୍ୟମୟ କରି ତୋଳେ । ସୌନ୍ଦର୍ଯ୍ୟ ଓ ରହସ୍ୟର ସମ୍ମିଶ୍ରଣରେ ଏକ ଆଧ୍ୟାତ୍ମିକ ଚେତନା ସୃଷ୍ଟି ହୁଏ କବିତାରେ । କବିର ସୌନ୍ଦର୍ଯ୍ୟାନୁଭୂତି ପାର୍ଥିବ ନୁହେଁ । ଏହା ଅପାର୍ଥିବ, ଅତିନ୍ଦ୍ରିୟ ସ୍ତରରେ ପ୍ରକୃତିକୁ ଅନୁଭବ କଲାବେଳେ ତା'ର ରହସ୍ୟମୟ ପ୍ରକାଶକୁ କବି ଏକ ଆଧ୍ୟାତ୍ମିକ ଚେତନା ଦେଇ ପ୍ରକାଶ କରେ ।

ଅନୁଭବର ଏହି ଅତୀନ୍ଦ୍ରିୟତା ଦ୍ୱାରା କବି ବସ୍ତୁ ଜଗତର ଭିଭିନ୍ନତା ମଧ୍ୟରେ ଐକ୍ୟ ପ୍ରତିଷ୍ଠା କରେ । ସେ ଈଶ୍ୱରାନୁଭୂତିର ବଳିଷ୍ଠ ସ୍ଥିତିରେ ପହଞ୍ଚେ । ''ଜୀବନର ପ୍ରୟୋଜନ ବୋଧ ସହିତ ସୌନ୍ଦର୍ଯ୍ୟ ଓ ବିସ୍ମୟ ବୋଧର ସମ୍ମିଳନରୁ ଶିଳ୍ପକଳାର ସୃଷ୍ଟି । ରହସ୍ୟ ଓ ବିସ୍ମୟର ଅନୁଭୂତିହିଁ ଶିଳ୍ପୀର ଶ୍ରେଷ୍ଠତମ ଅନୁଭୂତି । ପ୍ରତ୍ୟେକ ଶିଳ୍ପ ସୃଷ୍ଟିର ରଣ୍ଟାତରେ ଶିଳ୍ପୀପ୍ରାଣର ଜୀବନ ଓ ଜଗତ ପ୍ରତି ଏହି ମୌଳିକ ରହସ୍ୟାନୁଭୂତି ବିଦ୍ୟମାନ ।'' ( ବେହେରା ଚିନ୍ତାମଣି - ''କଳା ଦୃଷ୍ଟି'', ପୃ-୩ )

କବି ପ୍ରାଣର ସୌନ୍ଦର୍ଯ୍ୟାନୁଭୂତି ମାଧ୍ୟମରେ ଈଶ୍ୱରଙ୍କୁ ଉପଲବ୍ଧି କରିବାର ଏକ ବିଶେଷ ଶକ୍ତିଥାଏ । ନିଜର ଭାବଶକ୍ତି ଦ୍ୱାରା ସେ ଏହାକୁ ନିଜ ଅନ୍ତର ଭିତରେ ବିକଶିତ କରାଏ । ପ୍ରକୃତିକୁ କେନ୍ଦ୍ରକରି କବିର ଭାବାବେଗ ଯେତେ ଅଧିକ ହୁଏ, ତା'ର ଐଶୀ ଅନୁଭବ ସେତେ ଶାଣିତ ହୁଏ । ଏହି ପ୍ରକୃତି ପ୍ରତିଥିବା ଆତ୍ମୀୟତା ଓ ଅନ୍ତରଙ୍ଗ ଦୃଷ୍ଟିକୋଣ କବି ପାଢଶାଣୀଙ୍କର ଅଧିକାଂଶ କବିତାରେ ଲକ୍ଷ୍ୟ କରାଯାଏ । ପ୍ରକୃତି ହିଁ ତାଙ୍କର ସକଳ ପ୍ରେରଣାର ଉତ୍ସ । ଯାହା ତାଙ୍କ ସମସାମୟିକ ଅନ୍ୟାନ୍ୟ ଆଧୁନିକ କବିତାରେ ଦୁଷ୍ପ୍ରାପ୍ୟ । କବି କେତେ ବେଳେ ପ୍ରକୃତିର ଅଜ୍ଞାତ ରହସ୍ୟରେ ସଂତ୍ରସ୍ତ, ପୁଣି କେତେବେଳେ ପ୍ରକୃତିର ସୌନ୍ଦର୍ଯ୍ୟରେ ଆତ୍ମହରା । ଐଶୀ ଅନୁଭବ ପାଇଁ ସେ ତାଙ୍କର କବିତାରେ ସୌନ୍ଦର୍ଯ୍ୟକୁ ପ୍ରାଧାନ୍ୟ ଦେଇଛନ୍ତି ।

ସୌନ୍ଦର୍ଯ୍ୟର ସକଳ ପ୍ରଭାବକୁ ବାଦ୍ ଦେଲେ ମଧ୍ୟ ସେ ଜଣେ ସାଧାରଣ ଯୋଗୀ ଭାବରେ ଭାରତୀୟ ଧର୍ମ, ଦର୍ଶନ ସହିତ ତାଙ୍କର ଯେଉଁ ସମ୍ପର୍କ ରହିଛି, ତା'ର ପ୍ରଭାବ କବିତାରେ ଅନୁଭୂତ ହୁଏ । ଖୁବ୍ ସରଳ ଓ ସାଧାରଣ ଶବ୍ଦମାନଙ୍କ ଜରିଆରେ ବିରାଟ ଦାର୍ଶନିକତାକୁ ସେ ପ୍ରକାଶ କରିଛନ୍ତି । ଏହି ଦୃଷ୍ଟିରୁ ତାଙ୍କର 'ସାପ ଗାତରେ ସକାଳ' କବିତା ପୁସ୍ତକର କେତେକ କବିତା ଉଲ୍ଲେଖଯୋଗ୍ୟ । ଏପରିକି 'ଦେଖା ହେଲେ କହିବି ସେ କଥା' ପରି ରୋମାଣ୍ଟିକ୍ ପ୍ରେମ କବିତା ମାନଙ୍କରେ ବେଳେ ବେଳେ ଏହି ଦାର୍ଶନିକତା ପ୍ରକାଶ ପାଇଛି । କବି ନିଜ ବିଷାଦବୋଧ ଭିତରେ ରହି ଏତେ ମାତ୍ରାରେ ନିଜ ମଧ୍ୟରେ ଆତ୍ମସ୍ଥ ହୋଇଯାଉଛନ୍ତି ଯେ, ଫଳରେ କବିର ବକ୍ତବ୍ୟ ସ୍ୱତଃ ଏକ ଦାର୍ଶନିକ ସତ୍ୟକୁ ପ୍ରକାଶ କରିଛି । କବିତା ଗୁଡ଼ିକରେ ପ୍ରକାଶିତ ଦୁଃଖ, ବିଷାଦ ସାଧାରଣ ସ୍ତରରୁ ଦାର୍ଶନିକ ସ୍ତରକୁ ଚାଲି ଯାଇଛି । ଯେଉଁ ଦୁଃଖ ଭିତରୁ ସେ ସମସ୍ତ ଆନନ୍ଦକୁ ଚିପୁଡ଼ି ବାହାର କରିଛନ୍ତି, ବାସ୍ତବ ସତ୍ୟର ରୂପ ଧରି ଏସବୁ ପ୍ରକାଶ ପାଇଥିଲେ ମଧ୍ୟ ଏହା କବିଙ୍କୁ ବାସ୍ତବତାଠାରୁ ଅନେକ ଦୂରକୁ ନେଇ ଯାଇ ପାରିଛି ସତ, ମାତ୍ର କଳ୍ପନାର ସିଡ଼ିରେ କବି ଯେଉଁଠି ପହଞ୍ଚିଛନ୍ତି, ତାହା ସାଧାରଣ କଳ୍ପଲୋକ ନୁହେଁ, ଅତି କଳ୍ପନାର ସ୍ତର । ଅତି କଳ୍ପନା ଭିତରୁ ହିଁ ଏ' ପ୍ରକାର ଦାର୍ଶନିକତା, ଏ' ପ୍ରକାର ବାସ୍ତବ ସତ୍ୟ ( Rational Truth ) ଆସିଛି । ଦୁଃଖର ବହିଃରୂପ ଅପେକ୍ଷା ଅନ୍ତଃସତ୍ତା କବିଙ୍କୁ ବେଶୀ ଗ୍ରାସ କରିଛି । ପ୍ରକୃତ ପକ୍ଷେ ଦେଖିବାକୁ ଗଲେ କବିସତ୍ତା ଯେଉଁ ମୁହୂର୍ତ୍ତରେ ଈଶ୍ୱର ସତ୍ତାର

ନିକଟବର୍ତ୍ତୀ ହୋଇଛନ୍ତି, ସେହିଠାରୁ ଦାର୍ଶନିକ ଚିନ୍ତା, ଆଧ୍ୟାତ୍ମିକ ଚେତନା, ବିଶ୍ୱଭାବ, ମାନବବାଦ ପରି ଭାବନା କବିତାରେ ପ୍ରକାଶ ପାଇଛି ।

ମଣିଷର କଳ୍ପନା, ବାସ୍ତବତା, ସାମ୍ପ୍ରତିକତା ସହିତ ବେଳେ ବେଳେ ଏକ ତୃତୀୟ ଦିଗର ସନ୍ଧାନ ମିଳେ କବିମାନଙ୍କ ସୃଷ୍ଟିରେ । ଯାହାକୁ କି ଆଧ୍ୟାତ୍ମିକ ଚେତନା କୁହାଯାଏ । ଏତିକି ବେଳେ କବି ଜୀବନରେ କ୍ଷୁଦ୍ରତାଠାରୁ ବହୁ ଉର୍ଦ୍ଧ୍ୱରେ ଏକ ଦିବ୍ୟ ଦୃଷ୍ଟିପାଏ । ଏହି ଦିବ୍ୟ ଦୃଷ୍ଟିରେ କବି ଏକ କ୍ଷଣିକ ସୁଖରୁ ଯାଇ ଏକ ଚିରନ୍ତନ ସୁଖକୁ ସବୁବେଳେ କବିତା ମାଧ୍ୟମରେ ଅନ୍ୱେଷଣ କରେ ।

''ବଞ୍ଚିବାର ଲଢେଇରେ ଆକତା ହୋଇ
ପହଁରୁଥିବା ପହଁରାଳୀର ଦୀପଦାଣ୍ଡି ତୁମେ
ଅଝାଳ ସମୁଦ୍ରର ଝଡରେ
ଭାସୁଥିବା ଗୋଟିଏ ମଣିଷ ପାଇଁ
ହୁଲି ଡଙ୍ଗାଟିଏ ତୁମେ
ନଦୀ ସୁଅର ଭଉଁରୀରେ
ବୁଡି ଯାଉଥିବା ମଣିଷ ପାଇଁ
ଡାଳ ଖଣ୍ଡିଏ ତୁମେ
ଅମରନାଥ ଭକ୍ତର ଭକ୍ତି ତୁମେ
ମରଣ ଆଗରେ ଅମର ତୁମେ ।'' (ପାଟଶାଣୀ ପ୍ରସନ୍ନ - 'ଅମରନାଥ' । ପୃ-୧୭ )

ଏଥିରେ କବିଙ୍କର ଊର୍ଦ୍ଧ୍ୱାୟିତ ଚେତନା ଲକ୍ଷ୍ୟ କରାଯାଏ । ଜୀବନ ସଂଘର୍ଷ ଜନିତ ଦୁଃଖ ଯନ୍ତ୍ରଣା ମଧ୍ୟରେ ଈଶ୍ୱର ଯେ ଆନନ୍ଦ ଦାୟକ, ଜୀବନ ସହାୟକ ଭାବେ ଠିଆ ହୋଇଛନ୍ତି ମଣିଷର ଅନୁଭବ ଭିତରେ ।

''ମୋ କବିତାର ଅକ୍ଷରସବୁ ଫୁଟୁଛନ୍ତି ତାରା ହୋଇ
ଆକାଶର ନୀଳବଗିଚାରେ - ତମରି ପାଦରେ
ଫୁଲ ହୋଇ ଲୋଟୁଛନ୍ତି ।'' (ପାଟଶାଣୀ ପ୍ରସନ୍ନ - କିଛି ଲୁହ କିଛି ଲହୁ । ପୃ-୪ )

କବି ନିଜର କବିତା ଓ କବିତ୍ୱକୁ ଈଶ୍ୱରଙ୍କ ପାଖରେ କରିଛନ୍ତି ସମର୍ପିତ । କବିତାକୁ ଏକ ଦିବ୍ୟ ଭାବରେ ମଣ୍ଡିତ କରିଛନ୍ତି । ଅସୀମ ନୀଳ ଆକାଶର ତାରା ଭଳି ତାଙ୍କ କବିତା । ଯାହା ଭଗବାନଙ୍କ ପାଦତଳେ ଫୁଲ ପରି ଶୋଭା ପାଉଥିବ ଚିରଦିନ । କବି ପାଟଶାଣୀଙ୍କ ଦୃଷ୍ଟିରେ ଆତ୍ମାହିଁ ଅନ୍ତର୍ଯ୍ୟାମୀ ଭଗବାନ । ସେହି ସର୍ବତ୍ର ପ୍ରକାଶ ମୟ ଭଗବାନଙ୍କୁ ସେ ମନର ଭିତରେ ନ ଖୋଜି ଉପଲବ୍ଧି କରିଛନ୍ତି ଫୁଟିଲା ଫୁଲର ମହକ ଭିତରେ, ସଙ୍ଗୀତର ମାଧୁର୍ଯ୍ୟ ଭିତରେ । ଯେପରି -

''ଆତ୍ମା ଅନ୍ତର୍ଯ୍ୟାମୀ
ଫୁଟିଲା ଫୁଲର ଭରା

ସଙ୍ଗୀତ ମାଧୁରୀ ।''( ପାଢଶାଣୀ ପ୍ରସନ୍ନ - ନୀଳନୂପୁର । ପୃ-୨୬ ।)ମଣିଷର ମୁକ୍ତି ବା ବ୍ୟକ୍ତିତ୍ୱ ସବୁ ଏକ ବ୍ରହ୍ମ ସଂସ୍ପର୍ଶ ଦ୍ୱାରା ନିୟନ୍ତିତ । ସେଥିପାଇଁ କବି ବେଶୀ ଐହିକ ଅପେକ୍ଷା ପାରତ୍ରିକ ଜୀବନରେ ବିଶ୍ୱାସୀ । ଯେତେବେଳେ ବ୍ରହ୍ମସହିତ ଜୀବନର ସଂପର୍କ ଘଟେ, ସେଠାରେ ଏକ ମହାସମ୍ବନ୍ଧ ସୃଷ୍ଟିହୁଏ । ଯାହାକୁ କବି ନିଜର ଉପଲବ୍ଧି ଜନିତ ଏକ କାବ୍ୟିକ ଚେତନା ବୋଲି ମନେ କରନ୍ତି । କବିର ଏହି ଆଧ୍ୟାତ୍ମିକ ଉପଲବ୍‌ଧି ଆତ୍ମାନୁସନ୍ଧାନ ବା ଆତ୍ମ ବିଶ୍ଳେଷଣରୁ ସୃଷ୍ଟି ହୁଏ । ଫଳରେ ବାହ୍ୟଦୃଷ୍ଟି ଅନ୍ତର୍ଦୃଷ୍ଟିରେ ପରିଣତ ହୁଏ । ଭକ୍ତି ଓ ସମ୍ବେଦନା ସାନ୍ଦ୍ର ହୋଇ ଯେତେବେଳେ ଶାବ୍ଦିକରୂପ ପରିଗ୍ରହଣ କରେ, ସେତେବେଳେ ତାହା ମଣିଷର ଆତ୍ମାର ଜୟଗାନ ପାଇଁ ଅଭିପ୍ରେତ ହୋଇଥାଏ । ବିଶ୍ୱର ସକଳ ମଣିଷକୁ ଆପଣାର କରି ଅନୁଭବ କରିବାର ଶକ୍ତି ବୃଦ୍ଧିପାଏ । ବିଶ୍ୱର ସକଳ ମଣିଷକୁ ନିଜ ଭିତରେ ଅନୁଭବ କରିହୁଏ । କବିର ବ୍ୟକ୍ତିସତ୍ତା ନିଜ ଭିତରେ ନିଜସ୍ୱ ଚିନ୍ତାରେ ବୁଡି ରହିପାରେ ନାହିଁ । ନିଜର ଆନନ୍ଦ ଭୋଗ ବିଳାସକୁ ପୃଥିବୀର ଅଧିବାସୀମାନଙ୍କର ମଙ୍ଗଳ ପାଇଁ ତ୍ୟାଗ କରେ । ବିଶ୍ୱର ମଙ୍ଗଳରେ ନିଜର ଆତ୍ମବଳୀକୁ ଜୀବନର ଶ୍ରେଷ୍ଠ ଓ ସାର୍ଥକ ବୋଲି ମନେକରେ । କବି ସକଳ ମଣିଷକୁ ଭଲପାଇ ଏକ ଉଦାରବାଦୀ ଚିନ୍ତାରେ ଉଦ୍‌ବୁଦ୍ଧ ହୁଏ । ଯେପରି -

''ତେଣୁ ଆଜି ମୋର ଦୁଇ ତୋଳା ବନ୍ଦ କରେ ପ୍ରଭୁ /

ବନ୍ଦ ହେଉ ପୃଥିବୀରୁ ଶୋଷଣ ଯାତନା ।

ସମସ୍ତଙ୍କୁ ଆନନ୍ଦରେ ରଖ

ଏତିକି ମୋ କାମନା ।'' (ପାଢଶାଣୀ ପ୍ରସନ୍ନ - 'ଅମରନାଥ' । ପୃ-୩୦ ) ଏତିକି ବେଳେ କବି କାନରେ ସକଳ ମଣିଷର ଦୁଃଖ ପ୍ରତିଧ୍ୱନିତ ହୁଏ । କବି ଅନ୍ତରରେ କୋଟି କୋଟି ମଣିଷଙ୍କର ପ୍ରାଣର ବାର୍ତ୍ତା ଆସି ପହଞ୍ଚିଯାଏ । ଯେପରି -

''ଘାସର ଚାଦର ତଳେ ଶୋଇପାରେ ନାହିଁ

ଉଜାଗର ମାଟି କାନର ପରଦା ତଳେ

ବାଜେ କୋଟି ପାଦର ସୁସୁରୀ ।'' ( ପାଟଶାଣୀ ପ୍ରସନ୍ନ - 'କିଛି ଲୁହ କିଛି ଲହୁ' ପୃ-୫୬ )

କବି ପାଢଶାଣୀ ଜିପ୍ ଦୁର୍ଘଟଣାରେ ଚକ୍ଷୁ ହରାଇଥିବା ସମୟରେ ସେ ବେଶୀ ପରିମାଣରେ ଈଶ୍ୱରୀୟ ଚେତନାରେ ଆପ୍ଳୁତ ହୋଇଛନ୍ତି । ଯାହାର କାବ୍ୟିକ ନିଦର୍ଶନ ତାଙ୍କର 'କିଛି ଲୁହ କିଛଲହୁ' କବିତା ସଂକଳନ । କବି ନିଜକୁ ଅନ୍ଧ କରି ଏକ ବାହ୍ୟଜଗତ ସହିତ ନିଜର ଅନ୍ତଃସତ୍ତାକୁ ଯୋଡିବାରେ ଯେଉଁ ପ୍ରଜ୍ଞା ନିହିତ ଅଛି, ତାହା ଏଠାରେ ଲକ୍ଷ୍ୟ କରା ଯାଇପାରେ ।

''ଈଶ୍ୱର ତମେ ସେହି ଦିଗନ୍ତରେ ଅଛ

ଯେଉଁଠାରେ ଆଲୋକର ଶିଖା ନୁହେଁ

ବାଜୁଥାଏ କାନେ ତବ ଅନ୍ଧର ଜଣାଣ

ଏତିକି ମିନତି ପ୍ରଭୁ ଅନ୍ଧଟିଏ କରି ମୋତେ

ଉଲ୍କାଟିଏ କରି ମୋତେ ରଖ ଚିରଦିନ ।'' ( ପାଟ୍ଟଶାଣୀ ପ୍ରସନ୍ନ - 'କିଛି ଲୁହ କିଛି ଲହୁ' ପୃ-୬ ) ସତେ ଯେପରି କବି ଈଶ୍ୱରଙ୍କୁ ଜାଣିବା ପାଇଁ ଅନ୍ଧ ହୋଇଛନ୍ତି । ଈଶ୍ୱରଙ୍କ ସହିତ ଏକ ଚିରନ୍ତନ ସମ୍ପର୍କରେ ବାନ୍ଧି ହୋଇ ରହିବା ପାଇଁ ଚିରଦିନ ଅନ୍ଧଟିଏ ହୋଇ ରହିବାକୁ ଇଚ୍ଛା ପ୍ରକାଶ କରିଛନ୍ତି ।

''ଈଶ୍ୱର ମୁଁ ତୁମକୁ ଜାଣି ନଥିଲି

ତମକୁ ଜାଣିବା ପାଇଁ ଅନ୍ଧ ହେଲି

ଦେଖିଲି ପୃଥିବୀଟା ଏକ ମାଟିର ଦୀପାଳୀ

ତା ଭିତରେ ଜଳାଉଛ ଜୀବନକୁ ସଳିତା ଭଳି ।'' (ପାଟ୍ଟଶାଣୀ ପ୍ରସନ୍ନ - କିଛି ଲୁହ କିଛି ଲହୁ । ପୃ-୭୭ )ଅତିଭୌତିକ ଚେତନା ଭିତରେ କବି ବେଶୀ ବେଶୀ ଜୀବନ ମନସ୍କ ହୋଇଛନ୍ତି । ଜୀବନର ନନ୍ଦନକାନନ ଭିତରେ ଈଶ୍ୱର ଫୁଲ ହୋଇ ଫୁଟିବାର ଯେଉଁ ଚିତ୍ରକଳ୍ପ ପ୍ରୟୋଗ, ତାଙ୍କ କବିତାରୁ ଉପଲବ୍ଧ ହୁଏ, ତା' ଭିତରେ ଏକ ମଗ୍ନ ଚୈତନ୍ୟ ଏକ ଯଥାର୍ଥ ଆଧ୍ୟାତ୍ମିକ ଉତ୍ତରଣ ଲକ୍ଷ୍ୟ କରାଯାଏ ।

''ତମେ ଅନ୍ଧ ହେଲେ ଜାଣିବ

ଜୀବନର ନନ୍ଦନ୍ କାନନ ଭିତରେ କିପରି

ଈଶ୍ୱର ଫୁଲ ହୋଇ ଫୁଟନ୍ତି ।''(ପାଟ୍ଟଶାଣୀ ପ୍ରସନ୍ନ - କିଛି ଲୁହ କିଛି ଲହୁ । ପୃ-୬ )ଅନ୍ଧ ହୋଇ ମଧ୍ୟ କବି ନିଜକୁ ଆନନ୍ଦର ନଈଟିଏ କରି ଦେବାର ଯେଉଁ ବିଭୋରତା ଆମେ ଦେଖୁ, ତାହା ଏକ ଈଶ୍ୱର ବିଶ୍ୱାସୀ କବିର ଦୃଷ୍ଟିକୋଣ ।

''ମତେ ଆନନ୍ଦର ନଈଟିଏ କରିଦିଅ ପ୍ରଭୁ ମୋର ଦୁଇ ତୋଳାକୁ ଫୁଟେଇ ।'' (ପାଟ୍ଟଶାଣୀ ପ୍ରସନ୍ନ - କିଛି ଲୁହ କିଛି ଲହୁ । ପୃ-୧୯ ) ଚିରକାଳ ମୁକ୍ତିକୁ ଅନ୍ଧାର କହି, ଏହି ଅନ୍ଧାର ଭିତରେ ଯେଉଁ ଅତିଭୌତିକ ଓ ଆଧିଦୈବିକ ଚେତନାର ରୂପ କବି ଅଙ୍କନ କରିଛନ୍ତି । ବାସ୍ତବରେ ଏହା ତାଙ୍କର କାବ୍ୟ ସୃଷ୍ଟିକୁ ମହିମାନ୍ୱିତ କରିଛି ।

ଆଧ୍ୟାତ୍ମିକ ଚେତନା କବିର ହୃଦୟ ଓ ଦୃଷ୍ଟିକୋଣକୁ ବିସ୍ତୃତ ବା ପ୍ରସାରିତ କରେ । ସମଗ୍ର ବିଶ୍ୱକୁ ନିଜ ଭିତରେ ଧରି ରଖିବାର ମାନସିକତା କବି ଭିତରେ ସୃଷ୍ଟିହୁଏ । ଫଳରେ କବି ନିଜେ ବ୍ୟକ୍ତିଗତ ଜୀବନରେ ଦୁଃଖ ଯନ୍ତ୍ରଣାକୁ ବରି ନେଇ ପୃଥିବୀର ମଣିଷମାନଙ୍କର ସୁଖ କାମନା କରନ୍ତି । ଆନନ୍ଦର ନଈଟିଏ ହୋଇ ସକଳ ମଣିଷଙ୍କର ହୃଦୟରେ ବହିଯିବାକୁ ଚାହାନ୍ତି । ସମସ୍ତଙ୍କୁ ଭଲ ପାଇବାର ଏକ ଚେତନା ଦେହ ପ୍ରାଣକୁ ଆବୋରି ରଖେ ।

''ପୃଥିବୀ ଓ ଆକାଶ ଭିତରେ

ଆମକୁ ଧରି ରଖିଥାଏ ଏକ ଭଲ ପାଇବାର ନିଶୁଣୀ ।''(ପାଟ୍ଟଶାଣୀ ପ୍ରସନ୍ନ-'ଛଅଣ ଡେଣାରେ ଭାରତ ' (ଚିତ୍ରା ସାହିତ୍ୟ ପତ୍ରିକା ଶାରଦୀୟ ବିଶେଷାଙ୍କ) । ପୃ-୧୭୩।)କବିଙ୍କର ଗୈରିକ କବିତ୍ୱ ପଛରେ ଈଶ୍ୱରୀୟ ଆଶୀର୍ବାଦକୁ ଅନେକ ସ୍ୱୀକାର କରନ୍ତି । ଏଣୁ କବିମାନେ ସେମାନଙ୍କର

ପ୍ରେରଣା ଭାବେ ଈଶ୍ୱରଙ୍କୁ ନେଇଥାନ୍ତି । ଯେପରି ସାରଳା ଦାସଙ୍କର 'ସାରଳା ଦେବୀ,' ଉପେନ୍ଦ୍ର ଭଞ୍ଜଙ୍କ 'ରାମତାରକ ମନ୍ତ୍ର' ଓ ଇଂରେଜ କବି ମିଲଟନ୍ ଏକ 'Divine Music' ଦ୍ୱାରା ଉତ୍ସାହିତ ହୋଇଥିଲେ । ଏହି ଭାବରେ ଦୈବୀପ୍ରେରଣା ବା ଐଶ୍ୱରୀୟ ପ୍ରେରଣାକୁ ବହୁ କବି ଗ୍ରହଣ କରିଛନ୍ତି । ସେହିପରି ମଧ୍ୟ କବି ପାଟ୍ଟଶାଣୀ ଭାରତୀୟ କବିପରମ୍ପରାର ଆଦର୍ଶକୁ ଗ୍ରହଣ କରିନେଇ ତାଙ୍କ କାବ୍ୟ ସୃଷ୍ଟି ପଥରେ ସେ ଈଶ୍ୱରଙ୍କୁ ପ୍ରେରଣା ଭାବରେ ଗ୍ରହଣ କରିଛନ୍ତି ।

ଈଶ୍ୱରୀୟ ସର୍ଜନାରେ କବି ବନ୍ଦୀ । ଆପଣାର ପରି ଲାଗୁଥିବା ପ୍ରକୃତିର ବଶମ୍ୱଦ ଅନ୍ତରଙ୍ଗତାରେ ସେ ବିମୋହିତ । କବି ଏଠାରେ ଏକ ଅସ୍ତିତ୍ୱ ମୟ ପରମଚେତନା ଓ ଜୀବନର ନଶ୍ୱରତାଠାରୁ ଅବିନସ୍ୱରତାର ଉତ୍ତରଣରେ ବିଶ୍ୱାସ କରନ୍ତି । ଏହି ଧାରଣାକୁ ରୂପକଳ୍ପ ମାଧ୍ୟମରେ ପ୍ରକାଶ କରିଛନ୍ତି । ମାନବ ଜୀବନର ଏକ ଅନ୍ୱେଷଣରେ ବ୍ରତୀ ହୋଇଛନ୍ତି । ଈଶ୍ୱରୀୟ ଚେତନା ସହ ନିଜର କାବ୍ୟ ଚେତନାକୁ ଜଡିତ କରିବାରେ ଶ୍ରେଷ୍ଠତ୍ୱକୁ ସ୍ୱୀକାର କରିଛନ୍ତି । ଯେପରି -

''ମୋ କବିତାର ଅକ୍ଷର ସବୁ ଫୁଟୁଛନ୍ତି ତାରା ହୋଇ ଆକାଶର ନୀଳ ବଗିଚାରେ ।''(ପାଟ୍ଟଶାଣୀ ପ୍ରସନ୍ନ - କିଛି ଲୁହ କିଛି ଲହୁ । ପୃ-୪ )ଆଧ୍ୟାତ୍ମିକ ଚିନ୍ତାରେ କବି ଯେତେବେଳେ ସମ୍ପୂର୍ଣ୍ଣଭାବେ ନିମଗ୍ନ ସେତେବେଳେ ଆକାଶର ନୀଳ ବଗିଚାରେ ଅର୍ଥାତ ଭଗବାନଙ୍କର ଅସୀମ ରାଜ୍ୟରେ ତାଙ୍କ କବିତାର ଅକ୍ଷର ସବୁ ତାରକା ସଦୃଶ ଭଗବାନଙ୍କର ଦିବ୍ୟଜ୍ୟୋତିରେ ଭାସ୍ୱର ହୋଇଉଠିଛି ।

''ଠିକ୍ ସେଇମତି ଈଶ୍ୱର ଏତେ ଅଦ୍‌ଭୂତ କାଣ୍ଡ
କରି ବସନ୍ତି ଯେ, ତାଙ୍କ ଉଦାରତାର ଆଖିଦେଇ
ଖସି ଯାଆନ୍ତି ପାପୀମାନେ, ଧରାପଡି ଦଣ୍ଡପାଆନ୍ତି
କେବଳ ପୁଣ୍ୟାତ୍ମାମାନେ, ପୁଣ୍ୟାତ୍ମାମାନେ,
ମୁଁ ସେଇଭଳି ଦଣ୍ଡିତ ।
ପାପୀଟିଏ ନୁହେଁ, ପୁଣ୍ୟାତ୍ମା ମଣିଷଟିଏ
ଆଖି ହରାଇ ଈଶ୍ୱରଙ୍କୁ ପାଇଛି ।'' (ପାଟ୍ଟଶାଣୀ ପ୍ରସନ୍ନ - 'କିଛି ଲୁହ କିଛି ଲହୁ' ପୃ-୫ ) କବିଙ୍କ ମତରେ ଯେଉଁମାନେ ଧର୍ମପରାୟଣ ତଥା ସାତ୍ତ୍ୱିକ ବା ମହତଜନ ସେମାନେ ଦଣ୍ଡ ପାଇଥାନ୍ତି । ଯେପରି ଯୋଗୀ ଅରବିନ୍ଦଙ୍କ ଗୋଡ ଭାଙ୍ଗିବା ଯନ୍ତ୍ରଣା, ଯୀଶୁଙ୍କ କ୍ରୁଶବିଦ୍ଧ ଯନ୍ତ୍ରଣା, ମହାତ୍ମା ଗାନ୍ଧୀଙ୍କ ଗୁଳିରେ ମୃତ୍ୟୁକାଳୀନ ଯନ୍ତ୍ରଣା, ଶ୍ରୀକୃଷ୍ଣଙ୍କ ଶରାଘାତ ଯନ୍ତ୍ରଣାକୁ କବି ପୁଣ୍ୟାତ୍ମା ଲୋକମାନଙ୍କ ପ୍ରତି ଈଶ୍ୱରଙ୍କର ଦଣ୍ଡ ବୋଲି କହିଛନ୍ତି । ସେହିପରି କବି ନିଜର ଚକ୍ଷୁ ହରାଇଥିବା ଯନ୍ତ୍ରଣାକୁ ଈଶ୍ୱରଙ୍କ ଦଣ୍ଡଭାବରେ ଗ୍ରହଣ କରି ନେଇଛନ୍ତି । ଜୀବନର ସମସ୍ତ ଭଲମନ୍ଦକୁ ଈଶ୍ୱରଙ୍କ ନିକଟରେ ସମର୍ପଣ କରି ଦେଇଛନ୍ତି । ଏହି ସମର୍ପଣଭାବହିଁ ଆଧ୍ୟାତ୍ମିକ ଦର୍ଶନର ମୁଖ୍ୟ ବିଭବ । ଏହି ଆଧ୍ୟାତ୍ମିକ ସମର୍ପଣ ଭାବରେ କବି ପାଟ୍ଟଶାଣୀଙ୍କ କବିତା ଋଦ୍ଧିମନ୍ତ ।

''ଯୀଶୁଖ୍ରୀଷ୍ଟ କ୍ରୁଶବିଦ୍ଧ ଯନ୍ତ୍ରଣା ଭୋଗିଲେ

ବିଷପାନ ତୀବ୍ରଜ୍ୱାଳା ପାଇଥିଲେ ସକ୍ରେଟିସ୍

ଅନ୍ଧ ହେଲେ ମିଲ୍‌ଟନ୍ ଓ ଭୀମ ଭୋଇ

ମହାତ୍ମା ଗୁଳିରେ ମଲେ

କୃଷ୍ଣପାଦ ରକ୍ତମୟ ହେଲା ବ୍ୟାଧର ତୀକ୍ଷ୍ଣ ଧନୁଶରେ

ଠିକ୍ ଅବା ସେହିପରି ମୋର ଏହି ଅନ୍ଧାବସ୍ଥା ତୁମେ ପୁଣି ଧରିପାର ଏକ ଦଣ୍ଡ ବୋଲି ।'' (ପାଟଶାଣୀ ପ୍ରସନ୍ନ - 'କିଛି ଲୁହ କିଛି ଲହୁ' । ପୃ-୫୩ ) ମଣିଷ ଯେତେବେଳେ ସମ୍ପୂର୍ଣ୍ଣ ଈଶ୍ୱର ବିଶ୍ୱାସୀ ହୁଏ, ସେତେବେଳେ ସେ ତା'ର ଅସ୍ତିତ୍ୱକୁ ଭୁଲି ନିଜକୁ ଗୋଟାପଣେ ଈଶ୍ୱରଙ୍କ ଭିତରେ ହଜାଇ ଦିଏ । ଯେପରି -

''ଗାଧୋଇ ଦେବି ଈଶ୍ୱର ତୁମକୁ

କପାଳରେ ତମର ଚନ୍ଦନ ଦେଇ ଗାଧୋଇ ଦେବି,

ମୋ ଦେହର ଚମକୁ ବେଦନାର ଖୁଆରେ

ଘୋରି ଦେବି ଚନ୍ଦନ ତୁମକୁ

ମୋର ରକ୍ତ ହେବ ଧୂପ

ସେଥିରେ ମୁଁ ତମ ପଦେ ଆଳତି କରିବି ।'' (ପାଟଶାଣୀ ପ୍ରସନ୍ନ - 'କିଛି ଲୁହ କିଛି ଲହୁ' । ପୃ-୨୬ )ଏତିକିବେଳେ ମନ ଭକ୍ତିରେ ଜୁଡୁବୁଡୁ ହୋଇଯାଏ । ସେହି ଭକ୍ତିପୂର୍ଣ୍ଣ ହୃଦୟରେ ଈଶ୍ୱର ପୋତିହୋଇ ପଡନ୍ତି ।

''ମନ ହୋଇ ଯାଇଚି ମୋର ଭକ୍ତି

ତା ଭିତରେ ତୁମେ ପୋତି ହୋଇ ପଡିଚ ଈଶ୍ୱର ।'' (ପାଟଶାଣୀ ପ୍ରସନ୍ନ - 'କିଛି ଲୁହ କିଛି ଲହୁ' । ପୃ-୧୧ )

ପାଟଶାଣୀଙ୍କ କବିତାରେ ଆତ୍ମଦର୍ଶନ ଅନ୍ୟ ଏକ ଗୁରୁତ୍ୱପୂର୍ଣ୍ଣ ଅଧ୍ୟାୟ । ଆତ୍ମାକୁ ସେ ସବୁବେଳେ ଈଶ୍ୱର ଭାବରେ ଅଭିହିତ କରିଛନ୍ତି । ମଣିଷର ଜୀବନ ଭିତରେ ଈଶ୍ୱରଙ୍କୁ ଉପଲବ୍ଧି କରିଛନ୍ତି । ଭାରତୀୟ ଆଧ୍ୟାତ୍ମିକ ଦର୍ଶନ ଅନୁସାରେ ଜୀବ ବ୍ରହ୍ମ ପରଂବ୍ରହ୍ମଙ୍କର ଅଂଶ ବିଶେଷ । ସେ ପ୍ରତ୍ୟେକ ମଣିଷର ଶରୀରରେ ଅବସ୍ଥାନ କରିଥାନ୍ତି । ପରଂବ୍ରହ୍ମଙ୍କର ମଙ୍ଗଳମୟ ଇଚ୍ଛାକୁ ବ୍ୟକ୍ତ କରିବା ପାଇଁ ସେହି ଆଲୋକିତ ବ୍ରହ୍ମ ଦେହ ମାଧ୍ୟମ ଦେଇ ପ୍ରକାଶିତ ହୁଏ ।

''ଆଲୋକର ବ୍ରହ୍ମଟିଏ ପୋତି ଦେଇଛ ତୁମେ

ମୋର ଦେହର କିଆରୀ ଭିତରେ

ସେ ବୀଜ ହୋଇ ଫୁଟିଛି

ସେହି ବୀଜର ବାସ୍ନାରେ ଚହଟି ଉଠୁଛି ଦିଗନ୍ତ ।'' (ପାଟଣାଣୀ ପ୍ରସନ୍ନ - 'କିଛି ଲୁହ କିଛି ଲହୁ' । ପୃ-୧୧ )ଆତ୍ମଦର୍ଶନ ଭିତରେ ଈଶ୍ୱରୀୟ ଅନୁଭୂତି ପାଟଣାଣୀଙ୍କ କବିତାର ବିଶେଷତ୍ୱ । ଆତ୍ମା ହିଁ ଈଶ୍ୱର । ସମସ୍ତ ଭୂତର ଅଧିପତି ଭାବେ, ଜୀବ ରୂପରେ ଆତ୍ମ ପ୍ରକାଶ କରେ ।

''ଆତ୍ମା ହିଁ ଈଶ୍ୱର

ବାହାରେ ସେ ଭୂତ ଅଧିପତି

ଭିତରେ ଜୀବନ ।'' (ପାଟଣାଣୀ ପ୍ରସନ୍ନ - ନୀଳ ନୂପୁର । ପୃ-୧୬ ।) ପଞ୍ଚସଖା ଯୁଗର କବିମାନେ ପିଣ୍ଡ ଭିତରେ ସମଗ୍ର ବ୍ରହ୍ମାଣ୍ଡର ପରିକଳ୍ପନା କଲାଭଳି କବି ପାଟଣାଣୀ ଏଇ ଦେହ ଭିତରେ ସମଗ୍ର ବିଶ୍ୱଭୁବନକୁ ଅନୁଭବ କରିଛନ୍ତି ।

''ଏଇ ଦେହରେ ଅଛି ବିଶ୍ୱଭୂବନ

ଏଇ ମନର ବଖରାରେ ଖଟ ପକେଇ

ଶୋଇଛି ସପନ :'' (୬୩) (ପାଟଣାଣୀ ପ୍ରସନ୍ନ - ନୀଳନୂପୁର । ପୃ-୧୮ ।)ଈଶ୍ୱରଙ୍କ ସୂକ୍ଷ୍ମସତ୍ତାର ସ୍ୱରୂପକୁ ହାତ ପାଦ ହୀନ ନିର୍ବିକାର ପୁରୁଷଟିଏ ଭାବରେ ବର୍ଣ୍ଣନା କରିଛନ୍ତି । ଯେପରି -

''ବ୍ୟାପକ ସୂକ୍ଷ୍ମରୁ ସୂକ୍ଷ୍ମ

ପାଦହୀନ ହସ୍ତହୀନ

ଚିରଦିନ ପୁରୁଷଟିଏ ଶୋକରୁ ଅଲଗା

ପାପରୁ ଅଲଗା

ଦୁଧପରି ହଂସର ମୁଖରୁ ।''(ପାଟଣାଣୀ ପ୍ରସନ୍ନ - ନୀଳନୂପୁର ପୃ-୨୬ ) ଆଧ୍ୟାତ୍ମିକ ଦର୍ଶନ ଅନୁସାରେ ଆତ୍ମା ପରମାତ୍ମାଙ୍କର ଅଂଶ ବିଶେଷ । ସକଳ ସୃଷ୍ଟି ଭିତରେ ଆତ୍ମାର ଅବସ୍ଥିତି ଘଟିଛି । ସେ ସକଳ ବସ୍ତୁରେ ପ୍ରକାଶମାନ । ଏକ ନିମଗ୍ନ ଚୁମ୍ବକ ଭଳି ଆତ୍ମା । ମାଟିପିଣ୍ଡ ପ୍ରତି ଆକର୍ଷଣ ଆତ୍ମାର ସୃଷ୍ଟି ଆରମ୍ଭରୁ ଆଜି ପର୍ଯ୍ୟନ୍ତ ରହିଆସିଛି ।

''ଆତ୍ମା ପ୍ରକାଶମୟୀ ଆଛନ୍ନ ସୃଷ୍ଟିକୁ

ନିଜେ ଆଧାରିତ ମାଟିପିଣ୍ଡ ବ୍ରହ୍ମାଣ୍ଡରେ

ଏକ ନିମଗ୍ନ ଚୁମ୍ବକ ।'' (ପାଟଣାଣୀ ପ୍ରସନ୍ନ - ନୀଳନୂପୁର ପୃ-୩୫ ) ଶ୍ରୀମଦ୍ ଭଗବତ ଗୀତାରେ ଅଛି -

''ପରସ୍ତସ୍ମାତ୍ତୁ ଭାବୋଽନ୍ୟୋଽବ୍ୟକ୍ତୋଽବ୍ୟକ୍ତାତ୍ସନାତନଃ ।

ଯଃ ସ ସର୍ବେଷୁ ଭୂତେଷୁ ନଶ୍ୟତ୍ସୁ ନ ବିନଶ୍ୟତି ।'' ( ଶ୍ରୀମଦ୍ ଭଗବତ୍ ଗୀତା - ୮/ ୧୦) । ବ୍ରହ୍ମ ପ୍ରତ୍ୟେକ ଜୀବରେ ସତ୍ତା ଭାବରେ ଥାଏ । ସେ ବ୍ରହ୍ମ ନାଶ ହୁଏ ନାହିଁ । ସେ ଅବିନାଶୀ । ଭୂତମାନେ କେବଳ ନାଶ ଯାଆନ୍ତି । ଅନୁରୂପ ଭାବେ କବି ପାଟଣାଣୀଙ୍କ ଚିନ୍ତାରେ ଲକ୍ଷ୍ୟ କରାଯାଏ ।

"ଅବିନାଶୀ ବ୍ରହ୍ମଚରା ଏ ଭୂତକୁ

ସଚରାଚର ଦେହର ପିଣ୍ଡରେ ।" (୬୭) (ପାଟ୍ଟଶାଣୀ ପ୍ରସନ୍ନ - ନୀଳନୂପୁର । ପୃ- ୪୦ )କବିଙ୍କର ଏହି ଆତ୍ମଦର୍ଶନ "ନିବିଡ ଗୁହାର ବୁଢିଆଣୀ", 'ଶଙ୍ଖନାଦ'., 'ସମୁଦ୍ରର ଦର୍ପଣରେ ବ୍ରହ୍ମାଣ୍ଡର ମୁହଁ' ପ୍ରଭୃତି କବିତାରେ ପ୍ରତିଫଳିତ । ଈଶ୍ୱରଙ୍କ ସହ କବି ନିଜ ବ୍ୟକ୍ତିସତ୍ତା ସମ୍ପର୍କରେ କହିବାକୁ ଯାଇ ଚିରନ୍ତନ ପ୍ରାକୃତିକ ଅନୁସଙ୍ଗର ଚିରାୟତ ଚିତ୍ରଣ କରିଛନ୍ତି ।

"ତୁ ଅନନ୍ତ ଆକାଶୀ ନୀଳିମା

ମୁଁ ଧ୍ୱଂସର ମାଟିର ପୃଥିବୀ ।" ( ପାଟ୍ଟଶାଣୀ ପ୍ରସନ୍ନ - ରକ୍ତପଥ । ପୃ- ୨୬ )

କବି ପାଟ୍ଟଶାଣୀଙ୍କ କବିତାରେ ଭାରତୀୟ ଧାର୍ମିକ ସଂସ୍କୃତି ତଥା ବୈଦିକ ସଂସ୍କୃତିର ଏକ ପାରମ୍ପରିକ ଚିତ୍ର ବିବର୍ତ୍ତିତ ରୂପରେ ପ୍ରତିଫଳିତ ଘଟିଛି । ସମସ୍ତ ଦୃଶ୍ୟମୟ ଜଗତ ଭିତରେ ଅଦୃଶ୍ୟ ଜଗତ୍ ସ୍ରଷ୍ଟାଙ୍କୁ ପ୍ରତିବିମ୍ବିତ କରିଛନ୍ତି ।

" Unseen in the law of nature

sky is your code of conduct

printed the character of

your golden letters of planets and stars

How orderly maintain the silent

atmosphere of the life's book. " (Pattasani Prasanna - Horizon of my Himalayan Dawn. page - 19.)

ପାଟ୍ଟଶାଣୀଙ୍କର 'ଅମରନାଥ' କବିତା ପୁସ୍ତକରେ ଶୈବଦର୍ଶନ ପ୍ରତିଫଳିତ । ଭାରତୀୟ ସଂସ୍କୃତିରେ 'ଶିବ' ଶାଶ୍ୱତ ମଙ୍ଗଳମୟ ରୂପର ପ୍ରତୀକ । ସେ ଅମରନାଥଙ୍କ ଲିଙ୍ଗକୁ ସୃଷ୍ଟି ସର୍ଜନାର ମୂଳ ସୂତ୍ର, ପୂର୍ଣ୍ଣବ୍ରହ୍ମ ଭାବରେ ଗ୍ରହଣ କରିଛନ୍ତି । ଭାରତୀୟ ମୁନିଋଷିମାନଙ୍କର ସିଦ୍ଧି ଓ ସାଧନାର କ୍ଷେତ୍ର ଗୁମ୍ଫାରେ କବି ତପସ୍ୟା କଲାବେଳେ ଏକ ପବିତ୍ର ଅନୁଭବରେ ଶିହରିତ ହୋଇଛନ୍ତି । କବି ସେହି ଗୁମ୍ଫାରେ ଏକ ଅନାସକ୍ତ ସନ୍ନ୍ୟାସୀର ଜୀବନ ନେଇ ନିଜକୁ ଯୋଗୀଟିଏ ଭାବି ଜ୍ୟୋତିର୍ମୟ ପରଂବ୍ରହ୍ମଙ୍କର ଉପାସନା କରିଛନ୍ତି । ଆଧ୍ୟାତ୍ମିକ ସତ୍ୟତାକୁ ଆତ୍ମଜ୍ଞାନ ମାଧ୍ୟମରେ ଉପଲବ୍ଧି କରିବା ପାଇଁ ଯୋଗସାଧନାକୁ ନିଜ ଜୀବନରେ ଏକ ଶ୍ରେଷ୍ଠ ମାର୍ଗ ଭାବେ ଗ୍ରହଣ କରିନେଇଛନ୍ତି । ଯୋଗ ଦ୍ୱାରା ଆତ୍ମା ପରମାତ୍ମାଙ୍କ ସହ ସଂଯୁକ୍ତ ହୁଏ । ମନକୁ ସ୍ଥିର, ଅବିଚଳ ଓ ଏକାଗ୍ର କରେ । ପ୍ରାଣ ଉର୍ଦ୍ଧ୍ୱମୁଖୀ ହୁଏ । ଯୋଗୀ ଶାରୀରିକ ଚେତନାରୁ ଯାଇ ଏକ ଫର୍ଦ୍ଧ୍ୱଚେତନାରେ ରୁହେ । ଯେଉଁଠି ଅନୁଭବ, ସେଇଠି ସେ ଏକ ଆଧ୍ୟାତ୍ମିକ ଆନନ୍ଦ ପାଇବା ପାଇଁ ସମର୍ଥ ହୁଏ ।

" Yourself and me pulled by the rope

of Harmony/

I am deep rooted in your veins

As a life supporting thought

I entered into your soul

after meditation /

Went above and above

In the infinite range."(Pattasani Prasanna - Horizon of my Himalayan dawn, page - 26.) ଭାରତୀୟ ଆଧ୍ୟାତ୍ମିକ ପରମ୍ପରାରେ ଯୋଗ ଏକ ମୁଖ୍ୟ ଅଙ୍ଗ । ଉପନିଷଦ ଯୁଗରେ ଯୋଗର ପ୍ରାଧାନ୍ୟ ଥିଲା । ଯନ୍ତ୍ରଣାମୟ ବସ୍ତୁବାଦୀ ଜୀବନରୁ ମୁକ୍ତି ପାଇଁ ଏହା ଏକ ଉତ୍କୃଷ୍ଟ ମାର୍ଗ । ଯୋଗ ମନୁଷ୍ୟର ଜୈବିକ ମାନସିକ ଓ ଆଧ୍ୟାତ୍ମିକ ଜୀବନକୁ ସ୍ୱର୍ଗୀୟ ସୁଷମାରେ ବିମଣ୍ଡିତ କରେ । କବି ନିଜେ ତାଙ୍କର ଦୈନନ୍ଦିନ ଜୀବନରେ, ଯୋଗସାଧନାରେ ନିମଗ୍ନ ରୁହନ୍ତି, ଏହା ତାଙ୍କ ସଂସ୍ପର୍ଶରେ ଆସିଥିବା ଅଧିକାଂଶ ଜାଣନ୍ତି ।

କବି ପାଟ୍ଟଶାଣୀଙ୍କ କବିତାରେ ରହସ୍ୟବାଦୀ ଚେତନା ମଣିଷର ଆଧ୍ୟାତ୍ମିକ ଅନ୍ୱେଷା ଭାବରେ ପ୍ରତିଫଳିତ । ଜୀବନ ଓ ଜଗତ ଉପରେ ଥିବା ଏକ ମାୟାର ଆବରଣ ବା କୁହେଳିକାକୁ ଛିନ୍ନ କରିବା ପ୍ରୟାସ ସେ କରିଛନ୍ତି । ସ୍ରଷ୍ଟା ଓ ସୃଷ୍ଟି ମଧ୍ୟରେ ଥିବା ଗୂଢ ରହସ୍ୟପୂର୍ଣ୍ଣ ସମ୍ପର୍କକୁ ସ୍ପଷ୍ଟ ଓ ପ୍ରାଞ୍ଜଳ କରିବାକୁ ଯାଇ କବି ତାଙ୍କର " Horizon of my Himalayan dawn " ଶୀର୍ଷକ ଇଂରାଜୀ କବିତା ପୁସ୍ତକରେ କହିଛନ୍ତି - '' ସେ ନିଜେ ଗୋଟିଏ ଜାହାଜ, ସ୍ରଷ୍ଟା ହେଉଛନ୍ତି ତା'ର ଲଙ୍ଗର୍ । ଭଗବାନ୍ ସମୁଦ୍ର, ସେ ତାଙ୍କ ଲହଡି । ଭଗବାନ୍ ଅସୀମ, ସେ ମାତ୍ର ସେହି ଅସୀମତାର ଏକ ବିନ୍ଦୁ । ଭଗବାନ୍ ଜୀବନର ଛନ୍ଦ ଓ ପ୍ରାଣୀ ହୃଦୟର ସ୍ପନ୍ଦନ ।''

" Myself a ship, you are my anchor

I am a wave, you are my ocean

I am a drop, you are my infinity

I am the truth of your devotion

you are the mythem of my emotion

O' bestower of my heart

lead towards Perfection." (Pattasani Prasanna - Horizon of my Himalayan dawn. Page - 13.) 'ତମସୋଃ ମାଂ ଜ୍ୟୋତିର୍ଗମୟ' ରହସ୍ୟବାଦ ଚେତନାର ଏକ ବଳିଷ୍ଠ ଦର୍ଶନପୂର୍ଣ୍ଣ ବାକ୍ୟ । ଏଥିରେ ଅନ୍ଧାରରୁ ଆଲୋକକୁ, ଅଜ୍ଞାନତାରୁ ଜ୍ଞାତକୁ ଗତି କରିବା ଅର୍ଥରେ ବୁଝାଏ । ଯାହା ଦ୍ୱାରା ବ୍ୟକ୍ତି ଏକ ଦିବ୍ୟଭୂଷଣର ଅଧିକାରୀ ହୁଏ । ସେହିପରି କବି ତାଙ୍କର ' Horizon of my himalayan dawn ' କବିତା ପୁସ୍ତକରେ ' Devine light' ର ଉପାସନା କରିଛନ୍ତି । ଜୀବନ ଓ ମୃତ୍ୟୁର ସୂତ୍ର ଖୋଜିଛନ୍ତି । ରହସ୍ୟ ଉନ୍ମୋଚନ କରିବା ପାଇଁ ପ୍ରଯତ୍ନ କରିଛନ୍ତି । ଜନ୍ମ ଓ ମୃତ୍ୟୁର ମୂଳସୂତ୍ର ଶୂନରୁ ଆରମ୍ଭ ହୁଏ । ଏକ ନୀରବତାରେ ଜୀବନ ମିଳେଇଯାଏ ଶେଷରେ ।

" The source of birth and death

starts from zero.-

and ends at funeral flames

of vaccum air in silence." (Pattasani Prasanna - 'Horizon of my Himalayan dawn.' p-19,20.) କବି ନିଜକୁ ଏକ ରଙ୍ଗ ବେରଙ୍ଗ ଗୁଡି ସହ ତୁଳନା କରିଛନ୍ତି । ଈଶ୍ୱରଙ୍କୁ ଏକ ଅଦୃଶ୍ୟପରୀ ସହ ତୁଳନା କରିଛନ୍ତି । ସେହି ଅଦୃଶ୍ୟପରି ହାତର ଗୁଡି ଭଳି ମଣିଷ ଦିଗ୍‌ବଳୟରେ ଉଡୁଥାଏ । ତା'ରି ନିର୍ଦ୍ଦେଶରେ ସବୁ ଘଟୁଥାଏ । ଯାହା ମଣିଷ ଜାଣିପାରେ ନାହିଁ ।

" The enlightement of sunshine

creator of peace

you are the root of eternal tree

of wisdom

ever blessing with flowerly bliss.

x x x x x x x

your fragance ever streaming

in my heart

you are the old moon

ever appearing in the sky

like a new bright ray." (Pattasani Prasanna - Horizon my Himalayan dawn. p-29.) ବିଶାଳ ଶୂନ୍ୟତା, ଅନନ୍ତ ଆକାଶ, ବିପୁଳ ପ୍ରାକୃତିକ ବୈଚିତ୍ର୍ୟ ଜୀବନ ଓ ଜଗତର ରହସ୍ୟାଚ୍ଛନ୍ନ ସ୍ଥିତିକୁ କେତେକାଂଶରେ ଜ୍ଞାନ ଦୃଷ୍ଟି ଦ୍ୱାରା ଜାଣିବା ସମ୍ଭବ । ନିଜ ଭିତରେ ଏକ ଦିବ୍ୟାଲୋକକୁ ପ୍ରଜ୍ୱାଳନ କରି ସୃଷ୍ଟିର ରହସ୍ୟମୟତାକୁ ଉପଲବ୍ଧି କରିହେବ । ନିଜ ଭିତରେ ସମସ୍ତ ରହସ୍ୟମୟ ତାକୁ କାଟି ଏକ ଦିବ୍ୟଅନୁଭୂତି ଦ୍ୱାରା ଜୀବନ ଓ ଜଗତକୁ ବୁଝିବାର ସାମର୍ଥ୍ୟ ମଣିଷର ଅଛି । କିନ୍ତୁ ସେ ତା'ର ଅଜ୍ଞତାରୁ ଉପଲବ୍ଧି କରିପାରୁନି । ଯେପରି -

''ମଣିଷ ଜାଣିପାରୁନି / ଆକାଶକୁ ଧରିବା ପୂର୍ବରୁ

ଆକାଶଟିଏ ନିଜ ଭିତରେ ଅଛି /

ନିଜ ଭିତରେ ଅଛି ସମୁଦ୍ରଠାରୁ ଆହୁରି ଗଭୀର

ଶୂନ୍ୟତାର ଜଳ ।'' (ପାଟଶାଣୀ ପ୍ରସନ୍ନ - ବାଲିର ଚିଠି ଓ ଲବଙ୍ଗ ଠିକଣା । ପୃ-୧୬)କବି ଅନନ୍ତ ଆକାଶକୁ ନିଜ ଭିତରେ ଅନୁଭବ କରିଛନ୍ତି । ଈଶ୍ୱର ହେଉଛନ୍ତି ଚିରନ୍ତନ ସତ୍ୟ । ଜଗତ ଯେପରି ସତ୍ୟ ଈଶ୍ୱର ମଧ୍ୟ ସେହିପରି ସତ୍ୟ ।

କବିଙ୍କ କବିତାର ଆଧ୍ୟାତ୍ମିକବାଦ ଭିତରେ ଜଗନ୍ନାଥ ଚେତନା ପ୍ରତିଫଳିତ ହୋଇଛି । ଜଗନ୍ନାଥଙ୍କ ବିଗ୍ରହ ନିର୍ମାଲ୍ୟ, ରଥ ଓ ଚକାଡୋଳାକୁ ନେଇ ଅଧିକାଂଶ କବିତା ରଚିତ । ଜଗନ୍ନାଥ ଦର୍ଶନ ପ୍ରତି ଗଭୀର ଆକର୍ଷଣ ଯୋଗୁଁ କବିଙ୍କୁ ଏ ପରିକି ସମୁଦ୍ରରେ ଭାସୁଥିବା ଶିପଗୁଡିକ ନିର୍ମାଲ୍ୟ

ପରି ଦେଖାଯାଉଛି । ଯେପରି -

''ମୋତେ ସମୁଦ୍ରର କୋଡଆରେ

ଶିପ ସବୁ / ନିର୍ମାଲ୍ୟ ପରି ଦିଶେ ।'' (ପାଟଣାଣୀ ପ୍ରସନ୍ନ - ଅମାବାସ୍ୟା ବସିଛି ଜହ୍ନର ପିଠିରେ । ପୃ-୧୭ )ନିଜ ଜୀବନ ଭିତରେ ଯାତ୍ରା ଓ ରଥର ଅବତାରଣାକୁ ଏକ ରୂପକ ଭାବରେ ନେଇଛନ୍ତି ।

''ମୁଁ ଚାଲିଛି ଅସୀମର ପଥେ /

ମୁଁ ମୁକ୍ତିର ରଥେ / ଚଢ଼ିଛି ମୁଁ /

ଗଡିଯାଏ ସେ ରଥର ଚକା /

ଡେଇଁ କେତେ ନୀଳଉପତ୍ୟକା /

ଆକାଶୁ ଆକାଶ ତା'ର ଶେଷହୀନ ଯାତ୍ରା ।'' ( ପାଟଣାଣୀ ପ୍ରସନ୍ନ - ରକ୍ତପଥ ପୃ- ୨୩ )ପୁନର୍ବାର କବି କହନ୍ତି -

''ବୁକୁର ବଡ ଦାଣ୍ଡରେ ଗଡେ

ନିଶ୍ୱାସର ଚକା

ହୁଗୁଳି ଗଲାଣି ପଞ୍ଜରାର ଅଖ /

ଲେଉଟି ପଡିବ କେବେ ଜୀବନର ଅଖ ।'' (ପାଟଣାଣୀ ପ୍ରସନ୍ନ - ଅଗ୍ନିଯୁଗ । ପୃ-୧୮ ) ଶରୀରର ବଡ ଦାଣ୍ଡରେ ନିଃଶ୍ୱାସର ଚକ ଗଡିବା, ପଞ୍ଜରାର ଅଖ ହୁଗୁଳି ପଡିଲେ ଜୀବନ ଲେଉଟି ପଡି ଶେଷ ହୋଇଯିବା ଭଳି ଚିନ୍ତାଧାରାକୁ ରଥଯାତ୍ରା ଶୈଳୀରେ ଶରୀର ତତ୍ତ୍ୱକୁ ବର୍ଣ୍ଣନା କରିଛନ୍ତି । ଏଠାରେ ଏହାର କାବ୍ୟିକ ବ୍ୟଞ୍ଜନା ଅତି ଚମତ୍କାର ।

ପୁରୀ ଜଗନ୍ନାଥଙ୍କ ଚକାଡୋଳା ଭିତରେ କବି ବିଶ୍ୱର ବ୍ୟାପକତା ଓ ମାନବୀୟ ସଂହତିକୁ ଲକ୍ଷ୍ୟ କରିଛନ୍ତି ।

''ପୁରୀ ଜଗନ୍ନାଥ କେତେବେଳେ

ଯୋଗୀ ବେଶ /

କେତେ ବେଳେ ମୁସଲମାନ ମୁହଁରେ

ଆଲ୍ଲାର୍ ହସ /

ସତେ ଏକ ସମୁଦ୍ର କୂଳରେ ବୁଲୁଥିବା

ପର୍ଯ୍ୟଟକର ବେଶ ।'' (ପାଟଣାଣୀ ପ୍ରସନ୍ନ - ଖୋର୍ଦ୍ଧାର କବିତା ମୁଁ ପଢେ । ପୃ-୩୬ ) କବି ଜଗନ୍ନାଥ ଚେତନାକୁ କବିତା ମାଧ୍ୟମରେ ସମଗ୍ର ବିଶ୍ୱର ମାନବ ସଂହତି ପାଇଁ ଏକ ଉଦାହରଣ କରିଛନ୍ତି । ଜଗନ୍ନାଥ ଚେତନାରେ ସବୁ ଧର୍ମର ସମନ୍ୱୟ ଦେଖିଛନ୍ତି । ଜଗନ୍ନାଥଙ୍କଠାରେ ହିନ୍ଦୁ, ଇସ୍‌ଲାମ

ଓ ଖ୍ରୀଷ୍ଟଧର୍ମର ଏକତ୍ର ସମାବେଶ କରି ସମଗ୍ର ମାନବ ସମାଜରେ ବିଶ୍ୱଭ୍ରାତୃତ୍ୱ, ଶାନ୍ତି ଓ ସଂହତି ଆଣିବାକୁ ଉଦ୍ୟମ କରିଛନ୍ତି । ଏହା କେବଳ କବିର ଏକ ବିଶ୍ୱ ସାର୍ବଜନୀନ ଭାବର ବଳିଷ୍ଠ ନିଦର୍ଶନ ।

କବିଙ୍କର ବ୍ରହ୍ମବନ୍ଧନ, ଆତ୍ମପ୍ରେମ, ଦିବ୍ୟଭାବ, ଗୈରିକ କବିତା ମାଧ୍ୟମରେ ଏକ ସାର୍ବଜନୀନ ବିଶ୍ୱବୋଧକୁ ରୂପାନ୍ତରିତ ହୋଇଛି । ତାଙ୍କର ଆଧ୍ୟାତ୍ମିକ ଚେତନା ଓ ପ୍ରଜ୍ଞାବୋଧ କାବ୍ୟିକ ପରିପ୍ରକାଶ ମାଧ୍ୟମରେ ମାନବିକ ଜୀବନବୋଧର ବାର୍ତ୍ତା ସଞ୍ଚାର କରିଛି । କାବ୍ୟ ପୁରୁଷ ନିଜକୁ ''ବସୁଧୈବ କୁଟୁମ୍ବକମ୍'' ଆଦର୍ଶରେ ଅନୁପ୍ରାଣିତ କରିଛନ୍ତି । ଏଠାରେ ସାମ୍ପ୍ରତିକ ମଣିଷର ଧାର୍ମିକ ଅଭିବୃତ୍ତିକୁ ଲକ୍ଷ୍ୟ କରାଯାଉ । ସାମ୍ପ୍ରତିକ କ୍ଷେତ୍ରରେ ମୁକ୍ତି ନୁହେଁ ମୁକ୍ତ, ମୋକ୍ଷ ନୁହେଁ ମୂଲ୍ୟବୋଧ, ସାଧନା ନୁହେଁ ସନ୍ଧାନ, ବ୍ୟକ୍ତିବୋଧ ନୁହେଁ, ବିଶ୍ୱବୋଧ ହିଁ ମନୁଷ୍ୟର ଧାର୍ମିକ ଅଭିବୃତ୍ତିକୁ ରୂପାନ୍ତରିତ କରିଛି ।'' (ନାୟକ, ଡଃ. ଗୌରଙ୍ଗ - ଆଧ୍ୟାତ୍ମିକ ସାମ୍ୟବାଦ ଓ ଜଗନ୍ନାଥ ଚେତନା ଏକ ସମୀକ୍ଷା (ଶ୍ରୀଜଗନ୍ନାଥ) । ପୃ-୨୦୩ ) ତେଣୁ ଶେଷରେ ଏତିକି କୁହାଯାଇପାରେ, କବିଙ୍କର କବିତାରେ ଆଧ୍ୟାତ୍ମିକ ଚେତନା ଭାରତର ଐତିହମୟ ବିଶ୍ୱବୋଧତା ଉପରେ ପ୍ରତିଷ୍ଠିତ । ସେ ବ୍ରହ୍ମକୁ ସତ୍ୟ କହି ଜଗତକୁ ମିଥ୍ୟା କହିନାହାନ୍ତି । ବ୍ରହ୍ମ ସତ୍ୟ, ଜଗତ ସତ୍ୟ । ଜୀବନ ଓ ଜଗତ ଭିତରେ ବ୍ରହ୍ମଙ୍କ ଉପସ୍ଥିତିକୁ ସେ ଉପଲବ୍ଧି କରିଛନ୍ତି । ଅଜ୍ଞାନତା ରୂପକ ଅନ୍ଧକାରରୁ ଜୀବନକୁ ମୁକ୍ତ କରି ଏକ ସ୍ୱର୍ଗୀୟ ଆଲୋକ ଭିତରକୁ ଛାଡିଛନ୍ତି । ଏହି ଦିବ୍ୟ ପ୍ରେରଣା ଦ୍ୱାରା ମଣିଷ ଜୀବନର ସିଦ୍ଧି ଓ ସାର୍ଥକତାକୁ ଖୋଜି ସଫଳ ହୋଇଛନ୍ତି । ଏହାକୁ ସେ ବିଶ୍ୱମାନବ ପାଇଁ ସାମ୍ପ୍ରତିକ ସମୟର ଅଶାନ୍ତ ମଣିଷ ନିମିତ୍ତ ଏକ ଶାନ୍ତିର ପଥ ଭାବେ ଆବିଷ୍କାର କରିଛନ୍ତି । ପୋଡା ଭୂଇଁରେ ବାସ କରୁଥିବା ଦଗ୍ଧୀଭୂତ ମଣିଷ ପାଇଁ ଟି. ଏସ୍. ଏଲିୟଟ ଯେପରି ଶାନ୍ତିର ମାର୍ଗ ଖୋଜିଛନ୍ତି ଭାରତୀୟ ଉପନିଷଦ ଭିତରୁ -

" Datta Dayadharm Demyata

Shantih Shantih Shantih."(Eliot, T. S. - The West land. P-146. )ସେହିପରି କବି ପ୍ରସନ୍ନ ପାଟଶାଣୀ ମଧ୍ୟ ସାମ୍ପ୍ରତିକ ସମୟର ମାନବ ପାଇଁ ଏକମାତ୍ର ପଥ ପରିଷ୍କୃତ କରି ରଖିଛନ୍ତି । ତାହା ହେଉଛି ଭାରତୀୟ ଆଧ୍ୟାତ୍ମିକ ଜୀବନକୁ ଜୀବନ କ୍ଷେତ୍ରରେ ପ୍ରୟୋଗାତ୍ମକ ଭିତ୍ତିରେ ଗ୍ରହଣ କରିନେବା । ଯାହା ଫଳରେ ହେବ ବର୍ତ୍ତମାନ ମଣିଷର ଜୀବନ ପାଇଁ ସୁଖ, ଶାନ୍ତି ଓ ସମୃଦ୍ଧିର ସର୍ବଶ୍ରେଷ୍ଠ ସୁଚିନ୍ତିତ ମାର୍ଗ ।

### (ଗ) ସ୍ୱୈରବାଦୀ ଧାରା

ସ୍ୱୈରବାଦ (ରୋମାଣ୍ଟିସିଜିମ୍) ର ଅବବୋଧ ହୃଦୟଜ । ସ୍ୱୈରବାଦୀ ବ୍ୟକ୍ତିପ୍ରାଣର ଅନର୍ଗଳ ପୁରୋଗତି ଏହାର କାମ୍ୟ । ପ୍ରାଚୀନ ଯୁଗରେ ଭାରତୀୟ କାଳିଦାସୀ ସାହିତ୍ୟରେ ଓ ପାରସିକ ରୁବାୟତ୍‌ରେ ଏହାର ପ୍ରାଣବନ୍ତ ସନ୍ଦେଶ ମିଳୁଥିଲେ ମଧ୍ୟ ଆଧୁନିକ କାବ୍ୟଚିନ୍ତାରେ ଏହାର ପ୍ରକୃତ ପରିସ୍ଫୁରଣ ଘଟିଛି । ଗତାନୁଗତିକ ପ୍ରବହମାନତାକୁ ଅତିକ୍ରମ କରି ବ୍ୟକ୍ତିନିଷ୍ଠ ଦର୍ଶନ ଓ ସାହିତ୍ୟ ଭିତରେ ସ୍ୱୈରବାଦୀ ଜୀବନଚର୍ଯ୍ୟା ଓ ସାହିତ୍ୟ ଦର୍ଶନ ପରିପ୍ରକାଶିତ । ଜୀବନ ଧର୍ମୀତା ଓ ମାନବତାବାଦ ଏହି ଚେତନାର ଆତ୍ମା । ରୁଷୋ କଥିତ " Man is born free but everywhere he is in chain" ଉକ୍ତି ଓ ଚିରନ୍ତନ ପ୍ରକୃତି କୋଳକୁ ଫେରିଯିବାକୁ ମାନବ ଜାତିକୁ ଦେଇଥିବା ଆହ୍ୱାନରୁ ସ୍ୱୈରବାଦୀ ଜୀବନଦର୍ଶନର ଐତିହାସିକ ବିବର୍ତ୍ତନ ଆରମ୍ଭ ହୋଇଥିଲା । ଜର୍ମାନର ଚେତନାବାଦୀ

ଦାର୍ଶନିକଗଣ (Sensetionallist philosophers )ଙ୍କ ବାଟ ଦେଇ ଇଂରାଜୀ ସାହିତ୍ୟର ସ୍ୱୈରବାଦୀ Revival ର ସୂତ୍ରପାତ ହୋଇଥିଲା । ସ୍ୱୈରବାଦୀ ବ୍ୟଷ୍ଟିବାଦୀ କବିଗଣ ଆପଣାର ପ୍ରତିଭାଜ୍ଞାନ ବୋଲା ଦିବ୍ୟ ନେତ୍ରରେ ସ୍ୱୈରବାଦୀ ଦର୍ଶନକୁ ଭିନ୍ନ ଭିନ୍ନ ଭାବରେ ଆବିଷ୍କାର କରିଥିଲେ । ୱାଡସୱାର୍ଥଙ୍କ ପ୍ରକୃତି ପ୍ରୀତି, ଶେଲୀଙ୍କ ଆତ୍ମକୈନ୍ଦ୍ରିକ ନୈରାଶ୍ୟବୋଧ, କୀଟସଙ୍କ ରୂପାନୁରାଗ, ବାଇରନ୍‌ଙ୍କ ଅତୀତ ପ୍ରୀତିଠାରୁ ଆରମ୍ଭ କରି ଟେନିସନ୍‌ଙ୍କ ପ୍ରାକୃତିକ ଭୂଗୋଳ ଓ ବ୍ଲେକ୍‌ଙ୍କ ରହସ୍ୟବାଦ ପର୍ଯ୍ୟନ୍ତ ସବୁଥିଲା ଏହି ସ୍ୱୈରବାଦୀ କାବ୍ୟଚିନ୍ତାର ବିବିଧ ପ୍ରକାଶ ।

ସ୍ୱୈରବାଦୀ ଚେତନାକୁ ବିଭିନ୍ନ କବି ମନୀଷୀ ଭିନ ଭିନ୍ନଭାବରେ ଅନୁଭବ କରୁଥିଲେ ଓ ତାହାର ଅନୁବର୍ତ୍ତନରେ ପ୍ରୟାସ କରୁଥିଲେ । କାର୍ଲାଇଲ୍‌ଙ୍କ ମତରେ ''ଏହା ଏକ ଲୁହ ଝରାଉଥିବା ନକ୍ଷେତ୍ର, ଏକ ଗଦ୍ ଗଦ୍ ଉଚ୍ଚାରଣ ତାଳଗଛ ଘେରା ତଡାଗ, ଏକ କୂଜନ ମୁଖର ପକ୍ଷୀ। '' ପୁଣି ଆରନୋଲଡଙ୍କ ମତରେ ''ଏହା ସୌନ୍ଦର୍ଯ୍ୟ ଓ ବିସ୍ମୟର ଏକ ଅଦ୍ଭୁତ ସମନ୍ୱୟ ।'' ହ୍ୱାଇଟ ହେଡ୍ ଓ ରସେଲଙ୍କ ମତରେ ''ସ୍ୱୈରବାଦୀ ଚେତନା ନିମ୍ନଲିଖିତ ଭାବେ ନିରୂପଣ କରାଯାଇପାରେ । କ) ସ୍ୱୈରବାଦୀ ଚେତନା ମାନବିକ ଅଭିଜ୍ଞତାର ଏକ ନୂତନ ମୂଲ୍ୟାୟନ । ଖ) ଏହାର ଉଦ୍ଦେଶ୍ୟ ମଣିଷର ଅଭିଜ୍ଞତା ଓ ଅନ୍ତର୍ନିହିତ ବାସ୍ତବତା ନିରୂପଣ । ଗ) ପ୍ରଚଳିତ ନୈତିକ ମୂଲ୍ୟବୋଧ ଓ ନାନ୍ଦନିକ ମାନ ନିୟମ ବିରୁଦ୍ଧରେ ଏକ ବିଦ୍ରୋହ । ଘ) ଏକ ନୂତନ ମୂଲ୍ୟବୋଧ ଓ ମୂଲ୍ୟାୟନର ପ୍ରତିଷ୍ଠା । ଙ) ନୂତନ ରୁଚି ଓ ସୌନ୍ଦର୍ଯ୍ୟ ଭିତ୍ତିକ ନୈତିକତା ଏହାର ଅଙ୍ଗ । ଚ) ଏକ ସକ୍ରିୟ ନିବିଡ ବ୍ୟକ୍ତି କୈନ୍ଦ୍ରିକ ଓ ସମ୍ବେଦନ ଶୀଳ ଜୀବନରେ ନିଃଶ୍ୱାସ । ଛ) ବ୍ୟକ୍ତି ସ୍ୱାଧୀନତାର ଆହ୍ଲାଦ ଓ ସନ୍ଧାନ । ଜ) ବ୍ୟକ୍ତିତ୍ୱର ମୁକ୍ତି ଏହାର ଲକ୍ଷ୍ୟ । ଝ) ଜାତୀୟତାବାଦର ସମର୍ଥନ ଓ ସଂସ୍କାର ବଦଳରେ ସହାନୁଭୂତି ଓ ସମ୍ବେଦନ ସୃଷ୍ଟି ।'' ( ଦାସ ରାଇଚରଣ- ରୋମାଣ୍ଟିକ୍ ଅବବୋଧ । ପୃଷ୍ଠା- ୧୩୨) ଏହିପରି ବହୁ ସଂଖ୍ୟାରେ ବିଧୃତ ସ୍ୱୈରବାଦୀ ଚେତନାର ରୂପ ପ୍ରକୃତରେ ବିମୂର୍ତ୍ତ ଓ ରୂପାତୀତ । ପ୍ରକୃତି ଓ ମାନବ ପ୍ରେମ, ନାନ୍ଦନିକ ସୌନ୍ଦର୍ଯ୍ୟ ପ୍ରୀତି, ଅତୀନ୍ଦ୍ରିୟ ରହସ୍ୟବାଦ, ନୈର୍ବ୍ୟକ୍ତିକ ନୈରାଶ୍ୟ ବୋଧ, ସ୍ୱଦେଶାନୁରାଗ, ଅତୀତ ସ୍ମୃତି, ସରଳ ସାବଲୀଳ ଲୋକ ମୁଖର ଭାଷା, ଖଣ୍ଡକାବ୍ୟ ଓ କ୍ଷୁଦ୍ର କବିତା ଏହିଭଳି ବହୁ ଆଙ୍ଗିକ ଓ ଆତ୍ମିକ ଉପାଦାନ ଘେନି ପରିପୁଷ୍ଟ ସ୍ୱୈରବାଦୀ ସାହିତ୍ୟ ଜୀବନ ଓ ପ୍ରକୃତି ମଧ୍ୟରେ ଥିବା ପ୍ରହେଳିକା ପୂର୍ଣ୍ଣ ସମ୍ପର୍କର ରହସ୍ୟ ଉଦଘାଟନ କରିବାରେ କବି, କଳ୍ପନାକୁ ନିୟୋଜିତ କରିଆସିଥିଲା । ମୁଖ୍ୟତଃ ସ୍ୱୈରବାଦୀ ବ୍ୟକ୍ତିବାଦର ସ୍ୱରୂପହିଁ ସର୍ବମୟ ସାକାର ହୋଇଉଠିଥିଲା ସମଗ୍ର ବିଶ୍ୱ ସାହିତ୍ୟରେ ।

ଊନବିଂଶ ଶତାବ୍ଦୀର ମଧ୍ୟଭାଗରେ ଇଂରାଜୀ ଶିକ୍ଷା ଓ ସଂସ୍କୃତିର ପ୍ରଭାବରୁ ଏକ ନବଯୁଗର ଆବାହନ କ୍ରମେ ଇଂରାଜୀ ସ୍ୱୈରବାଦୀ Revival ବିଷୟରେ ସଚେତନ ଆଧୁନିକ ଓଡିଆ ବରେଣ୍ୟ କବିବୃନ୍ଦ ଆପଣାର ସୃଷ୍ଟିଭିତରେ ତା'ର ଅନ୍ତର୍ହିତ ସତ୍ତାକୁ ନୂତନଭାବେ ଆବିଷ୍କାର କରିବା ପାଇଁ ପ୍ରୟାସ ଆରମ୍ଭ କଲେ । ଏ ଦିଗରେ ଅଗ୍ରଣୀଥିଲେ କବିବର ରାଧାନାଥ ରାୟ ।

ତାଙ୍କର ସୃଷ୍ଟିଜଗତ ଥିଲା ଉତ୍କଳର ପ୍ରାକୃତିକ ଭୂଗୋଳ ଓ ସାଂସ୍କୃତିକ ଇତିହାସରେ ଭରା । ସ୍ୱୈରବାଦୀ ଯୁଗଧର୍ମର ସମ୍ପୂର୍ଣ୍ଣ ସାକାର ରୂପ ପରିଗ୍ରହ କରିଥିଲା ତାଙ୍କ କୃତିରେ । 'ନନ୍ଦିକେଶରୀ', 'ଚିଲିକା' ଠାରୁ 'ଦରବାର' ପର୍ଯ୍ୟନ୍ତ ସର୍ବତ୍ର ପ୍ରାକୃତିକ ଅନୁସଙ୍ଗ ଓ ମାନବିକ ଚରିତ୍ର ଭିତରେ ସୌନ୍ଦର୍ଯ୍ୟ ଓ ବିସ୍ମୟର ସମନ୍ୱୟ ଘଟିଥିଲା । ଓଡିଆ ଗଦ୍ୟର ପ୍ରାଣପ୍ରତିଷ୍ଠାତା କଥାଶିଳ୍ପୀ ଫକୀର ମୋହନ ଥିଲେ ବ୍ୟାସକବି ଓ ତତ୍କାଳୀନ ସାମାଜିକ ସ୍ଥିତିର କ୍ରାନ୍ତଦର୍ଶୀ ଚିତ୍ରକର । ଓଡିଆ ଗ୍ରାମ୍ୟ ଭାଷାକୁ ତାଙ୍କ କୃତିରେ

ସେ ଗାରିମାମୟ କରିଥିଲେ । ତାଙ୍କର କାବ୍ୟସମୂହ ଓଡିଆ ଜନଜୀବନ ଚିତ୍ରଣରେ ଯେପରି ମଞ୍ଜୁଳ, ବ୍ୟକ୍ତି ଚରିତ୍ରର ଶୁଦ୍ଧି ପାଇଁ ସେହିପରି ଏକ ମନ୍ତ୍ର ସଦୃଶ । ମଧୁ ସୂଦନ ଥିଲେ ଭକ୍ତ କବି । ଅଣୁଠାରୁ ଆକାଶ ପର୍ଯ୍ୟନ୍ତ ପ୍ରକୃତିର ପ୍ରତିଟି ଅନୁସଙ୍ଗ ଭିତରେ ସେ ଅନନ୍ତ ପୁରୁଷଙ୍କୁ ସାକ୍ଷାତ କରୁଥିଲେ । ଋଷିପ୍ରାଣେ ଦେବାବତରଣ, ହିମାଚଳେ ଉଦୟ ଉତ୍ସବ, ପଦ୍ମ ଓ ଆକାଶ ପ୍ରତି ପ୍ରଭୃତି ବହୁ ଚତୁର୍ଦ୍ଦଶପାଦୀ କବିତାରେ ମଧୁସୂଦନଙ୍କ ବିମଳ ସ୍ୱୈରବାଦୀ କବିତ୍ୱର ପରିପ୍ରକାଶ ଘଟିଥିଲା । ୱାଡସୱାର୍ଥ ଓ ବ୍ଲେକ ଉଭୟଙ୍କର ଏ କେଶ୍ୱରବାଦୀ ରହସ୍ୟବୋଧ ଓ ଅତୀନ୍ଦ୍ରିୟ ଅନୁଭବ ମଧୁସୂଦନଙ୍କ କବିତାକୁ ଘନିଷ୍ଠଭାବେ ପ୍ରଭାବିତ କରିଥିଲା । ଓଡିଆ ସ୍ୱୈରବାଦୀ କାବ୍ୟଧାରାକୁ ଉତ୍କଳଭାରତୀର ରମ୍ୟ କୁଞ୍ଜବନରେ ମୁରଲୀର ମଧୁର ମୂର୍ଚ୍ଛନା ଖେଳାଇ ଏହି ଆଧୁନିକ କବିତ୍ରୟୀ ପୁଷ୍କଳ କରିଥିଲେ ।

ଏହାର ଉତ୍ତରାଧିକାର ଘେନି ଉତ୍କଳୀୟ ଜାତୀୟ ଚେତନାର ବାର୍ତ୍ତାବହ ଭାବେ ଜନ୍ମ ନେଇଥିଲେ ସତ୍ୟବାଦୀର ସାଧକ କବିଗଣ । ସେମାନଙ୍କ ପାଇଁ ସାହିତ୍ୟ ଥିଲା ସମାଜ ସଂସ୍କାରର ଏକ ବିଶିଷ୍ଟ ଆୟୁଧ । ସଙ୍କଳ୍ପ ଶକ୍ତି ଓ କର୍ମୋଦ୍ୟମ ଭିତରେ ସେମାନଙ୍କର ସାହିତ୍ୟ ସାଧନା ସ୍ୱୈରବାଦୀ ଆବେଗ ପ୍ରବଣତା ସହିତ ନିଓକ୍ଲାସିକ କାର୍ଯ୍ୟକାରଣବୋଧକୁ ସଂଯୁକ୍ତ କରିଥିଲା ।

ସବୁଜ ଶକ୍ତୀମାନେ ଥିଲେ ନବ୍ୟ ସ୍ୱୈରବାଦୀ । ସୁଦୂର ପ୍ରୀତି ଓ ଅନ୍ତରର ଅନ୍ତର୍ଗୁଢ ବ୍ୟଥା ଭିତରେ ଏମାନଙ୍କର ସ୍ୱୈରବାଦୀ ଚେତନା ଏକ ଭିନ୍ନ ରୂପ ଓ ଆଭିମୁଖ୍ୟ ଘେନି ପ୍ରକାଶ ପାଇଥିଲା । ତରୁଣ ପ୍ରାଣର ସ୍ନିଗ୍ଧ କୋମଳ ପ୍ରାଣୋଚ୍ଛଳ ଆବେଗୋଷ୍ମ ଉନ୍ମାଦନା ଏମାନଙ୍କ କବିତାକୁ ନବରାଗରେ ରଞ୍ଜିତ କରିଥିଲା । ରବୀନ୍ଦ୍ରନାଥଙ୍କ ଉତ୍ତର କାବ୍ୟଧାରାର ସୂକ୍ଷ୍ମ ଅଥଚ ତୀବ୍ର ପ୍ରଭାବରେ ଏମାନେ ପ୍ରଭାବିତ ହୋଇଥିଲେ । ଅନ୍ନଦା ଶଙ୍କରଙ୍କ କବିତାରେ ବାଳାର୍କମୟୁଖ ଛଟା, ଶତବର୍ଣ୍ଣ ମେଘ, କାଳିନ୍ଦୀଚରଣଙ୍କ କବିତାରେ ସ୍ୱପ୍ନବିଳାସୀ ତରୁଣ ପ୍ରାଣର ଉଦ୍‌ବେଳନ ଓ ବୈକୁଣ୍ଠନାଥଙ୍କ କବିତାରେ ଅତୀନ୍ଦ୍ରିୟ ରହସ୍ୟବୋଧ ଓ 'ଉତ୍ତରାୟଣ' ଦର୍ଶନ - ଏସବୁ ଭିତରେ ସବୁଜ ତ୍ରୟୀଙ୍କ ଜୀବନବୋଧ ଓ କାବ୍ୟ ଦର୍ଶନ ପ୍ରସ୍ଫୁଟିତ ହୋଇଥିଲା । ସ୍ୱୈରବାଦୀ କାବ୍ୟଧାରାକୁ ଏକ ଭିନ୍ନ ମୋଡ ଦେବାରେ ଏମାନେ ପଥିକୃତ ସାଜିଥିଲେ । କିନ୍ତୁ ପରବର୍ତ୍ତୀ ସମୟରେ ଯେତେବେଳେ ଓଡିଆ ସାହିତ୍ୟର ସବୁଜ ଦିଗନ୍ତ ଫିକା ପଡିଆସୁଥିଲା, ସେତେବେଳେ ଗୋଟିଏ ପଟେ ଲୋହିତ ଓ ଅନ୍ୟପଟେ ଧୂସରର ଆହ୍ୱାନ କ୍ରମଶଃ ଓଡିଆ ସାହିତ୍ୟର ମାନଚିତ୍ରକୁ ବହୁ ବର୍ଣ୍ଣାକ୍ରାନ୍ତ କରିପକାଉଥିଲା । ସେତେବେଳେ ସମଷ୍ଟିରୁ ବ୍ୟଷ୍ଟିଆଡକୁ ସବୁଜ ପ୍ରାନ୍ତରରୁ ପୋଡାମାଟି ଆଡକୁ, ପଲ୍ଲୀଶ୍ରୀରୁ ଯାନ୍ତ୍ରିକ ଯନ୍ତ୍ରଣା ଗ୍ରସ୍ତ ସହର ଆଡକୁ ଓଡିଆ କାବ୍ୟ ସମ୍ଭାରକୁ ପଥହରା ହୋଇଯିବାକୁ ପଡୁଥିଲା । ଯେଉଁ କେତେଜଣ ଶକ୍ତ ସ୍ୱରୂପ ଏ ଦୋମୁହାଣୀ ଉପରେ ଠିଆହୋଇ ଓଡିଆ କାବ୍ୟ ପରମ୍ପରାକୁ ଏକ ସ୍ୱତନ୍ତ୍ର ଗୌରବ ଦାନ କରିବା ପାଇଁ ପ୍ରୟାସ କରୁଥିଲେ, ସେମାନଙ୍କ ମଧ୍ୟରେ ମାୟାଧର ମାନସିଂହ, ସଚ୍ଚିଦାନନ୍ଦ ରାଉତରାୟ ଥିଲେ ପ୍ରଧାନ । ଏମାନେ ସ୍ୱୟଂସମ୍ପୂର୍ଣ୍ଣ ସ୍ୱୈରବାଦୀ ନ ଥିଲେ, କିନ୍ତୁ ସ୍ୱୈରବାଦୀ କବିମାନଙ୍କର ସୁଯୋଗ୍ୟ ଦାୟାଦଭାବେ ଓଡିଆ ସାହିତ୍ୟରେ ପରିଚିତ ଥିଲେ । ଏହାପରେ 'ସମୁଦ୍ରସ୍ନାନ' କରି ଉପରକୁ ଉଠିଲେ କବି ଗୁରୁପ୍ରସାଦ । ସେ ସ୍ୱୈରବାଦୀ ବିରୋଧୀଭାବେ ଓଡିଆ କାବ୍ୟଜଗତରେ ପରିଚିତ ହେଲେ ମଧ୍ୟ ତାଙ୍କ କବିତାରେ ସ୍ୱୈରବାଦୀ କାବ୍ୟ ଜଗତର ବହୁ ଅନ୍ତର୍ନିହିତ ଗୁଣ ବିକାଶ ଲାଭ କରିଥିଲା ଏବଂ ତାଙ୍କୁ ଆଧାର କରି ବହୁ ଓଡିଆ କବି ଆପଣାକୁ ଅତ୍ୟାଧୁନିକ ବୋଲି ପରିଚୟ ଦେବାକୁ ଲାଗିଲେ । ପରବର୍ତ୍ତି ସମୟରେ ରମାକାନ୍ତ ଓ ଅନ୍ୟାନ୍ୟ ବହୁ କବି ସାମ୍ପ୍ରତିକ ଜୀବନର ବେଦନାବୋଧକୁ କାବ୍ୟରୂପ ଦେବାକୁ ଗଲାବେଳେ

ବାରମ୍ବାର ସ୍ୱୈରବାଦୀ ଜାଲରେ ଛନ୍ଦି ହୋଇପଡିଛନ୍ତି । ପ୍ରେମ ଓ ମୃତ୍ୟୁ ଜୀବନର ଦୁଇଟି ଅନିବାର୍ଯ୍ୟ ଓ ଆକର୍ଷଣୀୟ ଦିଗ ପ୍ରତି ସତୃଷ୍ଣ କବିଗଣ ସ୍ୱୈରବାଦୀ ଚେତନାର ବିହୁନେ ରହି ପାରିନାହାନ୍ତି । ଏହି ପରିପ୍ରେକ୍ଷୀରେ ଆଲୋଚ୍ୟ କବି ଜଣେ ସ୍ୱୟଂସମ୍ପୂର୍ଣ୍ଣ ସ୍ୱୈରବାଦୀ ନହେଲେ ମଧ୍ୟ ସ୍ୱୈରବାଦୀ କାବ୍ୟଦର୍ଶନର ବର୍ଣ୍ଣ ବୈଚିତ୍ର୍ୟକୁ ନିଜ କୃତିରେ ସେ ଅଙ୍ଗୀକାର କରିନେଇଛନ୍ତି ।

କବି ପ୍ରସନ୍ନ ପାଟ୍ଟଶାଣୀଙ୍କ ଉତ୍ତରଣ ପର୍ଯ୍ୟାୟରେ ତାଙ୍କ କବିତାରେ ସ୍ୱୈରବାଦୀ ଭାବାବେଗ ଅଧିକ ଭାବେ ପ୍ରକାଶ ପାଇଥିଲେ ମଧ୍ୟ ବହୁ ପୂର୍ବରୁ 'ବର୍ଷା' (୧୯୮୧) ଶୀର୍ଷକ ଏକ ଦୀର୍ଘ କବିତାରେ ପାଠକ ଏହି ଭାବର ନିବିଡ ପରିଚୟ ପାଇସାରିଥିଲା । ଏହି ଭାବାବେଗ "ଦେଖାହେଲେ କହିବି ସେ କଥା" (୧୯୯୦) ବେଳକୁ ପରିପୁଷ୍ଟ ହୋଇଛି । କବିଙ୍କର ତୀବ୍ର ସ୍ୱୈରବାଦୀ ଅନୁଚିନ୍ତା କାବ୍ୟର ଆବେଦନକୁ ବଳିଷ୍ଠ କରିପାରିଛି । କବି କାବ୍ୟଜୀବନର ଆରମ୍ଭରେ ଜଣେ ବିପ୍ଳବୀ ଭାବରେ ବଣଜଙ୍ଗଲରେ ଘୂରିବୁଲୁଥିଲେ ଓ କବିତା ରଚନା କରୁଥିଲେ । ସେତେବେଳେ ପ୍ରକୃତି ପ୍ରତି ତାଙ୍କର ଯେଉଁ ନିବିଡ ଆକର୍ଷଣ ଥିଲା, ତାହାହିଁ ତାଙ୍କୁ ସ୍ୱୈରବାଦୀ କରିଛି ।

କବି ବା କଳାକାର ଭିତରେ ପ୍ରକୃତିର ଉପଭୋଗରୁ ସୌନ୍ଦର୍ଯ୍ୟାନୁଭୂତି ସୃଷ୍ଟିହୁଏ । ଏହା ବହିଃସୌନ୍ଦର୍ଯ୍ୟ ନୁହେଁ । ପ୍ରକୃତିର ଅନ୍ତର୍ନିହିତ ସୌନ୍ଦର୍ଯ୍ୟରୁ ଏହାର ଜନ୍ମ । ସ୍ୱୈରବାଦୀ ଧାରଣା ବା ଅବବୋଧ କବିର ବାହ୍ୟ ଅନୁଭବ ନୁହେଁ । ସ୍ୱୈରବାଦୀ ଶିଳ୍ପୀଟି ଏହି ଚେତନା ଦୃଷ୍ଟିରୁ ଯାହା ପାଳନ କରେ ସେ ସବୁର ବାହ୍ୟ ପ୍ରୟୋଗ ଉପରେ ଏହି ଚେତନାର ବିକାଶ ନିର୍ଭର କରେ ନାହିଁ । ଏଠାରେ କବି ବ୍ୟାବହାରିକ ବା ପ୍ରାୟୋଗିକ ମୂଲ୍ୟ ଅପେକ୍ଷା ନାନ୍ଦନିକ ମୂଲ୍ୟ ଉପରେ ଅଧିକ ଗୁରୁତ୍ୱ ଦିଏ । "କବିତା ରୁକ୍ଷବାସ୍ତବ ଜୀବନକୁ ସୁନ୍ଦରରେ ରୂପାନ୍ତରିତ ଏବଂ କବିତା ଜୀବନକୁ ସୁନ୍ଦରଭାବରେ ଉପସ୍ଥାପନ କରୁଥିବା କ୍ଷେତ୍ର" (ମହାନ୍ତି ଡଃ ଗିରିବାଳା, "କବିତା ଓ ତାର ସୌନ୍ଦର୍ଯ୍ୟ ବିଚାର" ବିଶ୍ୱ ଭାରତୀ ଦୀପିକା ପୃ-୧୧୦) ଏହି ନାନ୍ଦନିକ ଦୃଷ୍ଟିଭଙ୍ଗୀ ଯେକୌଣସି ଚେତନାରେ ପ୍ରକାଶ ପାଇପାରେ । କିନ୍ତୁ ସ୍ୱୈରବାଦୀ ଆବେଗ ଭିତର ଦେଇ ସାହିତ୍ୟିକର ନନ୍ଦନତତ୍ତ୍ୱଟି ସର୍ବାଧିକ ପ୍ରକାଶ ପାଇବାର ସୁଯୋଗ ଥାଏ ।

ସ୍ୱୈରବାଦୀ କବିର ଅତୀତ ଓ ଐତିହ୍ୟ ପ୍ରତି ମୋହ ଥାଏ । "ଖୋର୍ଦ୍ଧାର କବିତା ମୁଁ ପଢେ" ଶୀର୍ଷକ କବିତା ବହିରେ କବି ଖୋର୍ଦ୍ଧାର ଅତୀତ ଇତିହାସକୁ ସ୍ମରଣ କରିଛନ୍ତି । କବି ନାନ୍ଦନିକ ଦୃଷ୍ଟିଟିକୁ ଉପଲବ୍ଧ କରିବା ପାଇଁ ବୁଦ୍ଧି ଓ ଯୁକ୍ତି ଅପେକ୍ଷା ହୃଦୟ, ଇଚ୍ଛା, ଆବେଗ ଓ ଉଚ୍ଛ୍ୱାସକୁ ଅଧିକ ଗୁରୁତ୍ୱ ଦିଏ । ପ୍ରକୃତି ସହିତ ସମ୍ବେଦନଶୀଳ ହୃଦୟର ଆନ୍ତରିକ ଆସକ୍ତି ଯୋଗୁ କବିଙ୍କୁ ନାନ୍ଦନିକ ମୂଲ୍ୟ ନିରୂପଣ କରିବାକୁ ପଡେ, ତେଣୁ କବି ହୁଏ ସରଳ ଏବଂ ଭାବପ୍ରବଣ । କବିର ଆଶା, ଉଦ୍ଦୀପନା, ରୁଚି, କଳ୍ପନା, ବ୍ୟର୍ଥତା ଓ ବିଷାଦ ଆଦି ନୂତନ ଅବବୋଧରେ ପ୍ରକାଶ ପାଏ । ଏସବୁ ପ୍ରତି ତା'ର ଗଭୀର ଆତ୍ମୀୟତା ରହିଥାଏ । ସମ୍ବେଦନଶୀଳ ନ ହେଲେ, ଆବେଗଦୀପ୍ତ ନ ହେଲେ, ସ୍ୱୈରବାଦୀ ଅବଧାରଣା ଆସିବା କଷ୍ଟ । ନାନ୍ଦନିକ ମୂଲ୍ୟବୋଧ ହ୍ରାସ ପାଏ । ପ୍ରକୃତି ସହିତ, ଦୂରବର୍ତ୍ତୀ କଳ୍ପନା ସହିତ, କବି ତଦାତ୍ମ୍ୟ ସ୍ଥାପନ କରିପାରେ ନାହିଁ ।

ସ୍ୱୈରବାଦୀ ଅବବୋଧ ଭିତରେ କବି କଳ୍ପନାରଞ୍ଜିତ ଏକ ବର୍ଣ୍ଣମୟ ଜଗତର ଦୃଶ୍ୟ ଦେଖେ । ଏହା ପ୍ରକୃତି ଓ ମଣିଷକୁ ଅଭିନ୍ନ କରିବାରେ ସକ୍ରିୟ ଭୂମିକା ଗ୍ରହଣ କରେ । ଏହା ବ୍ୟକ୍ତିର ଅଭିଜ୍ଞତାର ଅନ୍ତର୍ନିହିତ ବାସ୍ତବତାକୁ ପ୍ରକଟିତ କରେ ।

ସ୍ୱୈରବାଦୀ ଧାରଣା ପ୍ରାଣର ଗଭୀରତମ ପ୍ରଦେଶରୁ ସୃଷ୍ଟି ହୋଇ ଏକ ନିବିଡ ପୁଲକଭାବେ କବିତାରେ ରହେ । ଏହା ପ୍ରତ୍ୟେକ କଳାକାରର ସୃଜନଶୀଳ ମନୋଭାବ ସହିତ ତାଳ ରଖି ସବୁ ସମୟରେ ଗତିକରେ । ଏହି କାରଣରୁ ସବୁ କଳାକାର, ସବୁ କବି ଅଳ୍ପ ବହୁତେ ସ୍ୱୈରବାଦୀ । କବି ପ୍ରକୃତିକୁ ଉପଭୋଗ କଲାବେଳେ ତା ଭିତରେ ସୌନ୍ଦର୍ଯ୍ୟାନୁଭୂତି ଜାତ ହୁଏ । ଫଳରେ କବି ସ୍ଥିର, ସ୍ଥିତପ୍ରଜ୍ଞ ହୁଏ । କବି ଅତୀନ୍ଦ୍ରିୟ ସତ୍ତା ଆଡକୁ ଟାଣି ହୋଇଯାଏ । କବିପ୍ରାଣର ମୁଗ୍ଧ ଅନୁଭବ, ସୌନ୍ଦର୍ଯ୍ୟାନୁଭୂତି ଓ ବେପଥୁ ଆଦି ସ୍ୱୈରବାଦୀ ଶିଳ୍ପଧର୍ମର ଲକ୍ଷଣ ।

କବି ପ୍ରସନ୍ନ ପାଟଶାଣୀ ଜଣେ ସ୍ୱୈରବାଦୀ କବି ଭାବରେ ପ୍ରକୃତି ସହିତ ଜଡିତ ରହି ପ୍ରକୃତିକୁ ଉପଭୋଗ କରିଛନ୍ତି । ତା'ର ସୌନ୍ଦର୍ଯ୍ୟରେ ତନ୍ମୟ ହୋଇଛନ୍ତି । ପ୍ରକୃତି ତାଙ୍କୁ ବିଭିନ୍ନ ସମୟରେ ଭିନ୍ନ ଭିନ୍ନ ରୂପରେ ଦେଖା ଦେଇଛି । ପ୍ରକୃତି ତାଙ୍କ ପାଇଁ ଏକ ନାରୀ ସଦୃଶ । ତେଣୁ ସେ ପ୍ରକୃତିର ରୂପରେ ମୋହାବିଷ୍ଟ । ପ୍ରକୃତି ପ୍ରତି ଏ ଅନାବିଳ ମୋହ ତାଙ୍କୁ ସ୍ୱୈରବାଦୀ କରିଛି । କଳ୍ପନା, ପ୍ରକୃତି, ନାରୀ, ସୌନ୍ଦର୍ଯ୍ୟ ଚେତନା, ପଲ୍ଲୀପ୍ରତି ଆକର୍ଷଣ, ସ୍ୱଦେଶ ପ୍ରୀତି, ରହସ୍ୟ, ବିଷାଦବୋଧ, ଅତୀତ ମୋହ ଆଦି ସ୍ୱୈରବାଦୀ ଚେତନାର ଅନ୍ତର୍ଭୁକ୍ତ । ଏସବୁ ଚେତନା ତାଙ୍କ ସ୍ୱୈରବାଦ ଧର୍ମୀ କବିତାରେ ଜୀବନ୍ତ ଭାବରେ ପ୍ରତିଫଳିତ । ଏହି ପର୍ଯ୍ୟାୟରେ ତାଙ୍କ "ବର୍ଷା" କବିତା ସଙ୍କଳନକୁ ଗ୍ରହଣ କରାଯାଇ ପାରେ । ଏଥିରେ ସେ ତାଙ୍କର ଆବେଗିକ ସମ୍ପର୍କ ଦ୍ୱାରା ବର୍ଷା ସହିତ ଯୋଡି ହୋଇ ଯାଇଛନ୍ତି । ତେଣୁ ଯୌବନ ଓ ପ୍ରଣୟ ବର୍ଣ୍ଣନା "ବର୍ଷା" କବିତାରେ ପ୍ରାଧାନ୍ୟ ଲାଭକରିଛି । କବିଙ୍କ ହୃଦୟ ଭିତରକୁ ବର୍ଷା ଏକ ନାରୀ ହୋଇ ଓହ୍ଲେଇ ଆସିଛି । ବର୍ଷା କବିର ପ୍ରିୟତମା । କବି ତା'ର ବିଚ୍ଛେଦକୁ ପ୍ରତି ମୁହୂର୍ତ୍ତରେ ଅନୁଭବ କରିଛନ୍ତି । ଅତୀତର ସ୍ୱପ୍ନିଳ ବର୍ଣ୍ଣମୟ ସମୟଗୁଡିକର ସ୍ମୃତି ସବୁ ତାଙ୍କ ଆଖି ଆଗରେ ଫିଟି ପଡିଛି ।

"ସେହି ଦିନ ମନେଅଛି ବିଦାୟର ବେଦନାରେ /
ଅନ୍ଧକାର ପାପୁଲିରେ ଚିପି ବରଷାର ଆଖି /
ଉର୍ଦ୍ଧ୍ୱର ମେଘକୁ ତୋଳି ପିଇଥିଲି ଅଭିମାନ ସୁରା /
ଭିଜି ଭିଜି ବିରହର ଉନ୍ମତ୍ତ ଫେଣରେ " (ପାଟଶାଣୀ ପ୍ରସନ୍ନ , ବର୍ଷା , ପୃ-୧୫)

ପୁରାତନ ଶତାବ୍ଦୀରେ ମଣିଷର ଦୃଷ୍ଟିକୋଣ ସତ୍ୟାଶ୍ରୟୀ ଥିଲା । ସତ୍ୟ ଭାଷଣ ଉପରେ ଜୀବନର ଗତି ନିର୍ଭର କରୁଥିଲା । ଯେତେବେଳେ କଳ୍ପନା ନାଆଁରେ କିଛି କାବ୍ୟିକ ଛଳନା ଏହି ସତ୍ୟ ଭିତରେ ଅନୁପ୍ରବେଶ କଲା । ସେତେବେଳେ ସ୍ୱୈରବାଦୀ ଅବଧାରଣାରେ କିଛି ପରିବର୍ତ୍ତନ ଦେଖାଦେଲା । ଇତିହାସ ଓ ଅଭିଜ୍ଞତା ଭିତରେ ପ୍ରଚ୍ଛନ୍ନ ଭାବରେ ରହିଥିବା ବାସ୍ତବତା, ଯାହା ବହିଃ ବାସ୍ତବତାଠାରୁ ଅଧିକ ବଳିଷ୍ଠ ଏବଂ ସତ୍ୟ - ତାହା ସ୍ୱୈରବାଦୀ ଚେତନା ପାଖରେ ଦୁର୍ବଳ ହେଲା । କାରଣ କାବ୍ୟିକ ଛଳନାକୁ ଶିଳ୍ପୀ ଅନୁମୋଦନ କଲା । କବି ପାଟଶାଣୀ ତାଙ୍କ କବିତାରେ କାବ୍ୟିକ

ଛଳନା ଅପେକ୍ଷା ଅନ୍ତର୍ନିହିତ ବାସ୍ତବତାକୁ ଅଧିକ ଗୁରୁତ୍ୱ ଦେଇଛନ୍ତି । ଏହି ଆଧାରରେ ଇତିହାସ ଓ ସ୍ୱୈରବାଦୀ ଭାବାବେଗ ଭିତରେ ବାସ୍ତବ ସତ୍ୟକୁ ଅଧିକ ଦେଖିହୁଏ । ''ଖୋର୍ଦ୍ଧାର କବିତା ମୁଁ ପଢେ'' (୧୯୮୯) ଏହାର ଏକ ଜ୍ୱଳନ୍ତ ନିଦର୍ଶନ । ସମଗ୍ର କବିତା ପୁସ୍ତକଟି ଖୋର୍ଦ୍ଧାର ଅତୀତ ଇତିହାସ ଓ ସେହି ଇତିହାସର ନାୟକମାନଙ୍କୁ ନେଇ ରଚିତ । କବି ବର୍ତ୍ତମାନରେ ଥାଇ ଇତିହାସକୁ ପୁନରାବୃତ୍ତି କରିଛନ୍ତି । ଏଥିରେ ସେ ଏକ ନିର୍ଦ୍ଦିଷ୍ଟ ଇତିହାସ ଓ ନିର୍ଦ୍ଦିଷ୍ଟ ଘଟଣାର କ୍ରମିକ ବର୍ଣ୍ଣନା କରିଛନ୍ତି । କିନ୍ତୁ ସ୍ୱୈରବାଦୀ ପ୍ରାଣଟି ଅଧିକ ସଚେତନ ଥିଲେ ସୁଦ୍ଧା ତାଙ୍କର ପ୍ରେମ କବିତା 'ଦେଖାହେଲେ କହିବି ସେ କଥା' କବିତା ପୁସ୍ତକରେ ସ୍ୱୈରବାଦୀ ଆବେଗଟି ବେଶୀ ଜୀବନ୍ତ ଓ ହୃଦୟଗ୍ରାହୀ ।

ଇତିହାସର ପ୍ରତିଟି ଚରିତ୍ର ବର୍ଣ୍ଣନା କଲାବେଳେ କବି ବେଶୀ ଭାବ ପ୍ରବଣ ହୋଇପଡନ୍ତି । ଶିଳ୍ପକଳା ଦୃଷ୍ଟିରୁ ପ୍ରବଣତା କବିତାରେ ବ୍ୟତିକ୍ରମ ସୃଷ୍ଟିକଲେ ମଧ୍ୟ ସ୍ୱୈରବାଦୀ ଅବଧାରଣାରୁ ପ୍ରବଣତାକୁ ବାଦ୍ ଦେଇହେବ ନାହିଁ । ଇତିହାସର ବହୁ ଚର୍ଚ୍ଚିତ ଅଧ୍ୟାୟକୁ ସ୍ମରଣ କଲାବେଳେ କବି ବିଷାଦଗ୍ରସ୍ତ ହୋଇଛନ୍ତି । ସ୍ୱୈରବାଦୀ ଶିଳ୍ପୀ ମାନେ ଏହି ବିଷାଦ ବୋଧରେ ବିଶ୍ୱାସ କରନ୍ତି । ଇତିହାସକୁ ଘାଣ୍ଟି ନିଜଅନୁଭବକୁ କ୍ଷତାକ୍ତ କରିଛନ୍ତି ଅଥଚ ସେଦିନର ସେ ଉଷ୍ମତା ଏବେ ମଣିଷର ରକ୍ତରେ ନାହିଁ । ସମୟର ଅନ୍ତସ୍ରୋତରେ ସେ ସବୁ ହଜିଯାଇଛି । ସମୟ ସାମ୍ନାରେ ସେ ସବୁ ଖଣ୍ଡ ଖଣ୍ଡ ହୋଇଭାଙ୍ଗି ପଡିଛି ।

''ଖାଁ ଖାଁ ଲାଗେ ଇତିହାସକୁ ଖୋଜିଲେ /

ଲକ୍ଷେ ନାରୀରଲୋତକ ଏକାଠି ମିଶିଲେ /

ସମୁଦ୍ରର କେତେ ଜଳକୁ ତୁଳନା କରାଯାଇ ପାରେ ?'' (ପାଟଣାଣୀ ପ୍ରସନ୍ନ - ଖୋର୍ଦ୍ଧାର କବିତା ମଁ ପଢେ । ପୃ-୩ )

ସ୍ୱୈରବାଦୀ ଚେତନା ପର୍ଯ୍ୟାୟରେ କବିଙ୍କର ଏହି ଇତିହାସ ଦୃଷ୍ଟି ଅନେକାଂଶରେ ତାଙ୍କ ଜୀବନର ବାସ୍ତବତା ସହିତ ସମନ୍ୱୟ ରକ୍ଷାକରିଛି । କାବ୍ୟିକ ଆଦର୍ଶ ସହିତ ଏହି ବାସ୍ତବତାର ସମିଶ୍ରଣ ଘଟିଛି । ଶୈଳୀ ଓ ଶବ୍ଦ ସଂଯୋଜନାକୁ ବାଦ୍ ଦେଲେ କବି ଭାବବସ୍ତୁ ଦୃଷ୍ଟିରୁ ଅତିମାତ୍ରାରେ ଆଶାବାଦୀ, ଇତିହାସର ପୁରୋବୃତ୍ତିରେ ତାଙ୍କର ବିଶ୍ୱାସ । ସେଥିପାଇଁ କବିତାରେ ଅନୁରୂପ ଆହ୍ୱାନ ଦେଇଛନ୍ତି କବି । କବିଙ୍କର ବୌଦ୍ଧିକ ଆବେଗ ଏଠାରେ ବଳିଷ୍ଠ ନୁହେଁ । ପ୍ରଥମରୁ କୁହାଯାଇଛି, ନିର୍ଦ୍ଦିଷ୍ଟ ପରିବେଶ ଓ ଘଟଣାର ଧାରାରେ ରଚିତ ଏହି କବିତା ପୁସ୍ତକ ବକ୍ତବ୍ୟ ଦୃଷ୍ଟିରୁ ଦୁର୍ବଳ ନୁହେଁ । କିନ୍ତୁ କବିତାର ବର୍ଣ୍ଣନା ଧର୍ମୀ ଶୈଳୀ ଓ ଆବଶ୍ୟକତା ଠାରୁ ଅଧିକ ବର୍ଣ୍ଣନା ସ୍ଥାନେ ସ୍ଥାନେ ବ୍ୟାଘାତ ସୃଷ୍ଟି କରେ । ସ୍ୱୈରବାଦୀ ଆବେଗ ଓ ସେହି ଆବେଗର ଆଧାରରେ ଅତୀତ ପ୍ରତି ଏକ ବିଷାଦବାଦୀ ଦୃଷ୍ଟିଭଙ୍ଗୀ ଯଥାର୍ଥଭାବେ କବିତାରେ ରୂପଲାଭ କରିଛି । କବି ଶୋଇଯାଇଥିବା ଅତୀତକୁ ଉଠାଇବାର ସ୍ୱପ୍ନରେ ବିଭୋର ହୋଇଛନ୍ତି ।

ସ୍ୱୈରବାଦୀ କହିବା ମାତ୍ରେ ସାଧାରଣ ଅବବୋଧରେ ପ୍ରେମ, ପ୍ରଣୟ, ସୁଦୂର ପ୍ରୀତି, ସ୍ମୃତିଚାରଣ ଇତ୍ୟାଦି ଧାରଣା ମନକୁ ଆସେ । ଏସବୁ କବି ପାଟଣାଣୀଙ୍କ କବିତାରେ ଜୀବନ୍ତ ଭାବରେ ପ୍ରତିଫଳିତ ହୋଇଥିବା ଲକ୍ଷ୍ୟ କରାଯାଏ । ସାମ୍ପ୍ରତିକ ସ୍ଥିତିକୁ ଭୁଲି ପ୍ରେମ ପ୍ରତି ଆତ୍ମତ୍ୟାଗ କରିବା,

ମୃତ୍ୟୁକୁ ସ୍ୱୀକାର କରିବା ଏବଂ ପ୍ରିୟତମାର ସ୍ପର୍ଶରେ ନିର୍ବାଣ ପାଇଯାଉଥିବା ଚିନ୍ତାଧାରାରେ ''ଦେଖା ହେଲେ କହିବି ସେ କଥା''ର କବିତା ଗୁଡ଼ିକ ପରିପୁଷ୍ଟ । ଏହି ପୁସ୍ତକରେ ଥିବା କବିତା ଗୁଡ଼ିକୁ ପାଠ କଲେ ଏକ ଜୀବନ୍ତ ନାରୀର ନୂପୁର ନିକ୍ୱଣ, ତା'ର ପାଣିକାଚର ରୁଣୁଝୁଣୁ ଶବ୍ଦରେ ପାଠକ ପୁଲକିତ ହୁଏ । ପ୍ରିୟତମା ଓ ତା'ର ପ୍ରତିଟି ଅନୁଭବ ପ୍ରତି କବି ଗଭୀର ଭାବେ ଯତ୍ନଶୀଳ ଓ ନିଷ୍ଠାପର । ପ୍ରିୟତମାର ଅଭାବ ବୋଧରେ କବିଙ୍କ ଭିତରେ ବିଷାଦର ପାହାଡ ଠିଆ ହୋଇଛି । ସ୍ୱୈରବାଦୀ ଭାବଧାରା ସମ୍ବଳିତ ସାହିତ୍ୟ ସୃଷ୍ଟି କରିବାରେ କବି ପାଟ୍ଟଶାଣୀ ସିଦ୍ଧହସ୍ତ । କବିତା ପୁସ୍ତକର ମୁଖବନ୍ଧରେ କବି ସୁରେଶ ପରିଡା ଏ ସମ୍ପର୍କରେ ଲେଖିଛନ୍ତି ଯେ, ''ଚର୍ଚ୍ଚା ହୋଇ ଆସୁଥିଲା କବି ପାଟ୍ଟଶାଣୀ ସ୍ୱୈରବାଦୀ କବିତା ଲେଖିବାରେ ଅତ୍ୟନ୍ତ ଦୁର୍ବଳ । ଦୀର୍ଘ ସମୟ ଧରି ସେ ଲେଖନୀ ଚାଳନା କରି ଆସୁଥିଲେ ସୁଦ୍ଧା ଗୋଟିଏ ପ୍ରତିନିଧି ସ୍ଥାନୀୟ ସ୍ୱୈରବାଦୀ କବିତା ସଙ୍କଳନ କରିପାରିଲେ ନାହିଁ ।'' ଦେଖା ହେଲେ କହିବି ସେକଥା '' ର ପ୍ରକାଶନ ଏ ଚର୍ଚ୍ଚାର ପୂର୍ଣ୍ଣଚ୍ଛେଦ ଟାଣିବ । (ପାଟ୍ଟଶାଣୀ ପ୍ରସନ୍ନ - ଦେଖାହେଲେ କହିବି ସେ କଥା । ମୁଖବନ୍ଧ (ପ୍ରଦକ୍ଷିଣ)) - ସମୀକ୍ଷକ - ସୁରେଶ ପରିଡା । ପୃ-୩ )

''ବର୍ଷା'' କବିତା ପୁସ୍ତକରେ କବିଙ୍କର ଆବେଗିକ କାବ୍ୟ ପୁରୁଷଟି ଅଧିକ ବଳିଷ୍ଠ । ସୌନ୍ଦର୍ଯ୍ୟ ଅନୁଭୂତିର ତୀବ୍ରତା ସହିତ ସ୍ୱୈରବାଦୀ ଅବବୋଧର ଗଭୀରତା ପରିଦୃଷ୍ଟ ହୁଏ । ସୁନ୍ଦରର ଅନୁଭବ ଭିତରେ ଦୁଃଖ ଅସହାୟତା ଆଦି ରହିଥାଏ । ଆନନ୍ଦ ଓ ହର୍ଷକୁ ନେଇ ଏହାର ଅନୁଭବ ଯେତେ ଗଭୀର ହୁଏ, ଦୁଃଖରେ କବିର ଅନୁଭବ ମଧ୍ୟ ସେତିକି ଗଭୀର ହୋଇଥାଏ । କାରଣ ଦୁଃଖର ମଧ୍ୟ ଏକ ନିଜସ୍ୱ ସୌନ୍ଦର୍ଯ୍ୟ ରହିଛି । ବାସ୍ତବ ଜୀବନର ଦୁଃଖ ଭିତରୁ କବି ସୁଖ ଖୋଜେ । ସାଧାରଣ ଆଖିରେ ଦୁଃଖର ସ୍ୱରୂପ ଯାହା କବିପାଇଁ କିନ୍ତୁ ତାହା ନୁହେଁ । ଦୁଃଖ ଏଠାରେ କବିକୁ ଦୁଃଖ ଦେଇପାରେ ନାହିଁ, ବରଂ ସେ ଏଥିରୁ କାବ୍ୟାନନ୍ଦ ଲାଭ କରେ । ଅବଶ୍ୟ କବି ମାତ୍ରେ ଏହି ଅନୁଭବ ଭିନ୍ନ ଭିନ୍ନ ।

କବି ପାଟ୍ଟଶାଣୀଙ୍କ ସ୍ୱୈରବାଦୀ ଅନୁଭବ ଭିତରେ ସୌନ୍ଦର୍ଯ୍ୟ ଓ ବିଷାଦ ଉଭୟଙ୍କୁ ଦେଖି ହୁଏ । ପ୍ରକୃତିକୁ ଉପଭୋଗ କରିବା ପାଇଁ କବିଙ୍କର ପ୍ରବଳ ମୋହ । ତେଣୁ ସେ ଆବେଗିକ ସ୍ତରରେ ନିଜର ସବୁ ଅନୁଭବକୁ ପ୍ରକୃତି ସହିତ ଯୋଡି ଦେଇଛନ୍ତି । ପ୍ରକୃତିରେ ଯେତେ ରୂପ ପ୍ରକାଶ ପାଇଛି, ସେସବୁ ଭିତରେ ତା'ର ନାରୀରୂପ ପାଠକ ଓ କବି ଉଭୟଙ୍କୁ ଆକୃଷ୍ଟ କରେ । ସ୍ୱୈରବାଦୀ ଅନୁଭବର ଯେଉଁ ଦିଗ ଗୁଡ଼ିକୁ ଆଶ୍ରୟ କରି କବି ଅତିମାତ୍ରାରେ ଏକ ସ୍ୱୈର ଆନନ୍ଦର ନିକଟବର୍ତ୍ତୀ ହୋଇଛନ୍ତି । ସେଗୁଡ଼ିକ ହେଲା, ସୌନ୍ଦର୍ଯ୍ୟ ପ୍ରୀତି, ପ୍ରେମ, ପ୍ରକୃତି ଓ ନାରୀ । କବିତାର ଅନ୍ୟାନ୍ୟ ରୋମାଣ୍ଟିକ ଅନୁଭବଠାରୁ ଏସବୁର ତୀବ୍ର ଅନୁଭବ ଲକ୍ଷ୍ୟ କରିହୁଏ । କବିଙ୍କର ପ୍ରେମ, ପ୍ରକୃତି ଓ ନାରୀ ପ୍ରତି ସମର୍ପିତ ମନୋଭାବ କାବ୍ୟ ଦୃଷ୍ଟିରେ ବଳିଷ୍ଠ । ସ୍ମୃତିର କଣ୍ଟକିତ ନନ୍ଦନବନରେ ପ୍ରିୟତମାକୁ ଅପେକ୍ଷା କରିବାର ବ୍ୟାକୁଳତା ପାଠକକୁ ଭାବବିହ୍ୱଳ କରେ ।

ଯୁଗେ ଯୁଗେ ସବୁ ସମୟରେ କବିତାର ସ୍ୱୈରବାଦୀ ଦିଗଟି ପାଠକଙ୍କୁ ଅଧିକ ଆକୃଷ୍ଟ କରିଥାଏ । ଏହି ପରିପ୍ରେକ୍ଷୀରେ କବି ପାଟ୍ଟଶାଣୀଙ୍କର ସ୍ୱୈରବାଦୀ ଅନୁଭବ ପ୍ରତି ଥିବା ନିଷ୍ଠାପର ସ୍ୱୀକୃତିକୁ ବିଚାର କରା ଯାଇପାରେ ।

ଜୀବନର ସାମୟିକ ଚଳମାନ ଘଟଣାବଳୀ ଓ ତା'ର ପ୍ରତିକ୍ରିୟାଗୁଡ଼ିକ ବାସ୍ତବ । ମାତ୍ର ଏହାର ଊର୍ଦ୍ଧ୍ୱରେ କବିର ଚେତନା ଅନ୍ୟ କିଛି ଖୋଜେ । ଆଉ କାହା ପାଇଁ ନିଜକୁ ଉତ୍ସର୍ଗୀକୃତ କରିବା

ଆଶାରେ ଥାଏ । ତାହାରି ଭିତରେ ଯାହା ନିତ୍ୟ, ଯାହା ଶାଶ୍ୱତ ତାହା କବିକୁ ଅଧିକ ଆଚ୍ଛନ୍ନ କରେ । କବି ପାଟଶାଣୀଙ୍କ କ୍ଷେତ୍ରରେ ଏହି ନିତ୍ୟ ତଥା ଶାଶ୍ୱତ ବସ୍ତୁଟି ଏକ ଧାରାବାହିକ ଭାବାବେଗ, ଯାହା ହେଉଛି ପ୍ରେମ, ଏଥିପ୍ରତି କବି ଅଧିକ ନିଷ୍ଠାବାନ୍ । କାବ୍ୟ ସାଧନାର ଉତ୍ତରଣ ପର୍ଯ୍ୟାୟରେ କବିଙ୍କଠାରେ ଦେଖାଦେଇଛି ସ୍ୱୈରବାଦୀ ଆଦର୍ଶ । ସ୍ୱୈର ଅନୁରାଗରେ କବି ପ୍ରେମ ଅନୁଭବର ଶୀର୍ଷରେ ପହଞ୍ଚି ପାରିଛନ୍ତି । ପ୍ରେମ ଏଠାରେ କବିଙ୍କ ପାଇଁ ପରମ ସତ୍ୟରେ ପରିଣତ ହୋଇଛି । କବିଙ୍କୁ ଏହା ଦିବ୍ୟାନନ୍ଦରେ ସ୍ଥିତପ୍ରଜ୍ଞ କରିଛି । କବି ସାଧାରଣ ସତ୍ୟଠାରୁ ଅନେକ ଦୂରକୁ ଅତିକ୍ରମ କରିଯାଇଛନ୍ତି । ଫଳରେ ସାମୟିକ ଘଟଣା ବଳୀର ବାସ୍ତବତାକୁ ଉଲଂଘନ କରିଛନ୍ତି । ହେଲେ କଳାର ମର୍ଯ୍ୟାଦାକୁ କେଉଁଠି କ୍ଷୁର୍ଣ୍ଣ କରିନାହାନ୍ତି । ପ୍ରତ୍ୟେକ ଶିଳ୍ପୀ ତା'ର ପରିବେଶ ଓ ଅନୁଭବ ପ୍ରତି ଯଥାସମ୍ଭବ ସଚେତନଶୀଳ । ଘଟଣା, ପରିବେଶର ପ୍ରତିକ୍ରିୟାକୁ ଚେତନାର ଦର୍ପଣରେ ପ୍ରତିଫଳିତ କରିବା ପାଇଁ କବି ପ୍ରଯତ୍ନ କରନ୍ତି । ସବୁବେଳେ ସମ୍ବେଦନଶୀଳ କାବ୍ୟପୁରୁଷ ଅନୁଭବକୁ ଅପେକ୍ଷା ରଖେ । ନିଜ ଭିତରେ ଯେଉଁ ଈଶ୍ୱରୀଟିକୁ ଅନୁଭବ କରେ, ସ୍ୱୀକାର କରେ, ଅଙ୍ଗୀକାର କରିନେଇ ତା'ର ପ୍ରକାଶରେ ଶିଳ୍ପୀ ସଯତ୍ନ ପ୍ରୟାସ କରିଥାଏ ।

ପ୍ରେମର ସମସ୍ତ ଅନୁଭୂତି ହୃଦୟରୁ ଜନ୍ମ ନିଏ । ଏହି ସବୁ ଅନୁଭୂତିକୁ କାବ୍ୟରୂପ ଦେବାକୁ ଶିଳ୍ପୀର ନାନ୍ଦନିକ ଦୃଷ୍ଟି କୁହାଯାଏ । ଏହାହିଁ ସ୍ୱୈରବାଦୀ ଚିତ୍ତବୃତ୍ତି । ପ୍ରେମର ଅନୁଭବବେଳେ ସଂରକ୍ଷଣ କ୍ରିୟାଟି କବି ହୃଦୟରେ ଅଧିକ ହୁଏ । କିନ୍ତୁ ଅନ୍ୟାନ୍ୟ ଭାବବସ୍ତୁ, ଘଟଣା ଓ ପରିବେଶାଦିକୁ ନେଇ କବିତା ରଚନା ବେଳେ ସଂରକ୍ଷଣ ପ୍ରକ୍ରିୟା ଏତେ ଦ୍ରୁତ ହୁଏ ନାହିଁ । ଫଳରେ ନାନ୍ଦନିକ ମହତ୍ତ୍ୱ ଓ ମୂଲ୍ୟବୋଧ ଦୃଷ୍ଟିରୁ ସେସବୁ କବିତା ଦୁର୍ବଳ ହୁଏ । ସାଧାରଣ ଦୃଷ୍ଟିରେ ଏହି ନାନ୍ଦନିକ ମୂଲ୍ୟବୋଧ ସଚେତନ ଭାବେ ନଥାଏ । କିନ୍ତୁ କବି ବାସ୍ତବତା ପ୍ରତି ସଚେତନ ରହି ତାକୁ କବିତାରେ ମାଧୁର୍ଯ୍ୟପୂର୍ଣ୍ଣ ରୂପ ଦିଏ । ପ୍ରକୃତରେ କଳାର କାମ ଆଉଥରେ ସୃଷ୍ଟି କରିବା । କବି ନିଜର ଅନୁଭୂତିକୁ ଶାଣିତ କରିବା ଦ୍ୱାରା ଅନୁଭୂତି ଆପେ ଆପେ ସଜୀବ ହୋଇ ଉଠେ । ଏଠାରେ ତତ୍ତ୍ୱର ସୌନ୍ଦର୍ଯ୍ୟ ଅପେକ୍ଷା ଆକୃତି ରୂପତତ୍ତ୍ୱର ସୌନ୍ଦର୍ଯ୍ୟ ବଡ ହୁଏ । ସାହିତ୍ୟିକର ଏହି ଯାଦୁ ସାଧାରଣ ଆଖିରେ ବିରାଟ ରହସ୍ୟ ହୋଇ ରହିଥାଏ । କିନ୍ତୁ କାବ୍ୟରୂପରେ ଏହି ସ୍ୱୈରବାଦୀ ଭାବାବେଗ, ପ୍ରେମର ଗଭୀର ଅନୁଭବ ଓ ସୌନ୍ଦର୍ଯ୍ୟାନୁଭୂତି ଜୀବନ୍ତ ଭାବରେ ପ୍ରକାଶିତ ହୁଏ ।

ଏହି ପରିପ୍ରେକ୍ଷୀରେ କବିଙ୍କର ସ୍ୱୈରବାଦୀ ଭାବଭୂମିଟିକୁ ସହଜରେ ଆବିଷ୍କାର କରି ହୁଏ । ପ୍ରିୟତମା ସହ କବିର ସମ୍ପର୍କ ଓ ଏହି ସମ୍ପର୍କର ଅନ୍ତରାଳରେ ଥିବା ପ୍ରଚ୍ଛନ୍ନ ରହସ୍ୟକୁ ଉଦ୍‌ଘାଟନ କରିବାକୁ ଯାଇ କବି ନିଜେ ସେହି ରହସ୍ୟରେ ଛନ୍ଦି ହୋଇଯାଇଛନ୍ତି । କବିଙ୍କ ଭିତରେ ନିଜକୁ ସମର୍ପଣ କରିଦେବାର ଭାବ ଜାଗ୍ରତ ହୋଇଛି । କବିର ସହଜାତ ଗୁଣ ସ୍ୱୈରବାଦୀ ଅନୁଚିନ୍ତା ପ୍ରତି କିପରି ଯତ୍ନଶୀଳ ହୋଇଛି, କବି ନିଜେ ଏ ସମ୍ପର୍କରେ କହନ୍ତି - ''ରୋମାଣ୍ଟିସିଜିମ୍ ଭିତରେ ଗୂଢତତ୍ତ୍ୱ ନିହିତ ଥାଏ । ତା'ରି ରହସ୍ୟ ଉଦ୍‌ଘାଟନ କରିବା ତ କବିର ଧର୍ମ । ରହସ୍ୟ ହିଁ ସଦା ରହସ୍ୟ । ଦ୍ୱନ୍ଦ୍ୱରେ ପଡୁଥିବା ଲୋକକୁ ମତିଭ୍ରମ ଛଡା ଆଉ କ'ଣ କୁହାଯାଇ ପାରେ । ମୋର କବିତା ଅତି ସ୍ୱଚ୍ଛ । କାହାକୁ ଦ୍ୱନ୍ଦ୍ୱରେ ପକାଇବା ପାଇଁ ଏହା ଅଭିପ୍ରେତ ନୁହେଁ । କବିତା ସୁଅର ତଅଁର ଭିତରେ ପଡିଥିବା ଲୋକ ଯଦି ନଦୀକୁ ଅସ୍ୱୀକାର କରିବ, ତେବେ ମୋର କିଛି କରିବାର ନାହିଁ । ନଦୀ କେବେ ବି ସିଧା ବହେନି । କବିତାର ଭାଷା ନାରୀର ବାଙ୍କ ଚାହାଣୀ ପରି ଏକାନ୍ତ ଛନ୍ଦମୟ, କିନ୍ତୁ ଅବୁଝା ।'' (୯୮) ପାଟଶାଣୀ ପ୍ରସନ୍ନ - ''ଆଳାପ ଆଲୋଚନା'' ('ଅଜିଗର୍ତ୍ତ' କବିତା ବିଶେଷାଙ୍କ) । ପୃ-୬୫-୬୬ ।

କବି କଳ୍ପନାର ବିଚିତ୍ର ବର୍ଣ୍ଣାଳୀରେ ଆପଣାର ପ୍ରେମକୁ ଆଲୋକିତ କରିଛନ୍ତି । ନିଜକୁ ଆତ୍ମୋତ୍ସର୍ଗରେ ହଜାଇ ଦେବାରେ ଶାଶ୍ୱତ ଅନୁଭବ ଲୁଚି ରହିଥାଏ, ତାଙ୍କ କବିତାରେ ନିଜର ସ୍ଥୂଳ ଶରୀର ଭିତରେ ଅନ୍ତର୍ନିହିତ ପୁରୁଷଟି ବାରମ୍ବାର ତରଙ୍ଗେ । ସମର୍ପିତ ହୁଏ ପ୍ରେମ ନିକଟରେ । ନିଃଶ୍ୱାସର ବଂଶୀରେ ଶୁଣିଛନ୍ତି ପ୍ରେମର ବେହାଗ । ''ଦେଖା ହେଲେ କହିବି ସେ କଥା'' କବିତା ପୁସ୍ତକର ପ୍ରଥମ କବିତା 'ଦେଖାହେଲେ କହିବି ସେକଥା' ରେ ଏକ ପ୍ରେମମୟଭାବ ସ୍ପଷ୍ଟ । ସ୍ଥୂଳ ସତ୍ତାର ମୃତ୍ୟୁ ପ୍ରତି କବି କାତର ନୁହଁନ୍ତି । ସେ ନିଜେ ପ୍ରିୟତମାର ପାଦତଳେ କଳ୍ପିତ ସ୍ୱର୍ଗର ଅନୁସନ୍ଧାନ ଏକ ନାନ୍ଦନିକ ପରିପ୍ରକାଶ ମାଧ୍ୟମରେ କରିଛନ୍ତି ।

''ରକ୍ତ ମୋର ତୋ ମଥାରେ

ସିନ୍ଦୂର ନ ହୋଇପାରେ

ତୋ' ପାଦେ କରିଦେ ତାକୁ

ଅଳତାର ଗାର

କଣ୍ଟା ହୋଇ ମୋ ପାଦରେ

ଫୁଟିଯାଉ ତୋ ବେଦନା

ନିଃଶ୍ୱାସ ତୋ ହୋଇଯାଉ

ବଂଶୀର ସ୍ୱର ।'' (ପାଟଣାଣୀ ପ୍ରସନ୍ନ - ଦେଖାହେଲେ କହିବି ସେ କଥା । ପୃ-୧) । ସମସ୍ତ ପ୍ରଯତ୍ନ ଶକ୍ତି ଓ ଭାବଶକ୍ତିକୁ ବିନିଯୋଗ କରି କବି ନିଜ ରକ୍ତରେ ପ୍ରେମର ମର୍ମର ଶୁଣିଛନ୍ତି । ଏହି ବିଶେଷ ଶକ୍ତି ସହିତ ସହଜାତ ଉପଲବ୍ଧି ପ୍ରତ୍ୟେକଙ୍କ ଭିତରେ ରହିଛି । ମାତ୍ର କବି ବା ଶିଳ୍ପୀ ଏହାର ସଦୁପଯୋଗ କରନ୍ତି । ନିଜର ଅସାଧାରଣ ଶକ୍ତି ବଳରେ ଏକ ବ୍ୟାପକ ବିଶ୍ୱର ଅନୁଭୂତିକୁ ନିଜ ଭିତରେ ଅନୁଭବ କରନ୍ତି । ଅନ୍ତର୍ନିହିତ ସତ୍ୟର ଅନୁସନ୍ଧାନ କରନ୍ତି । କବି ଆବେଗିକ ପରିକ୍ରମା ଦେଇ କବିର ଚେତନା ସାର୍ବଜନୀନ ସ୍ତରରେ ପହଞ୍ଚେ । ପ୍ରତ୍ୟକ୍ଷ ଜୀବନରେ ଲୁଚି ରହିଥିବା ଯନ୍ତ୍ରଣାକୁ କବି ଆନନ୍ଦରେ ପରିଣତ କରେ । ପ୍ରିୟତମାର କଣ୍ଠରେ ନିଜର ଶାଣିତ ଅନୁଭବକୁ ପ୍ରକାଶ କରିଛନ୍ତି କବି ପାଟଣାଣୀ । ''ସନ୍ନ୍ୟାସୀ ତୁମ ହାତ ରଖିଦିଅ ପାପୁଲିରେ'' କବିତାରେ ଯେପରି ଲକ୍ଷ୍ୟ କରାଯାଏ

''ମୁଁ ପିନ୍ଧିଥିବା କଣ୍ଟାର ମୁକୁଟ

ପିନ୍ଧାଇ ଦେବି ତୁମକୁ, ପିନ୍ଧିବ ?

ମୁଁ ରହୁଥିବା ଗୁମ୍ଫାର

ଦ୍ୱାର ଖୋଲି ଦେବି, ରହିବ ?

ସନ୍ନ୍ୟାସୀ ଆଞ୍ଜୁଳା ପାତି ଦେଉଛି ତୁମକୁ

ପ୍ରାପ୍ୟ ମୋର ଦିଅ ।'' (ପାଟଣାଣୀ ପ୍ରସନ୍ନ ଦେଖାହେଲେ କହିବି ସେ କଥା ପୃ-୭) ।

ସବୁ ଯନ୍ତ୍ରଣାକୁ ମୁକୁଟ କରି ପିନ୍ଧିଥିବା କବିତାଙ୍କର ପ୍ରିୟତମାକୁ ସେଥିରେ ଅଂଶୀଦାର କରିଛନ୍ତି ।

କବି ଘୁରି ବୁଲିଛନ୍ତି ପ୍ରେମର ଶାଶ୍ୱତ ଅନୁସନ୍ଧାନରେ । ପ୍ରେମ ଏଠାରେ ଦେହରୁ ଦେହାତୀତକୁ ଗତି କରିଛି । ପ୍ରିୟତମା ଆଉ ନିଜ ଭିତରେ ଥିବା ଦୂରତ୍ୱକୁ ସେ ନିଭେଇ ଦିଅନ୍ତି । ଏକାକାର ହୋଇଛି ସବୁ ଅନୁଭବ । ସ୍ୱପ୍ନଠାରୁ ବାସ୍ତବ ଜୀବନ ସତ୍ୟହେଲେ ମଧ୍ୟ ସୁନ୍ଦର ନୁହେଁ । ସେଇଥିପାଇଁ କବି ଏହି ସତ୍ୟର ସୀମା ଲଂଘନ କରିଯାଏ ତଥାପି କଳାର ମର୍ଯ୍ୟାଦା ନଷ୍ଟ ନ ହୋଇ ବରଂ କବିର ବକ୍ତବ୍ୟ ଭିତରର ପ୍ରଚ୍ଛନ୍ନ ସତ୍ୟ ପ୍ରକାଶ ପାଏ କବିତାରେ । ନିଜର ପ୍ରିୟତମା ଓ କବି ଦୁଇଟି ସ୍ଥୂଳସତ୍ତା । କିନ୍ତୁ ପ୍ରାଣରେ ସେମାନେ ସବୁବେଳେ ଏକ ଓ ଅଭିନ୍ନ । ପ୍ରିୟତମାର ଦେହ, ମନ ଆତ୍ମାରେ କବି ସ୍ମୃତିଟିଏ ହୋଇ ରହିଯିବାକୁ ଇଚ୍ଛା କରିଛନ୍ତି । ଯେପରି-

''କେଉଁ ଆଡେ ଯିବ ?

ମୋର ପ୍ରତ୍ୟେକ ଶବ୍ଦର ପ୍ରତିଧ୍ୱନି ।

ତୁମ ପଛେ ପଛେ ଥିବ

କେଉଁ ଆଡେ ଯିବ ?

କି ଦିନ କି ରାତି ମୋ ସ୍ମୃତିର ପରଶରେ

ଥରି ଉଠୁଥିବ ।

( ପାଟଶାଣୀ ପ୍ରସନ୍ନ- ଦେଖାହେଲେ କହିବି ସେ କଥା । ପୃଷ୍ଠା-୧୩)।

ଜୀବନର ଅନନ୍ତ ଯାତ୍ରା ପଥରେ ଯାଇ ଯେଉଁ ଅନ୍ଧକାର ବିନ୍ଦୁରେ ସେ ପହଞ୍ଚନ୍ତି ସେଠି । ମୃତ୍ୟୁକୁ ଦେଖି ସେ ଭୟ ନକରି ବରଂ ମୃତ୍ୟୁରେ ନିଜର ପ୍ରିୟାକୁ ନିବିଡଭାବେ ଅନୁଭବ କରନ୍ତି । ନିଜକୁ ନିଃଶେଷ କରିଦେବା ପ୍ରେମର ମହନୀୟ ଗୁଣ । ଏହି ଉତ୍ସର୍ଗୀକୃତ ପ୍ରେମର ବଳିଷ୍ଠ ଆତ୍ମପ୍ରକାଶ ତାଙ୍କ କବିତାକୁ କରିଛି ଋଦ୍ଧିମନ୍ତ । ପ୍ରିୟାକୁ କହିବ ନିଜହାତେ ଜାଳିଦେବ ଜୁଇ'' କବିତାରେ ।

''ଶୁଣ ଶୁଖିଲା ପତ୍ରରେ

ସଜେଇ ଦେବ ମୋର କୋକେଇ

ଓ ପ୍ରିୟାକୁ କହିବ

ଜାଳିଦେବ ନିଜହାତେ ଜୁଇ ।

(ପାଟଶାଣୀ ପ୍ରସନ୍ନ - ଦେଖାହେଲେ କହିବି ସେ କଥା । ପୃଷ୍ଠା-୪୬ ) ।

ଅନୁଭବ ଭିତରେ ସେ ଏକ ବଳିଷ୍ଠ ଯୋଗସୂତ୍ର ରଖିଛନ୍ତି । ଗୋଟିଏ ଅନୁଭବ ତାଙ୍କୁ ସଜୀବ କଲାବେଳେ ଅନ୍ୟସବୁ ଅନୁଭବ ଗୁଡିକ ଆପଣା ଛାଏଁ ପ୍ରକାଶ ପାଇଛି । ଏହି ଅନୁଭବ ଗୁଡିକପାଇଁ ତାଙ୍କର ବୌଦ୍ଧିକ ଆବେଗ ଦାୟୀ ନୁହେଁ । କାରଣ ପର୍ଯ୍ୟବେକ୍ଷଣ ଶକ୍ତି ଦ୍ୱାରା କବି ଅନୁଭବ ସହିତ ଆତ୍ମୀୟତା ସ୍ଥାପନ କରିପାରନ୍ତି ନାହିଁ । ଏଥିପାଇଁ ହୃଦୟ ଓ ଆବେଗର ଆବଶ୍ୟକତା ପଡିଥାଏ ।

ଯୁକ୍ତି ଓ ବୁଦ୍ଧି ଉପରେ ଏହା ଆଶ୍ରିତ ନୁହେଁ । ବୁଦ୍ଧି ସୌନ୍ଦର୍ଯ୍ୟର ଆଧାର ନୁହେଁ । ଶାଶ୍ୱତ ପ୍ରେମର ଧାରାବାହିକ ସଞ୍ଚରଣ ପ୍ରତି ବିଶ୍ୱସ୍ତ ହେବା ଦ୍ୱାରା କବିତା ସୌନ୍ଦର୍ଯ୍ୟବନ୍ତ ଓ ପ୍ରାଣବନ୍ତ ହୁଏ । ଆତ୍ମନିଷ୍ଠ ମନୋଭାବର କଷଟିରେ ପ୍ରେମ ପରୀକ୍ଷିତ ହୁଏ । ବୁଦ୍ଧି ବା ଯୁକ୍ତି ବେଳେ ବେଳେ ପରିବେଶକୁ ଅପେକ୍ଷା କରେ । ସବୁକୁ ଅତିକ୍ରମ କରିଯିବାର ଇଚ୍ଛା ଆବେଗ ଦ୍ୱାରା ସମ୍ଭବ ହୁଏ । କଳ୍ପନା ପ୍ରତି ଆସକ୍ତି ରହିବା ପ୍ରେମକବିତାର ଏକ ଆଦର୍ଶ । କଳ୍ପନାର ବହିଃରୂପ ଅପେକ୍ଷା ଅନ୍ତଃସତ୍ତା ପ୍ରତି ଆକୃଷ୍ଟ ହୋଇ ସେ ଅତି କଳ୍ପନାରେ ପହଞ୍ଚିଛନ୍ତି ଓ ଏକ ଚରମ ସତ୍ୟକୁ ଭେଟନ୍ତି । କବି ପ୍ରେମ ଚେତନା ମାଧ୍ୟମରେ ନିଜକୁ, ଜଗତକୁ ଓ ଜୀବନର ସୌନ୍ଦର୍ଯ୍ୟକୁ ବୁଝିବାକୁ ସମର୍ଥ ହୋଇଛନ୍ତି । ଯେପରି-

''ଜୀବନର ମୂଳଉତ୍ସ ହେଉଛି ପ୍ରେମ

ଯଦି ମଣିଷ ବୁଝିପାରେନା

ତେବେ ସେ କେମିତି ବୁଝିବ ଜଗତକୁ ।'' (ପାଟ୍ଟଶାଣୀ ପ୍ରସନ୍ନ- ସମ୍ପର୍କ । ପୃଷ୍ଠା - ୧୫)।

କବି ପ୍ରେମର ମହନୀୟତାରେ ବିଭୋର ହୁଏ । ପ୍ରେମ ଆନନ୍ଦ ସୃଷ୍ଟିକାରୀ ଚେତନା । ପୂର୍ଣ୍ଣ ଆନନ୍ଦହିଁ ଜୀବନର ଶ୍ରେଷ୍ଠ ଉପଲବ୍ଧି । ପ୍ରେମ ଜୀବନକୁ ପ୍ରାଣବନ୍ତ କରେ । ପ୍ରେମର ନିଆଁରେ ଚିରକାଳ ଜଳିବାକୁ କବି ଭଲପାଏ ।

ଏ'ସବୁ କ୍ଷେତ୍ରରେ କବିର ଇନ୍ଦ୍ରିୟ ଅନୁଭୂତିକୁ ବାଦ୍ ଦିଆଯାଇ ପାରିବ ନାହିଁ । ଏ'ସ୍ମୃତିକୁ ଜନ୍ମ ଦିଏ । ଅନୁଭବକୁ ସୂକ୍ଷ୍ମତର କରେ । ସତ୍ୟକୁ କାବ୍ୟରୂପ ଦେବାରେ କଳ୍ପନିକ ବଳ ସାହାଯ୍ୟକରେ । ଲୌକିକ ସତ୍ତା ଭିତରେ ପ୍ରେମର ଅଲୌକିକତା ଲାଖି ରୁହେ । ଏକ ଅନ୍ତର୍ନିହିତ ଭାବ ପ୍ରବଣତା ବଳରେ କବି ବାହ୍ୟ ସୌନ୍ଦର୍ଯ୍ୟକୁ ଅତିକ୍ରମ କରି ଏକ ନିରାକାର ଉପଲବ୍ଧିରେ ବିଶ୍ୱାସ କରେ । କାବ୍ୟ ମାନସର ବିକ୍ଷିପ୍ତ ଭାବପୁଞ୍ଜ ଏକ ନିର୍ଦ୍ଦିଷ୍ଟ ଶୈଳୀରେ ରହି ସଂହତି ସୃଷ୍ଟିକରେ । କବି ଯେତେ ପ୍ରିୟତମା ପ୍ରତି ଏକନିଷ୍ଠ ସେତେ ସେ ବହିର୍ବିଶ୍ୱରୁ ଓହରି ଗୋଟିଏ ଅଦୃଶ୍ୟ ଜଗତରେ ବିଚରଣ କରନ୍ତି । ଦେହର ସରହଦ ଡେଇଁ ଦେହାତୀତରେ ପାଦ ରଖନ୍ତି । ପ୍ରେମର ବହିରଙ୍ଗଠାରୁ ଆତ୍ମିକ ମହନୀୟତା ପ୍ରତି ଅଧିକ ଯତ୍ନବାନ୍ ହୋଇଛନ୍ତି । କବି ବାସ୍ତବ ସତ୍ୟରୁ ମୁକୁଳି ହୃଦୟକୁ ସମ୍ପ୍ରସାରିତ କରନ୍ତି । କବିଙ୍କ ସ୍ୱୈରବାଦୀ ଚେତନା ଭିତରେ ପ୍ରେମ, ପରିସ୍ଥିତି ଓ ପରିବେଶକୁ ଅପେକ୍ଷା ରଖି ନାହିଁ । ଏ'ଅନୁଭୂତି ବସ୍ତୁର ବାହ୍ୟସତ୍ତା ଦ୍ୱାରା ଉଦବୁଦ୍ଧ ହୋଇ ନାହିଁ । ଏହା ସବୁବେଳେ ଅନ୍ତଃସତ୍ତାର ଅପେକ୍ଷା ରଖିଛି। ପ୍ରେମର ଯେଉଁ ଶୀର୍ଷସ୍ଥାନକୁ ଗଲେ ମଣିଷ ବାରମ୍ବାର କ୍ରୁଶବିଦ୍ଧ ହେବାକୁ ପଛାଏ ନାହିଁ । କବି ସେହି ସ୍ତରକୁ ଚାଲିଯାଇଛନ୍ତି କବିତା ମାଧ୍ୟମରେ ।

ସାଧାରଣ ମଣିଷର ଅନୁଭବ ସ୍ତରରେ ଏହା ସମ୍ଭବ ହୋଇନଥାଏ । କଳ୍ପନାର ଖୁବ୍ ଗଭୀରକୁ ପ୍ରବେଶ କରି ଏହି ଅନୁଭବକୁ ପ୍ରତ୍ୟକ୍ଷ କରିବା ଓ ନିଜର ଅହେତୁକ ଇଚ୍ଛାଶକ୍ତି ଓ ପ୍ରଯତ୍ନଶକ୍ତି ଦ୍ୱାରା ଏକାକର ହେବା ଶ୍ରେଷ୍ଠ ପ୍ରେମ । ଶିଳ୍ପୀ ଏତେ ମାତ୍ରାରେ ବାସ୍ତବତାକୁ ଅତିକ୍ରମ କରି ଅନ୍ତର୍ନିହିତ ସତ୍ୟକୁ ଛୁଇଁବା ସହଜ ନୁହେଁ । ଏହି ଦୃଷ୍ଟିରୁ କବିଙ୍କ ସ୍ୱୈରବାଦୀ ଚେତନା ଭିତରେ ଅନୁଭବ ଓ ଭାବର ପ୍ରତ୍ୟକ୍ଷୀକରଣ ସବୁଠାରୁ ତୀବ୍ର ଓ ହୃଦୟ ସ୍ପର୍ଶୀ ହୋଇଛି । ତାଙ୍କ ସ୍ୱୈରବାଦୀ କବିତାରେ ପ୍ରେମ ଏକ ସ୍ଥାୟୀ ଭାବ ସଞ୍ଚାର କରିବା ପାଇଁ ସମର୍ଥ ହୁଏ ।

ପ୍ରକୃତିର ଉପଭୋଗରୁ ଯେଉଁ ସୌନ୍ଦର୍ଯ୍ୟ ଅନୁଭୂତି ଉପଲବ୍ଧ ହୁଏ, ତାହା କବିକୁ ଶାଶ୍ୱତ ଅନୁଭବ ଆଡକୁ ଟାଣିନିଏ । କବିର ପ୍ରକୃତି ପ୍ରତି ଏକ ଅହେତୁକ ଆକର୍ଷଣ ଥିବା ଯୋଗୁଁ କବିତାର ବକ୍ତବ୍ୟ ସାଧାରଣ ସ୍ତରରୁ ଉର୍ଦ୍ଧ୍ୱଚେତନା ସ୍ତରକୁ ଯାଇ ପ୍ରକାଶିତ ହୁଏ ।

ସୃଷ୍ଟି ଆରମ୍ଭରୁ ମନୁଷ୍ୟ ପ୍ରକୃତିସହ ନିବିଡ ଭାବରେ ଜଡିତ । ସେ ପ୍ରକୃତିର ସାନିଧ୍ୟରେ ଯେତିକି ବିହ୍ୱଳ ହୁଏ , ସେତିକି ମଧ୍ୟ ବିବ୍ରତ ହୁଏ । ପ୍ରକୃତି ସହିତ ସହାବସ୍ଥାନରୁ ସେ ପ୍ରକୃତିକୁ ଭଲପାଇ ବସିଲା । ପ୍ରକୃତି ଦେଲା ମଣିଷକୁ ନୂଆନୂଆ ଅନୁଭବ । ପ୍ରକୃତିର ରହସ୍ୟକୁ ମଣିଷ ଉନ୍ମୋଚନ କରିବା ପାଇଁ ଉଦ୍ୟମ କଲା । ପ୍ରକୃତିର ସମସ୍ତ ରହସ୍ୟ ତଥାପି ମଣିଷ ପାଖରେ ରହିଲା ଅଜ୍ଞେୟ । ତେଣୁ ମଣିଷ ଆବିଷ୍କାର କଲା ପ୍ରକୃତି ଭିତରେ ଏକ ଚିରନ୍ତନ ରୂପ । ପ୍ରକୃତିକୁ ସେ ବନ୍ଧୁ, ସହୋଦର ଭାବରେ ଗ୍ରହଣ କରିନେଇ ସୁଖରେ କାଳାତିପାତ କଲା । ପ୍ରକୃତିର ଆବେଗପୂର୍ଣ୍ଣ ପୃଷ୍ଠଭୂମି ଉପରେ ମଣିଷ ସୁଖରେ ବଞ୍ଚିଲା ।

ସୃଷ୍ଟି ଆରମ୍ଭରୁ ମଣିଷର ପ୍ରକୃତି ସହିତ ସମ୍ପର୍କ ନିବିଡ । ପ୍ରକୃତିକୁ ଈଶ୍ୱର ସୃଷ୍ଟି କରିଛନ୍ତି । ଚିରକାଳ ମଣିଷ ପ୍ରକୃତିର ପୂଜାରୀ । ମଣିଷ ଜନ୍ମରୁ ପ୍ରାକୃତିକ । ପ୍ରାକୃତିକ ନିୟମ ଭିତରୁ ବାହାରିଯାଇ ମଣିଷ ଜୀବନ ଅସଫଳତା ଦେଇ ଗତି କଲାବେଳେ ସାହିତ୍ୟରେ ଦେଖାଦିଏ ପ୍ରକୃତି ଭିତରକୁ ପ୍ରତ୍ୟାବର୍ତ୍ତନର ସ୍ୱର । ''ମଣିଷ ପ୍ରାକୃତିକ, ପ୍ରାବୃତ୍ତିକର । ପ୍ରକୃତି ପ୍ରବୃତ୍ତିର ଏକ ବିଗ୍ରହ । ତା' ମୁହଁରେ ପ୍ରକୃତିର ସ୍ୱର - (Voice of Nature)ଭିତରେ ପ୍ରବୃତ୍ତିର ମୂର୍ତ୍ତି । ସେ ଯୁକ୍ତି ଜାଣେ ନାହିଁ , ଦର୍ଶନ ଜାଣେ ନାହିଁ । ସେ ହୃଦୟର ଗଭୀରତମ ପ୍ରଦେଶରୁ ଅନୁଭବ କରେ । ପ୍ରାଣର କନ୍ଦରରୁ ଅନୁଭବ କରେ । ପ୍ରକୃତି ସେଠି ଟାଣି ଦେଇଛି ଅଲିଭା ହରଫ୍‌ରେ ଜୀବନର ନିଗୂଢ ରହସ୍ୟ । (ଦାସ, ରାଇଚରଣ - ରୋମାଣ୍ଟିକ୍ ଅବବୋଧ । ପୃଷ୍ଠା-୩୬) । ଏହି ଦୃଷ୍ଟିରୁ ଯୁକ୍ତିବାଦୀ ମଣିଷ ପ୍ରକୃତି କୋଳକୁ ଫେରିଯାଏ । ପ୍ରକୃତି ତାକୁ ଆଶ୍ୱାସନା ଦିଏ । ଇନ୍ଦ୍ରିୟଲବ୍ଧ ଜ୍ଞାନବଳରେ ପ୍ରକୃତିର କବି ସୌନ୍ଦର୍ଯ୍ୟକୁ ଉପଲବ୍ଧି କରେ । କିନ୍ତୁ ତା'ସହିତ ତଦାତ୍ମ୍ୟ ସ୍ଥାପନ କରିବା ସମ୍ଭବ ହୁଏ ନାହିଁ । ତାପାଇଁ ମଣିଷ ସହିତ ପ୍ରକୃତିର ଅନ୍ତରଙ୍ଗ ସମ୍ପର୍କ ନ ହେଲେ ସେ ବୁଝି ପାରିବ ନାହିଁ ପ୍ରକୃତିକୁ । ପ୍ରକୃତି ମଣିଷର ଶ୍ରେଷ୍ଠ ପ୍ରେରଣା । କବି ପ୍ରସନ୍ନ ପାଟଶାଣୀ ଏହାକୁ ସ୍ୱୀକାର କରିଛନ୍ତି -''ପ୍ରକୃତି ଓ ଅନୁଭୂତି ମୋ ସାହିତ୍ୟ ସାଧନାର ମୂଳଉତ୍ସ । ଯାହାର ଅନୁଭୂତି ଯେତେ ନିବିଡ, ତାହାର କବିତା ସେତେ ପ୍ରଗଲ୍‌ଭ ।'' (ପାଟଶାଣୀ ପ୍ରସନ୍ନ - ଆଳାପ ଆଲୋଚନା (ଅଜି ଗର୍ଭ-କବିତା ବିଶେଷାଙ୍କ । ପୃ-୬୮ )। ପ୍ରକୃତି ପ୍ରତିଥିବା ଏକ ରହସ୍ୟ ତଥା ଆତ୍ମୀୟ ଦୃଷ୍ଟିକୋଣ କବିକୁ ଅନୁଭବର ଶୀର୍ଷସ୍ତରରେ ପହଞ୍ଚାଏ । ଫଳରେ କବି ବାସ୍ତବ ସତ୍ୟକୁ ଭୁଲି ଆତ୍ମ ବିହ୍ୱଳ ହୁଏ । ପ୍ରକୃତି ଭିତରେ ଦିବ୍ୟରୂପଙ୍କୁ ଦେଖିଥାଏ । କବିମାନେ ପ୍ରକୃତିର ବାହ୍ୟରୂପ ବର୍ଣ୍ଣନାରେ ସମାନ ହୋଇପାରନ୍ତି, ମାତ୍ର ଅନ୍ତର୍ନିହିତ ଚିତ୍ରଣରେ ସ୍ୱତନ୍ତ୍ର । ଅନ୍ତର୍ନିହିତ ସତ୍ୟକୁ ଯିଏ ଯେତେ ସୁନ୍ଦର ଓ ସ୍ୱତନ୍ତ୍ର, ଭାବେ ପ୍ରକାଶକରେ ତାର କବିତା ସେତିକି ସୁନ୍ଦର ଓ ସ୍ୱତନ୍ତ୍ର ହୁଏ ।

କବି ପାଟଶାଣୀ ତାଙ୍କ ଜୀବନରେ ଅଧିକାଂଶ ସମୟ ପ୍ରକୃତି କୋଳରେ କଟାଇଥିଲେ । ବିପ୍ଳବୀ ଜୀବନର ଆତଙ୍କ ଓ ବିପଦ ଭିତରେ ଥାଇ ମଧ୍ୟ ସେ ପ୍ରକୃତିର ଅନିର୍ବଚନୀୟତାରେ ବିଭୋର ହୋଇଥିଲେ । ପ୍ରକୃତିକୁ ସେ ଆଦର୍ଶ ଭାବରେ ଗ୍ରହଣ କରିଛନ୍ତି । ଜୀବନକୁ ଚିହ୍ନେଇ ଦେଇଛି । ପ୍ରକୃତି

ବେଳେବେଳେ ପ୍ରକୃତି ଭିତରେ ବୁଡି ରହି ନିତ୍ରର ଦୈନ୍ୟତାକୁ କବି ଭୁଲିଯାଆନ୍ତି । ପ୍ରକୃତି ସହିତ ଏକାକାର ହୋଇ ଆତ୍ମବିସ୍ମୃତ ଅବସ୍ଥାକୁ ଚାଲିଯାଆନ୍ତି । ପ୍ରକୃତି କେବେ କାମବତୀ ରୂପସୀ ହୋଇ ହରଫର ଶାଢୀ ପିନ୍ଧିଛି ତ, କେବେ ନଦୀକୁ ଫୁଲମାଳ କରି କବି ଗଳେଇ ଦେଇଛନ୍ତି ତା' ବେକରେ । ଏକାତ୍ମ ଭାବରେ ପ୍ରକୃତିକୁ ରୂପାୟିତ କରିଛନ୍ତି ତାଙ୍କ କବିତାରେ । ଏହି ସ୍ୱତନ୍ତ୍ର ଦୃଷ୍ଟିଭଙ୍ଗୀର ବର୍ଣ୍ଣନା ସେ ସିଧାସଳଖ ବା ଅବିକଳ ନକଲ କରି ପ୍ରକାଶ କରି ନାହାନ୍ତି । ''ସମ୍ବେଦନଶୀଳ ମନୋଭାବରେ ପ୍ରକୃତିକୁ ଗ୍ରହଣ କରିବାକୁ ପଡିବ । ମଣିଷର ସମ୍ବେଦନା ଭାବ, ଆବେଗ, ଉଚ୍ଛ୍ୱାସ ସହିତ ପ୍ରକୃତିର ଅଦ୍‌ଭୁତ ସାମଞ୍ଜସ୍ୟ ରହିଛି । ମଣିଷ ଆଉ ପ୍ରକୃତି ମଧ୍ୟରେ ରହିଛି ଏକ ଅଭିନ୍ନ ଭାବ । ଏକ ତଦାତ୍ମ୍ୟତା, ଏକ ନାନ୍ତରୀୟକ ଭାବ ।'' (ଦାସ, ରାଇଚରଣ - ରୋମାଣ୍ଟିକ୍ ଅବବୋଧ । ପୃ-୩୬ ।)

ମଣିଷର ଗଠନ ପ୍ରାକୃତିକ । ତାର କଳେବର ପଞ୍ଚଭୂତରେ ତିଆରି କବି ପାଟ୍ଟଶାଣୀଙ୍କ କବିତା ପ୍ରକୃତିର ଏକ ମୂର୍ତ୍ତରୂପ । ତାଙ୍କ ପାଇଁ ପ୍ରକୃତିର ବାହ୍ୟବର୍ଣ୍ଣନା ଓ ଅନ୍ତଃବର୍ଣ୍ଣନା ଉଭୟ ହୃଦୟସ୍ପର୍ଶୀ । ପ୍ରକୃତି ତାଙ୍କ କବିତାର ଚିତ୍ରକଳ୍ପ, ପ୍ରତୀକଭାବେ ଦେଖାଦେଇଛି । ପ୍ରକୃତି ବର୍ଣ୍ଣନାରେ କବି ଜୀବନ ପ୍ରତି ଅଧିକ ବିଶ୍ୱସ୍ତ । ପ୍ରକୃତି ମାନବାୟିତ ରୂପରେ 'ବର୍ଷା' ଆକାରରେ ଆକାଶରୁ ଓହ୍ଲେଇ ଆସିଛି ଧୂଳିର ସିଡିରେ । ଏହା ତାଙ୍କ ପ୍ରକୃତି ବର୍ଣ୍ଣନାର ଏକ ବୈଚିତ୍ର୍ୟ । ବର୍ଷା ସହ ସବୁଠି କବି ଅନ୍ତରଙ୍ଗ ସଂପର୍କ ରଖିଛନ୍ତି । ଯେପରି -

''ଫିଟି ପଡ ହେ ବରଷା ଆକାଶର କିଆରୀରେ

ଶସ୍ୟ କେଣ୍ଡା ପରି / ନଇବଡି ଦା' ହୋଇ

କାଟିଦିଏ ଚେର / କ୍ଷେତର ମଶାଣିରେ

ପରିଯାଏ ଜୀବର ମଡକା / ସ୍ୱପ୍ନର ଚଟକରେ

ଭାଙ୍ଗିଯାଏ ନିଦର ଖପରା / ତୁମ ସ୍ମୃତି ଉଙ୍କିମାରେ

ଅଙ୍କୁର ଭଳି ମାଟିକୁ ଫୁଟେଇ /'' (ପାଟ୍ଟଶାଣୀ ପ୍ରସନ୍ନ - ବର୍ଷା । ପୃ-୨୩ ।) ପ୍ରମାଣ ଦୃଷ୍ଟିରୁ ସମଗ୍ର ବର୍ଷା କାବ୍ୟ ପ୍ରକୃତିର ଏକ ସ୍ୱୈରବାଦୀ କାବ୍ୟରୂପ ।

'ଅମରନାଥ' କବିତା ପୁସ୍ତକରେ ପ୍ରକୃତିର ଜୀବନ୍ତ ବର୍ଣ୍ଣନା ଦେଖିବାରେ ମିଳେ । ଏହା ଏକ ଭ୍ରମଣ କବିତା । 'ଅମରନାଥ' ଓ ତାଙ୍କର ମହିମା ସମ୍ପର୍କରେ ଆଧ୍ୟାତ୍ମିକଭାବ ପ୍ରକୃତିଥିବା ମୋହ ଲକ୍ଷ୍ୟକରାଯାଏ । 'ଅମରନାଥ'ର ପ୍ରକୃତି ସୌନ୍ଦର୍ଯ୍ୟପୂର୍ଣ୍ଣ ବର୍ଣ୍ଣନାରେ ସେ ପ୍ରକୃତି ଭିତରେ ଦିବ୍ୟସତ୍ତାକୁ ଲକ୍ଷ ଦେଖିଛନ୍ତି । ପ୍ରକୃତିର ଜଣେ ନିଷ୍ଠାପର ଉପାସକ ଭାବେ ସେ କବିତା ରଚନା କରିଯାଇଛନ୍ତି ।

''ଖୋର୍ଦ୍ଧାର କବିତା ମୁଁ ପଢେ'' କବିତାର ପ୍ରକୃତି ଇତିହାସର ମୂକସାକ୍ଷୀ ହୋଇଛି । ଓଡିଆ ପାଇକମାନଙ୍କ ବୀରତ୍ୱ ସହିତ ପ୍ରକୃତିକୁ ଗୌରବ ମଣ୍ଡିତ କରି ବର୍ଣ୍ଣନା କରିଛନ୍ତି । ବରୁଣେଇ ପାହାଡରେ ସଞ୍ଜ, ଫାଶିଦିଆ ବରଗଛ, ଏ'ସବୁ ଐତିହାସିକ ବିଶେଷତ୍ୱ ଥିବା ପ୍ରାକୃତିକ ଉପାଦାନ । ପିଣ୍ଡିକ ବାହୁବଳେନ୍ଦ୍ରର ମୃତ୍ୟୁ ନାହିଁ । ଶହୀଦ୍‌ର ମୃତ୍ୟୁହୁଏ ନାହିଁ । ପ୍ରତିଦିନ ଯେମିତି ନଦୀକୁ ସମୁଦ୍ର ଫାଶିଦିଏ । ମାଛକୁ ଜାଲ ଫାଶି ଦିଏ । ସେମିତି ପିଣ୍ଡିକର ଫାଶି । ପ୍ରକୃତିକ ପରିବେଶ ଓ ପରିବେଶ

ସହୃତ କାବ୍ୟ ବିଷୟ ବସ୍ତୁର ଅଭିନ୍ନତା ପରିକଳ୍ପନା କରିଛନ୍ତି କବି ।

''ପ୍ରତିଦିନ ଫାଶିଦିଏ ନଦୀକୁ ସମୁଦ୍ର /

ଫାଶି ଦିଏ ଗଛକୁ ପାହାଡ /

ସମୁଦ୍ରରେ ଫାଶିଦିଏ ତିମି ମାଛ / ଜାହାଜର ନଙ୍ଗରରେ /'' (ପାଢଶାଣୀ ପ୍ରସନ୍ନ - 'ଖୋର୍ଦ୍ଧାର କବିତା ମୁଁ ପଢେ' । ପୃ-୧୯ )। ପ୍ରେମ କବିତାରେ କବି ପ୍ରକୃତି ପ୍ରତି ଆହୁରି ଅଧିକ ବିଶ୍ୱସ୍ତ । ପ୍ରେମ ଅନୁଭବ ସହିତ ପ୍ରକୃତିର ସମ୍ପର୍କ ସବୁଠୁ ବେଶୀ ନିବିଡ ତାଙ୍କ କବିତାର ''ଦେଖା ହେଲେ କହିବି ସେ କଥା'' କବିତାରେ କବି ପ୍ରକୃତିକୁ ନିଜ ପ୍ରିୟତମା ପରି ନିଜ ଆତ୍ମା ଭିତରେ ଅନୁଭବ କରିଛନ୍ତି ନିଜର ମୃତ୍ୟୁ, ଶୋଭାଯାତ୍ରାରେ ପାହାଡକୁ ସ୍ପଷ୍ଟ ଦିଶିବା ପାଇଁ, ନଦୀକୁ ଉଦାସ ନ ହେବା ପାଇଁ, ପକ୍ଷୀକୁ ଶୋଭାଯାତ୍ରାରେ ଯୋଗଦେବା ପାଇଁ କହିଛନ୍ତି । କବି ପାଇଁ ପ୍ରକୃତି କେବଳ ବୌଦ୍ଧିକ ଆବେଗର ପରିସ୍ଫୁଟନ ନୁହେଁ । କବିର ମାନସିକ ସ୍ତରରେ ଥିବା ଗୋପନ ଇଚ୍ଛା ପ୍ରକୃତି ଭିତରେ ପ୍ରକାଶ କରିଛନ୍ତି ।

''କେବେ ଆସିଲେ କହିବି ସେ କଥା /

କେମିତି ଏଠାରୁ ଦିଶେ ଦୂରର ଜଙ୍ଗଲ /

ଓ ଗୋଧୂଳିର ରାସ୍ତା /

ଦେଖା ହେଲେ କହିବି ସେ କଥା /

ଶବ୍ଦକରେ କେଉଁପରି ପାହାଡୀ ଝରଣା /'' (ପାଢଶାଣୀ ପ୍ରସନ୍ନ - ''ଦେଖାହେଲେ କହିବି ସେ କଥା ।'' ପୃ-୩ ) ପ୍ରକୃତି ଭିତରେ ଅଛି କବିପାଇଁ ଏକ । ଯେପରି -

''ସୃଜନୀର ବେଞ୍ଚୁ ବାଢେ ସବୁଜ ପତ୍ରରେ

କ୍ଷେତର ପିଠିରେ ଚଢି ଶାଗୁଆ ଝିଣ୍ଟିକାଟିଏ

ଆଖିରେ ଅନନ୍ତ ନୀଳିମା ଧରେ ।'' (ପାଢଶାଣୀ ପ୍ରସନ୍ନ - ବର୍ଷା । ପୃ-୧ ) ପ୍ରକୃତି ଭିତରେ ଏକ ସ୍ୱପ୍ନ ରଚେ କବି । ଫୁଲର ପାଖୁଡାରେ ତିଆରି ସ୍ୱପ୍ନ ବଗିଚାରେ କବି ତଲୀନ ହୁଏ । ଘାସର ଗାଲିଚା ଉପରେ ମୁକ୍ତାପରି ସୂର୍ଯ୍ୟର ହସ ଭଳି ବର୍ଣ୍ଣନା ଏକ ସ୍ୱୈରବାଦୀ ଆବେଗ । ଯେପରି

''ଫୁଲର ପାଖୁଡା ସବୁ ଫୁଟାଇଲେ /

ସ୍ୱପ୍ନର ବଗିଚା / ଘାସର ଗାଲିଚା ଓଠୁ

ପୋଛି ଦେଇ କାକରର ମୁକ୍ତା /

ଦିଗ୍‌ବିଜୟ ସୂର୍ଯ୍ୟ ହସୁଥିଲା ।''(ପାଢଶାଣୀ ପ୍ରସନ୍ନ - ଅଗ୍ନିଯୁଗ । ପୃ-୯) ଜୀବନ ପାଇଁ ପ୍ରକୃତିର ଅବଦାନକୁ କବି ଅନୁଭବ କରିଛନ୍ତି । ଏହି ଅନୁଭବରୁ ସେ ଖୋଜିଛନ୍ତି ଜୀବନ ଜିଜ୍ଞାସା । ପ୍ରକୃତି ଭିତରୁ ସେ ସୃଷ୍ଟି ସର୍ଜନାର ଚିତ୍ର ଦେଖିଛନ୍ତି । ପ୍ରକୃତି ଭିତର ଦେଇ ସେ ବିଶ୍ୱସ୍ରଷ୍ଟାଙ୍କର ସାନିଧ୍ୟ ଲାଭ କରିଛନ୍ତି । ଏକ ଆଧ୍ୟାତ୍ମିକ ଅନ୍ୱେଷା ବା ଆତ୍ମଉପଲବ୍‌ଧି ମଧ୍ୟରେ କବି ପ୍ରକୃତିକୁ ଅନୁଭବ

କରିଛନ୍ତି । ସହଜ, ସ୍ୱଚ୍ଛନ୍ଦ ପ୍ରବଣତା, କବିକୁ ଯୁକ୍ତିଠାରୁ, ବୁଦ୍ଧିର ପରିସୀମାଠାରୁ ଅନେକ ଦୂରକୁ ନିଏ । ସେଠାରେ ସେ ଜୀବନକୁ ସନ୍ଧାନ କରେ । ଜଙ୍ଗଲର ବହଳ ଅନ୍ଧାର ପରି ଆଶା ମଣିଷର ଭିତରେ ଜୀବନ ସଂଚାରେ ପ୍ରକୃତି । ହୃଦୟର ଆବେଗ ସହିତ ପ୍ରକୃତିର ଅନ୍ତଃସତ୍ୟର ଏକ ସମନ୍ୱୟ ଘଟେ କବିତାରେ ।

ସରଳ ଓ ନିରାଡମ୍ବର ଭିତରେ ପ୍ରକୃତିର ଅନନ୍ତ କୋଳରେ ସେ ଶାନ୍ତି ଖୋଜିଛନ୍ତି । ପ୍ରକୃତି ତାଙ୍କପାଇଁ ମା'ପରି, ନାରୀ ପରି ଗୁରେଇ ହୋଇ ଯିଏ ପ୍ରକୃତି କବିର ଚେତନାରେ । ପ୍ରକୃତିକୁ ଆପଣାର କରି ବର୍ଣ୍ଣନା କରିଛନ୍ତି । ପ୍ରକୃତି ପାଇଁ କବି ପାଟ୍ଟଶାଣୀ ଅଧିକ ସମ୍ବେଦନଶୀଳ । ପ୍ରକୃତିର ଶ୍ରେଷ୍ଠତ୍ୱ ଦର୍ଶାଇ, ତା'ର ଗୁରୁତ୍ୱ ଉପଲବ୍ଧି କରିଛନ୍ତି । ମଣିଷର ଯୁଗଯୁଗର ସୌନ୍ଦର୍ଯ୍ୟ ଚେତନାକୁ ପରିପୁଷ୍ଟ କରିଥିବା ପ୍ରକୃତି ହୋଇଛି ତାଙ୍କ କାବ୍ୟ ପ୍ରେରଣାର ଉତ୍ସ ।

ସୌନ୍ଦର୍ଯ୍ୟ ଚେତନାର ସମସ୍ତ ଭାବ, ଅନୁଭୂତି ଓ ସାମାଜିକ ବାସ୍ତବ ପ୍ରକୃତି ଭିତରେ ରୂପାନ୍ତରିତ ହୋଇଛି । ତେଣୁ କବି ପାଟ୍ଟଶାଣୀ ଜଣେ ପ୍ରକୃତି ବର୍ଣ୍ଣନାର ସଫଳ ଶିଳ୍ପୀ ଏ'କଥା ନିଃସନ୍ଦେହରେ କାହାଯାଇ ପାରେ ।

ସ୍ୱୈରବାଦୀ ଭାବୋଚ୍ଛ୍ୱାସ କବି ପାଇଁ କାବ୍ୟସାଧନା ପ୍ରାରମ୍ଭିକ ସମୟ ନାରୀ ସହିତ କବି ସତ୍ତାର ସମ୍ପର୍କ ଏକ ପ୍ରାକୃତିକ ନିୟମ । ବିପ୍ଳବରେ, ପ୍ରେମରେ, ଦୁଃଖ ଓ ନୈରାଶ୍ୟ ଭିତରେ ନାରୀର ମୂଲ୍ୟାୟନ କରେ କବି । ନାରୀର ବର୍ଣ୍ଣନା ବିଭିନ୍ନ ଭାବରେ କରାଯାଇଛି ଓ କାବ୍ୟ ପରଂପରାରେ ନାରୀକୁ ଦେହ ବାଦରେ କେହି ଅତିନ୍ଦ୍ରୀୟଭାବ ରାଜ୍ୟରେ ଅନୁଭବ କରିଥାଏ, ସାହିତ୍ୟରେ ନାରୀର ଅଖଣ୍ଡ ପ୍ରଭାବ ସବୁ ସମୟରେ ରହି ଆସିଛି । କବି ପ୍ରସନ୍ନ ପାଟ୍ଟଶାଣୀ ନାରୀର ଶାଶ୍ୱତ ରୂପକୁ କବିତାରେ ଦେଖିଛନ୍ତି । ନାରୀ ଓ ପୁରୁଷକୁ କବି ପାଟ୍ଟଶାଣୀଙ୍କ ଆଖିରେ ସମାନ, ନାରୀ ପାଟ୍ଟଶାଣୀଙ୍କ କବିତାରେ ଖୁବ୍ ସୁନ୍ଦର ଓ ମାର୍ଜିତ । କବି ପାଟ୍ଟଶାଣୀ ନିଜେ ନାରୀ ସମ୍ପର୍କରେ କହିଛନ୍ତି - ''ପୃଥିବୀର ସମସ୍ତ ପୁସ୍ତକ ପାଠ କଲେ ଯାହା ନପାଇବା, ଗୋଟିଏ ମଣିଷକୁ ପାଠ କଲେ ତା'ଠାରୁ ଅଧିକ ତଥ୍ୟ ମିଳିପାରିବ । ସେହିଭଳି ଗୋଟିଏ ନାରୀକୁ ପାଠ କରୁକରୁ ଆୟୁଷ ସରିଯାଏ, ବୟସ ବଢିଯାଏ, ମାତ୍ର ପଢା ଶେଷହୁଏ ନା ।'' (ରାଉତରାୟ ଜ୍ୟୋସ୍ନା - ରବିବାର ସମ୍ବାଦ, ୧୭ - ୨୩ ସେପ୍ଟେମ୍ବର, ୧୯୮୯ । ପାଟ୍ଟଶାଣୀଙ୍କ ସହ ସାକ୍ଷାତକାର । ପୃ-୩୫)

ଭାରତୀୟ ପରମ୍ପରାରେ ଥିବା ନାରୀର ମର୍ଯ୍ୟାଦା ପ୍ରତି କବି ଖୁବ୍ ସଚେତନ । ସେ ନାରୀକୁ ଶକ୍ତିର ଉତ୍ସ ଓ ପ୍ରେରଣାର ଭୂମିଭାବେ ଗ୍ରହଣ କରିଛନ୍ତି । ପ୍ରକୃତି ଓ ନାରୀକୁ ଅଭିନ୍ନ ଭାବେ ନିଆଯାଇଛି । କବିଙ୍କର ସ୍ୱୈରବାଦୀ ଆବେଗ ଭିତରେ ନାରୀ ସହିତ ବର୍ଷାକୁ ତୁଳନା କରାଯାଇଛି । ନାରୀର ଆତ୍ମିକ ସତ୍ତା କବିଙ୍କ ରକ୍ତରେ ଲୁଣପରି ମିଳାଇ ଏଠାରେ କବି ନାରୀର କାମନାରେ ଜର୍ଜରିତ । ଯେପରି -

''ମୋ ଦେହ ରକ୍ତର ମାଟିଆରେ ଭିଜାଇ

ପ୍ରଣୟର ଲୁଣ /

ଜଡାଇଲ ତୁମ ଓଠ ଚୁମ୍ବନ ଲାଳରେ ।'' (ପାଟ୍ଟଶାଣୀ ପ୍ରସନ୍ନ - 'ବର୍ଷା' । ପୃ-୬୨) ।

'ରକ୍ତପଥ' ଗ୍ରନ୍ଥରେ ନାରୀ ବିପ୍ଳବିନୀ । ନାରୀସତ୍ତା ବିପ୍ଳବୀ କବିର ସୁଖଦୁଃଖରେ ସମଭାଗୀ ନାରୀର ସ୍ୱାଭାବିକ ସତ୍ତାକୁ ରହେ, ଉନ୍ମୋଚନ କରିଛନ୍ତି କବି । ନାରୀର ନିର୍ଦ୍ଦିଷ୍ଟ ଆବେଦନ କବିଙ୍କୁ ମୋହଗ୍ରସ୍ତ କରେ ନାହିଁ । ନାରୀର ବହୁବିଧ ରୂପ କବି ଆଖିରେ -

''ସେ ଗୋଟିଏ ଶବ୍ଦ /

ଦୁଇଟି ଅକ୍ଷର /

କେତେ଼ବେଳେ ଅମୃତ ମଧୁର /

ମିଠା ବିନା ସ୍ୱାଦ ଅକଳନ୍ତି /

କେତେବେଳେ ଗରଳର ସୁନୀଳ ଶୃଙ୍ଗାର /

ଆଉ କେବେ ନିଆଁ ବିନା ଦହନ ତରଳ ।'' (ପାଟଣାଣୀ ପ୍ରସନ୍ନ - ରକ୍ତପଥ । ପୃ-୪) । ନାରୀ ତାଙ୍କ ରକ୍ତପଥର ଅନୁଗାମିନୀ । ନାରୀର ସାମଗ୍ରିକ ରୂପକୁ ସେ କବିତାରେ ଧରି ରଖିଛନ୍ତି । ନାରୀର ମହନୀୟତା, ଆତ୍ମତ୍ୟାଗ ଏହି ଉଭୟ ଦିଗ ପ୍ରତି କବି ପାଟଣାଣୀ ଓ ସଚେତନ । ବିପ୍ଳବର ଆବେଦନ - ନିକଟରେ କବିର ସ୍ୱୈରବାଦୀ ବ୍ୟାକୁଳତା ହାରିଆସିଛି । କବିଙ୍କର ''ଶହେ ଏକ କବିତା'' ପୁସ୍ତକରେ ପ୍ରିୟା ନିକଟରେ କବି ନିଜର ସର୍ତ୍ତ ବାଢ଼ିଛନ୍ତି ।

''ମୋ ସାଥେ ପାରିବ ଯଦି /

ବିପ୍ଳବର ନଈରେ ପହଁରି /

ଅଚିରେ ମୋ ସଙ୍ଗେ ଆସ /

କାଟି ସବୁ ବନ୍ଧନର ଡୋରି /'' (ପାଟଣାଣୀ ପ୍ରସନ୍ନ - ରକ୍ତପଥ । ପୃ-୧୭) ।

ମାତ୍ର ''କିଛି ଲୁହ କିଛି ଲହୁ'' ରଚନା ବେଳକୁ କବିଙ୍କର ଏକ ଆଧ୍ୟାତ୍ମିକ ଉତରଣ ଘଟିଅଛି । ତେଣୁ ନାରୀକୁ ସେ ନିଜଠାରୁ ଉର୍ଦ୍ଧ୍ୱରେ ଏକ ଅଦୃଶ୍ୟ ଲୋକରେ ରଖି ଅନୁଭବ କରିଛନ୍ତି । ପୃଥିବୀର ସମସ୍ତ ଯନ୍ତ୍ରଣାକୁ ପିଇ କବି ପ୍ରିୟତମାର ପାଦକୁ କଣ୍ଟକମୁକ୍ତ କରିବାର ପ୍ରତିଶ୍ରୁତି ପ୍ରଦାନ କରିଛନ୍ତି । ଏହାର ଶାଣିତ ଭାବାବେଗ ଚରମ ସୀମାକୁ ସ୍ପର୍ଶ କରିଛି । ଯେପରି -

''ପୃଥିବୀର ସବୁ କଣ୍ଟାଗୁଡ଼ିକ

ମୋ ଆଖିରେ ଫୁଟି ଯାଇଛନ୍ତି ସୁନ୍ଦରୀ ତୋର ଆଉ ଡରିବାର ନାହିଁ

ତୁ ଆ ଈଶ୍ୱରୀ / ତୋର ଆଉ

ଡରିବାର ନାହିଁ / ତୋ ପାଦରେ

କଣ୍ଟା ଫୁଟିବାର ନାହିଁ ।'' (ପାଟଣାଣୀ ପ୍ରସନ୍ନ - କିଛି ଲୁହ କିଛି ଲହୁ । ପୃ-୨୧) । ଏଠାରେ କବି ନାରୀପ୍ରତି ଅତି ମାତ୍ରାରେ ସମ୍ବେଦନଶୀଳ ହୋଇଛନ୍ତି । କବି ନାରୀର ସତ୍ତା ପ୍ରତି ଅତ୍ୟନ୍ତ ବିଶ୍ୱସ୍ତ । କବି ନାରୀର ଏକକ ଆବେଗରେ ନରହି ତା'ର ସାମଗ୍ରିକ ସତ୍ତା ପ୍ରତି ଆତ୍ମୀୟତା ସ୍ଥାପନ

କରିଛନ୍ତି । କବିଙ୍କର ପ୍ରତିଟି ଅଭିବ୍ୟକ୍ତି ନାରୀର ପ୍ରଣୟ ଭିତରୁ ପ୍ରକାଶିତ । କବି ଚୋରୀ କରେ ନାରୀ ପାଇଁ । ଯିଏ କବିଙ୍କ ପ୍ରଣୟର ଲୋରୀ ଶୁଣାଇ ଶୁଣାଇ ନିର୍ବାଣ ଦେଇପାରେ, ପୁଣି ବିପ୍ଳବରେ ସେହି ନାରୀ ହାତରେ ବନ୍ଧୁକ ଚଳାଇ ପାରେ । କବି ପାଟଶାଣୀଙ୍କ କବିତାରେ ନାରୀ ଏକ ଆବେଗମୟ ପରିବେଶରୁ ସୃଷ୍ଟ ।

''ସୃଷ୍ଟିର ଆଦିମ କାଳେ / ଆଲ୍ଲା ଥରେ

ଗୋଲାପର ବାସ୍ନା, କଇଁର ସ୍ନିଗ୍ଧତା /

କପୋତର ଶାନ୍ତି, ସର୍ପର ଭୟଙ୍କରତା,

କିଛି ସମୁଦ୍ରର ପ୍ରଶାନ୍ତ ନୀଳିମା /

ମେଞ୍ଚାଏ କାଦୁଅ ଧରି /

ଯେତେବେଳେ ଚାହିଁବାରେ ହେଲେ ସେ

ବିଭୋର / ଜନ୍ମ ନେଲା ନାରୀ ।'' (ପାଟଶାଣୀ ପ୍ରସନ୍ନ - ରକ୍ତପଥ । ପୃ-୧) ନାରୀ ସମସ୍ତ ଶ୍ରେଷ୍ଠ ସୁନ୍ଦର ଉପାଦାନରେ ତିଆରି । ଭଗବାନଙ୍କର ଏକ ଆବେଗମୟ ସମୟରୁ ତାର ଜନ୍ମ । ନାରୀ କବିଦୃଷ୍ଟିରେ ଭଗବାନଙ୍କର ଏକ ଶ୍ରେଷ୍ଠ ଚମତ୍କାର ସୃଷ୍ଟି ।

''ସତେ ନାରୀ ବିଧାତାର ବିଚିତ୍ର ଜଗତେ /

ତୁହି ଏକ ପରମ ବିସ୍ମୟ /

ତୋରି ପାଇଁ ପ୍ରିୟା ଏ ଶୋଣିତେ କାବ୍ୟରେଖା /

ତୋରି ପାଇଁରେ ପ୍ରିୟା ମୋ ରକ୍ତରେ ଚିତ୍ରିତ

ଭାରତର ମାନଚିତ୍ର ରେଖା ।'' (ପାଟଶାଣୀ ପ୍ରସନ୍ନ - ରକ୍ତପଥ । ପୃ-୭ ।) ଭଗବାନଙ୍କ ସୃଷ୍ଟିରେ ନାରୀ ଏକ ବିସ୍ମୟ । ପୁରୁଷର ସକଳ କାର୍ଯ୍ୟ କାରଣ ପଛରେ ନାରୀ ସଭାଟି ବିଦ୍ୟମାନ ଥାଏ । ନାରୀହିଁ ପୁରୁଷ ପାଇଁ ଶ୍ରେଷ୍ଠ ଆକର୍ଷଣ । ନାରୀ ପୁରୁଷର ସକଳ କାର୍ଯ୍ୟର ପ୍ରେରଣା ଦାତ୍ରୀ ।

ସତୁରୀ ଉତ୍ତର କାଳରେ କବି ପାଟଶାଣୀଙ୍କ ଅଧିକ ପରିମାଣରେ ସ୍ୱୈରବାଦୀ । ନାରୀ ଭିତରେ ଏକ ବଳିଷ୍ଠ ଆତ୍ମତ୍ୟାଗର ଭିତ୍ତିଉପରେ ଗଢି ଉଠିଥିବା ପ୍ରେମ ବର୍ଣ୍ଣନାକୁ ଏଠାରେ ଲକ୍ଷ୍ୟ କରାଯାଏ ।

''ରକ୍ତ ତୋ ମଥାରେ / ସିନ୍ଦୂର ନ ହୋଇପାରେ /

ତୋ ପାଦେ କରିଦେ ତାକୁ / ଅଳତାର ଗାର /

କଣ୍ଟା ହୋଇ ମୋ ପାଦରେ / ଫୁଟିଯାଉ

ତୋ ବେଦନା / ନିଃଶ୍ୱାସ ତୋ ହୋଇଯାଉ /

ବଂଶୀର ସ୍ୱର ।'' (ପାଟଶାଣୀ ପ୍ରସନ୍ନ - ଦେଖାହେଲେ କହିବି ସେ କଥା । ପୃ-୧ ) ।

ପ୍ରିୟା ପିନ୍ଧିଥିବା ସୁନେଲି ଘାଗେରାରେ ଥିବା କାଚ ପଥରରେ ମୁହଁ ଦେଖିବାର ଇଚ୍ଛା ପୋଷଣ କରିଛନ୍ତି କି ଯେପରି -

''ପ୍ରିୟା ପିନ୍ଧିଥିବ ସୁନେଲି ଘାଗେରା

ଘାଗେରାରେ ଥିବ କାଚପଥର

ସେହି କାଚରେ ମୋ ମୁହଁ ଦେଖୁଥାନ୍ତି

ହସୁଥାନ୍ତା ପ୍ରିୟା ଥରକୁ ଥର ।'' (ପାଟ୍ଟଶାଣୀ ପ୍ରସନ୍ନ - ଦେଖାହେଲେ କହିବି ସେ କଥା, ପୃ-୫) । ନାରୀ ସଂପର୍କରେ ମତାମତ ଦେଇ କବି କହିଛନ୍ତି -

''କହିଲି ପରା ଫୁଲ ଓ ନାରୀ ଭିତରେ ଆତ୍ମଗୋପନ କରିଥାନ୍ତି ଈଶ୍ୱର । ସବୁ ଫୁଲ ଈଶ୍ୱରଙ୍କ ପାଦତଳୁ ଅଳାଡି ହୋଇପଡେ କବି ପାଖରେ । ତା' ଚାହାଣି ଭିତରୁ ଟୋଳା ହୋଇ କବି ଲେଖନୀରୁ କବିତା ଝରିପଡେ । ତେଣୁ କବି ଶବ୍ଦ, ଦ୍ୱିତୀୟ ଈଶ୍ୱର । କବି ସାପ ହୋଇ କାମୁଡେ, ଗୁଣିଆ ହୋଇ ଝାଡେ ।'' (ପାଟ୍ଟଶାଣୀ ପ୍ରସନ୍ନ - 'ଆଳାପ ଆଲୋଚନା' । ('ଅଜିଗର୍ତ୍ତ'-କବିତା ବିଶେଷାଙ୍କ । ପୃ-୬୯) ।

ନାରୀ ପୁରୁଷର ଶକ୍ତି । ନାରୀ ପ୍ରତି ଅନ୍ତରଙ୍ଗ ଭାବ ଆଧାରରେ କବିରକାବ୍ୟ ସାଧନା ପରିପୁଷ୍ଟ ହୁଏ । ଏହି ଦୃଷ୍ଟିରୁ କବି ପାଟ୍ଟଶାଣୀ ସତୁରୀ ଦଶକ ଉତ୍ତରକାଳରେ ସ୍ୱୈରବାଦୀ କବି ଭାବରେ ସର୍ବାଧିକ ଲୋକପ୍ରିୟ ହୋଇପାରିଛନ୍ତି ।

(ଘ) ମାନବବାଦୀ ଧାରା

ସତ୍ୟାନୁସନ୍ଧାନ ସାହିତ୍ୟରେ ସବୁବେଳେ ଅଭୀପ୍ସା । ସବୁବେଳେ ଏକ ନୂତନ ଜଗତର ଚିନ୍ତାଧାରା, ସ୍ଥିତି ସ୍ଥାପକତା ଓ ନମନୀୟତାକୁ ବ୍ୟକ୍ତ କରିବାକୁ ସବୁ ଯୁଗରେ ସାହିତ୍ୟ ଓ ସାହିତ୍ୟିକ ସଚେଷ୍ଟ । ଯଦିଓ ଏହି ଅନ୍ୱେଷଣ ଓ ଚିନ୍ତା ତାତ୍ତ୍ୱିକ ସ୍ତରରେ ବା ଅବଧାରଣା ସ୍ତରରେ ହେଲେ ବି ଏକ ନନ୍ଦନତତ୍ତ୍ୱ ମଧ୍ୟ ଦେଇ ଏହା ଗତିକରେ ଏବଂ ଏହାହିଁ ହେଉଛି ସତ୍‌ସାହିତ୍ୟ ।

ସାହିତ୍ୟିକ ପ୍ରଥମତଃ ଜଣେ ମଣିଷ ପରେ ସେ କବି ବା ଅନ୍ୟ କିଛି । ମଣିଷର ସତ୍ତା ମଧ୍ୟ ମୌଳିକ । ମାତ୍ର ତା'ର ଏହି ମୌଳିକତା ଭିତରେ ଏକ ଦ୍ୱୈତଭାବ ରହିଛି । ଯାହା ମଣିଷକୁ ତା'ର ସାଧାରଣ ଜୀବନ ଯାପନରୁ ଅଲଗା କରେ । ମଣିଷର ଗୋଟିଏପକ୍ଷ ଜୈବ୍ୟ ପ୍ରୟୋଜନକୁ ଆପଣେଇ ନେବାବେଳେ ଅନ୍ୟପକ୍ଷ ଏକ ମହାନ୍ ଇଚ୍ଛାକୁ ଅବଧାରଣା କରିବାରେ ଚେଷ୍ଟିତ ଥାଏ । ଏହି ବ୍ୟକ୍ତି ପୁରୁଷ ଭିତରେ ଏକ ବିଶ୍ୱପ୍ରାଣତା ମଧ୍ୟ ଥାଏ, ଯାହା ଏକ ଗୋଷ୍ଠୀ ସହ ସାଲିସ୍ କରେ । ଜୀବନର ସୌନ୍ଦର୍ଯ୍ୟ, ବୀରତ୍ୱ ଓ ତ୍ୟାଗର ମହିମା ମଧ୍ୟରେ ଏକ ଆତ୍ମିକ ଉତ୍କର୍ଷ ପ୍ରକଟନ କରି ମାନବିକ ମହତ୍ତ୍ୱ ସେ ପ୍ରକାଶ କରେ ।

ପ୍ରସିଦ୍ଧ ଦାର୍ଶନିକ ସାର୍ତ୍ତ ଚେତନାକୁ ନୈର୍ବ୍ୟକ୍ତିକ ବୋଲି ପ୍ରତିପାଦନ କରିଛନ୍ତି, ଏବଂ ସ୍ୱତନ୍ତ୍ରତାକୁ ସେ ବ୍ୟକ୍ତିଗତ ବୋଲି ସ୍ୱୀକାର କରନ୍ତି । ମଣିଷର ଭିତର ମହାନତାକୁ ସ୍ୱୀକାର କରି ବେଦ କହେ - ''ତସ୍ମାତ୍ ବୈବିହାନ ପୁରୁଷମିଦଂ ବ୍ରହ୍ମେତି ମନ୍ୟତେ'', ଅର୍ଥାତ୍, ମନୁଷ୍ୟକୁ ବ୍ରହ୍ମଙ୍କର

ପ୍ରକାଶଭାବେ ଗ୍ରହଣ କରୁଥିବା ବ୍ୟକ୍ତିହିଁ ପଣ୍ଡିତ । ସେଥିପାଇଁ ସେ ''ସୋଽହଂ'' ତତ୍ତ୍ୱଦ୍ୱାରା ପରିଚାଳିତ । ମଣିଷ ନିଜସ୍ୱ ଉତ୍କର୍ଷ ସମ୍ବନ୍ଧରେ ସଚେତନ ହେଲେ ଉନ୍ନତ ଜୀବନ ସମ୍ଭବ ବୋଲି ମହାଭାରତ ଦର୍ଶନ ମତ ଦେଇଛି । କବି ପ୍ରାଣରେ ମାନବିକ ବୈଶିଷ୍ଟ୍ୟ କିପରି ଅଖଣ୍ଡବିସ୍ତାର କରିପାରେ ସେ ସମ୍ପର୍କରେ ୱାଡସ୍ ୱାର୍ଥଙ୍କର ଏକ ପଂକ୍ତିର ଉଦାହରଣ ନିଆ ଯାଇପାରେ - " Thanks to the human heart by which we live." ମନୁଷ୍ୟ ପ୍ରାଣର ଭାବାବେଗ, ସୁଖ, ଦୁଃଖ, ଆଶା, ଆଶଙ୍କା ଓ ତା' ମନର ବିଚିତ୍ର ବିକାସ ସବୁ ସାହିତ୍ୟରେ ରୂପାୟିତ ହୋଇଥାଏ । ସର୍ବଦା ପ୍ରାଣର ରମ୍ୟବୋଧରୁ ହିଁ ସାହିତ୍ୟର ଜନ୍ମ । ପ୍ରସିଦ୍ଧ ସମାଲୋଚକ ମାଥ୍ୟୁ ଆର୍‌ନୋଲଡ୍ ସାହିତ୍ୟକୁ ମାନବ ଜୀବନର ସମାଲୋଚନା ତଥା ଜୀବନର ଦ୍ୱୀପ ଭାବେ ଅଭିହିତ କରିଛନ୍ତି ।

ଭାରତୀୟ ସାହିତ୍ୟରେ କାବ୍ୟଯୁଗର ଆଦିକାଳର ସୃଷ୍ଟି ହେଲା ରାମାୟଣ । ରାମାୟଣ ଓ ମହାଭାରତ ଏହି ମହାକାବ୍ୟଦ୍ୱୟ ମାନବର ମହିମା ମଣ୍ଡିତ କାହାଣୀକୁ ନେଇ ରଚିତ । ମହାଭାରତର ଶାନ୍ତିପର୍ବରେ ଭୀଷ୍ମ କହିଛନ୍ତି ''ଗୁହ୍ୟ ବ୍ରହ୍ମଂ ତଦିଦଂ ବ୍ରବୀମି / ନ ମନୁଷ୍ୟାତ୍ ଶ୍ରେଷ୍ଠତରଂ ହି କିଞ୍ଚିତ୍ ।'' ଅର୍ଥାତ୍ ମନୁଷ୍ୟଠାରୁ ବଡ କିଛି ନାହିଁ । ଏହାହିଁ ଚରମ ସତ୍ୟ । ଯଦିଓ ପ୍ରାଚୀନ କାବ୍ୟମାନଙ୍କରେ ଧର୍ମ ଭାବନାର ପ୍ରାଧାନ୍ୟ ଥିଲା । ତଥାପି ତାହା ମାନବିକତା ବର୍ଜିତ ନଥିଲା । କାରଣ ସୃଷ୍ଟିରେ ମାନବ ଏକ ବୃହତ୍ତର ପରିପ୍ରକାଶ । ବୁଦ୍ଧଦେବ ମଧ୍ୟ ମଣିଷର ମାନବିକତା ଉପରେ ଜୋର୍ ଦେଇ କହିଛନ୍ତି -

''ସର୍ବେ ସତ୍ତା ସୁଖିତା ହୋନ୍ତୁ ।''ଅବେରା ହୋନ୍ତୁ । ସୁଖୀ ଅଭାବଂ ପରିହରନ୍ତୁ । ସର୍ବେ ସତ୍ତା ଦୁଃଖୀ ପମୁଚ୍ଚନ୍ତୁ । ସର୍ବେ ଯଥା ଲବ୍ଧ ସମ୍ପରିତେ ବିଗଛନ୍ତୁ ।'' ଅର୍ଥାତ୍ ସମସ୍ତେ ସୁଖୀ, ଶତ୍ରୁମୁକ୍ତ ଓ ଅମର ହୋଇ ଆନନ୍ଦରେ କାଳକ୍ଷେପଣ ପୂର୍ବକ ବେଦନା ମୁକ୍ତ ଜୀବନର ପ୍ରକୃତ ପ୍ରାପ୍ୟରୁ ବଞ୍ଚିତ ନହୁଅନ୍ତୁ ।

ମଧ୍ୟଯୁଗୀୟ ସାହିତ୍ୟରେ ସାମନ୍ତଗୋଷ୍ଠୀର ଚଳଣି, ବଡିମା, ବୀରତ୍ୱ, ପ୍ରଣୟ, ବିରହ, ମିଳନ, ସମ୍ଭ୍ରମ, ଓ ସାହସିକତାର ଚିତ୍ର ବେଶୀ । ତେଣୁ ମଧ୍ୟଯୁଗୀୟ ସାହିତ୍ୟରେ ମାନବିକତାର ଚିତ୍ର ଅସ୍ପଷ୍ଟ । ସାଧାରଣ ମାନବର ଆଶା ଅଭୀପ୍‌ସା ପ୍ରତିହତ ହୋଇ ସାହିତ୍ୟ ଏକ ଶଙ୍କାକୁଳ ଅବସ୍ଥାରେ ରହିଥିଲା ।

ମଧ୍ୟଯୁଗ ପରେ ବିଶ୍ୱସାହିତ୍ୟରେ ଜ୍ଞାନବିଜ୍ଞାନ, ଶିଳ୍ପ-ସାହିତ୍ୟ, ସମାଜ ଓ ରାଷ୍ଟ୍ରନୀତି କ୍ଷେତ୍ରରେ ଏକ ନବଜାଗରଣ ଆସିଥିଲା । ଫଳରେ ମାନବର ସ୍ୱାଧୀନତା, ମନୁଷ୍ୟ ଓ ପୃଥିବୀ ସମ୍ପର୍କିତ ଏକ ନୂତନ ଜ୍ଞାନ ବିକାଶ ଲାଭ କଲା । ମଣିଷର ଆଶା, ଆକାଂକ୍ଷା ଓ ଜୀବନ ଉପରେ କବି ତଥା ଶିଳ୍ପୀମାନେ ଅଧିକ ଆସ୍ଥାଶୀଳ ହେଲେ । ସମଗ୍ର ପୃଥିବୀରେ ଏକ ଆନ୍ତର୍ଜାତିକ ସାଂସ୍କୃତିକ ବନ୍ଧନ ଦୃଢ ହେବାକୁ ଲାଗିଲା । ମାନବିକତାର ମହତ୍ତ୍ୱ ଗୃହୀତ ହେବାରୁ ମାନବ-କଲ୍ୟାଣକାମୀ ଜ୍ଞାନ ବିଜ୍ଞାନର ଉନ୍ମେଷ ଘଟିଲା, ଫଳରେ ଏକ ନୂତନ ମାନବ ସଭ୍ୟତାର ସୂତ୍ରପାତ ହେଲା ।

ଏହି ରେନେସାଁ ବା ନବଜାଗରଣରୁ Humanism ବା ମାନବବାଦର ସୃଷ୍ଟି ହେଲା । ଭାରତୀୟ ଭାଷାରେ Humanism ର ଅନୁରୂପ ଶବ୍ଦ ଭାବେ ମାନବବାଦ, ମାନବଧର୍ମ ବା ମାନବ ପ୍ରୀତିକୁ ଗ୍ରହଣ କରାଯାଇଛି । ଏହି ନବମାନବବାଦ କଳା, ସାହିତ୍ୟ ଓ ଚିନ୍ତାକ୍ଷେତ୍ରରେ ଏକ ନୂତନ ପରିବର୍ତ୍ତନ ଆଣିଲା । ମାନବବାଦୀ ଲେଖକମାନେ ମଣିଷକୁ ନେଇ ବିବିଧ ବିଷୟବସ୍ତୁ ଆଧାରରେ

ସେମାନଙ୍କ ସୃଷ୍ଟିକୁ ମହିମା ମଣ୍ଡିତ କଲେ । ପ୍ରାଚୀନ ଅମର ଗ୍ରନ୍ଥର ପୁନରୁଦ୍ଧାର କରାଗଲା । ରାଷ୍ଟ୍ର ଓ ଧର୍ମର ସ୍ୱେଚ୍ଛାଚାରିତା ବିରୁଦ୍ଧରେ ପ୍ରତିବାଦ ଦେଖାଦେଲା । ମାନବ ପ୍ରତି ସମ୍ମାନ ସହିତ ଧର୍ମ, ଦର୍ଶନ ଓ ସାହିତ୍ୟ ପାଇଁ ନୂତନ ଚିନ୍ତା ଓ ଜୀବନ ସମ୍ପର୍କରେ ଏକ ଉଦାର ମାର୍ଜିତ ଦୃଷ୍ଟିଭଙ୍ଗୀ ଦେଖାଦେଲା । ଏହି ମାନବବାଦ ମଣିଷ ସମାଜର ଏକ ଶୃଙ୍ଖଳିତ ଜୀବନ କାମନା କରି ଜୀବନର ଅଖଣ୍ଡତା, ସମଗ୍ରତା ଓ ଐକ୍ୟ ଉପରେ ଗୁରୁତ୍ୱ ଦେଲା ।

ଊନବିଂଶ ସତାବ୍ଦୀର ଭାରତୀୟ ସାହିତ୍ୟ ପାଶ୍ଚାତ୍ୟ ଭାବଧାରାରେ ପରିପୁଷ୍ଟ ହେଲା । ଏହି ଭାବଧାରାକୁ ବଙ୍ଗୀୟ ସାହିତ୍ୟିକ ବଙ୍କିମଚନ୍ଦ୍ର, ମାଇକେଲ୍ ମଧୁସୂଦନ ଓ ବିହାରୀଲାଲ୍ ପ୍ରଭୃତି ଅଧିକ ଭାବରେ ଆହରଣ କରିଥିଲେ । ବିହାରୀଲାଲ୍‌ଙ୍କ ଏକ କବିତାଂଶକୁ ଉଦାହରଣସ୍ୱରୂପ ଏଠାରେ ନିଆଯାଇପାରେ । ଯଥା -

"ମାନୁଷ୍ ଆମାର ଭାଇ ବଡ ପ୍ରିୟ ଧନ୍ ।

ମାନୁଷ୍ ମଙ୍ଗଲ୍ ସଦା କରେ ଅକିଞ୍ଚନ୍ " ଊନବିଂଶ ଶତାବ୍ଦୀର ଶେଷ ଓ ବିଂଶ ଶତାବ୍ଦୀର ଆଦ୍ୟ ଭାଗରେ ବଙ୍ଗଳା ସାହିତ୍ୟରେ ରବୀନ୍ଦ୍ରନାଥ ଠାକୁର ଏକ ଅପ୍ରତିଦ୍ୱନ୍ଦୀ ମାନବବାଦୀ କବି । ଜୀବନ ଓ ଜଗତ ପ୍ରତି ନିବିଡ ମମତା ହେଲା ତାଙ୍କ କବିତାର ଅନ୍ତଃସ୍ୱର । ତାଙ୍କ କବିତାରେ ସେ କୁହନ୍ତି

"ମରିତେ ଚାଇନା ଆମି ସୁନ୍ଦର ସଂସାରେ

ମାନୁଷେର ମାଝେ ଆମି ବାଞ୍ଚିବାର ଚାଇ ।"

ସଂସାର ଓ ଜୀବନ ଯାପନର କଷ୍ଟ ଓ କ୍ଲିଷ୍ଟତା ମଧ୍ୟରେ ସତ୍ୟ ଓ ଅମୃତ କାମୀ ହେବା ହେଉଛି ମାନବିକତା । ମନୁଷ୍ୟ ପ୍ରାଣରେ ସ୍ପନ୍ଦନ ଓ ମନୁଷ୍ୟତ୍ୱର ପିପାସା ଜାଗ୍ରତ କରିବାହିଁ ହେଉଛି ମାନବ ପ୍ରେମ । ଏଣୁ ମାନବ ଗୋଷ୍ଠୀକୁ ଆତ୍ମସ୍ଥ ଓ ଆତ୍ମ ସମ୍ମାନରେ ଉଦ୍‌ବୁଦ୍ଧ କରିବା ମାନବବାଦୀ ସାହିତ୍ୟର ଧର୍ମ । କବିର ଭାବନା କେବଳ ସୁଖଦୁଃଖ ଜଡିତ ମାନବର ଜୟଗାନ ବା ମହିମା କୀର୍ତ୍ତନରେ ନିଃଶେଷ ହୁଏ ନାହିଁ । ବରଂ ଚିରନ୍ତନ ମାନବକୁ ଧ୍ୟାନରେ ଆପଣାର କରିବାହିଁ କାବ୍ୟିକ ବୈଶିଷ୍ଟ୍ୟ ।

ବିଂଶ ସତାବ୍ଦୀର ପ୍ରଥମାର୍ଦ୍ଧ ବେଳକୁ ଦୁଇଟି ବିଶ୍ୱଯୁଦ୍ଧ ମଣିଷର ସଭ୍ୟତା ଓ ପ୍ରତିଷ୍ଠାକୁ ବିଫଳ କରି ଦେଇଥିଲା । ଏଣୁ 'ହଲୋମେନ୍' କବିତାରେ ଏଲିୟଟ୍ କହିଛନ୍ତି -

" We are the Hollow men

We are the stutted men

Learning together

Head pieces fill in the Straw" (Elliot. T. S.. ଜୀବନ ଏବଂ କାବ୍ୟରାଜ୍ୟରେ ମାନବିକତାର ଉଦାର ଆଦର୍ଶ ଚିରଦିନ ପାଇଁ ଅକ୍ଷୁର୍ଣ୍ଣ ହୋଇ ରହି ଆସିଛି । ଆଧୁନିକ ଯୁଗରେ ସକଳ ଅବକ୍ଷୟ ଓ ନିଃସଙ୍ଗତା ମଧ୍ୟରେ ବି କବି ମାନବବାଦର ମହାକାବ୍ୟ ଉଚ୍ଚାରଣ କରୁଛି ।

ଆଧୁନିକ ଓଡିଆ କବିତାରେ ମାନବବାଦ କଥା ଆଲୋଚନା କରିବାବେଳେ ଆମେ ଏହି ସମୟର ବା କିୟତ୍‌ପୂର୍ବ ଜଣେ ସାର୍ଥକ ମାନବବାଦୀ କବିଙ୍କୁ ସ୍ମରଣ କରିବା ଉଚିତ୍ । ମୁହଁରେ ନିଶଦାଢି, ବାଳନୁଖୁରା ଜଟାମୟ, ଦେହରେ କଷାୟ ବସ୍ତ୍ର, ହାତରେ ତାଳପତ୍ର ଛତାଟିଏ, ଗେରୁଆ

ଝୁଲାମୁଣିରେ ତାଳପତ୍ର ଖେଦାଏ ଓ ଲେଖନୀଟିଏ, ଅଥଚ ଆଖିରେ ଆହତ ଅଭିମାନ ଓ ମଣିଷକୁ ଭଲ ପାଇବାର ପ୍ରବଳ ଉତ୍କଣ୍ଠାକୁ ନେଇ ଆସିଛନ୍ତି କବି ଭୀମ ଭୋଇ । ଊନବିଂଶ ଶତାବ୍ଦୀର କାବ୍ୟକୋଟିରେ ଭୀମ ଭୋଇ ଓ ରାଧାନାଥ ହେଲେ ଦୁଇଟି ସ୍ୱତନ୍ତ୍ର ମେରୁ । ଭୀମ ଭୋଇଙ୍କର ମାନବବାଦର ଯେଉଁ ମାନସିକତା ଥିଲା, ତାହା ତାଙ୍କର 'ସ୍ତୁତି ଚିନ୍ତାମଣି' ଓ ଅନ୍ୟାନ୍ୟ କବିତାରେ ସ୍ପଷ୍ଟ ଭାବରେ ରୂପାୟିତ ହୋଇଛି । 'ମୋ ଜୀବନ ପଛେ ନର୍କେ ପଡିଥାଉ' ଠାରୁ କିମ୍ବା

''ଏକ ଖଣ୍ଡ ହାଡ ବୁନ୍ଦାଏ ରୁଧିର ଫୁଟେ ମାଉଁସ ଜାଣଇ

ତେଣୁ କରି ସିନା ପ୍ରାଣୀଙ୍କ ବିକଳ ସହିନପାରିବି ମୁହିଁ ।''

ଏକା ଖଡଗରେ ଦଶ ପାଞ୍ଚମୁଣ୍ଡ

ଛିଡଇ ଭାରତ ଯୁଦ୍ଧେ,

ଆରେକ ଅଙ୍ଗକୁ ପାଦେ ପ୍ରହାରିଲେ

ଏ ଅଙ୍ଗକୁ ମୋର ବାଧେ ।'' ( ଭୋଇ ଭୀମ - ସ୍ତୁତି ଚିନ୍ତାମଣି । ପୃ-୫୪) । ଏଠାରେ କବି ଭୀମ ଭୋଇଙ୍କର କାବ୍ୟରୂପ ତିନୋଟି ମୌଳିକ ପ୍ରସ୍ତାବନା ଉପରେ ପ୍ରତିଷ୍ଠିତ । ଗୋଟିଏ ହେଲା କାବ୍ୟାନୁଭୂତିର ପ୍ରଖରତା, ଅନ୍ୟଟି ମାନବିକତା ଓ ତୃତୀୟଟି ବିଶୁଦ୍ଧ କାରୁଣ୍ୟ । କବିଙ୍କର ମାନବିକ ଆବେଦନ ବ୍ୟକ୍ତିଜୀବନରୁ ବିଶ୍ୱଜୀବନକୁ ଉତ୍ତୀର୍ଣ୍ଣ ହୋଇଛି ।

ଆଧୁନିକ କବିତାରେ କବିମାନେ ମାନବବାଦ ଛଳରେ ମଣିଷର ଦୁଃଖ, ଯନ୍ତ୍ରଣା, ଅପ୍ରାପ୍ତି ଓ ଅଭାବବୋଧକୁ ସୁଯୋଗ ପାଇଲେ ଉପସ୍ଥାପିତ କରୁଥିଲେ । ଅନୁରୂପ ଭାବେ ରାଧାନାଥ ସାହିତ୍ୟରେ ତାହାହିଁ ପାଠକ ଉପଲବ୍ଧି କରେ । ରାଧାନାଥଙ୍କର ପ୍ରତ୍ୟେକଟି କାବ୍ୟରେ ଉତ୍କଳ, ଉତ୍କଳବାସୀ ନିପୀଡିତ ମଣିଷର ଚିତ୍ର ଅଙ୍କିତ । ଭକ୍ତକବି ମଧୁସୂଦନ ରାଓ ତାଙ୍କର ସେହି ଋଷିପ୍ରାଣତା ଭିତରେ ମଣିଷର ଅଭ୍ୟନ୍ତରରେ ଏକ ଦେବାବତରଣ କରାଇଛନ୍ତି । କବି ନିଜର ଆଧିଭୌତିକ କାବ୍ୟ ମାନସରେ ମାନବବାଦର ଜୟଗାନ କରିଛନ୍ତି । ମାନବ ଜୀବନରେ ଧର୍ମ, ନୀତି, ଆଦର୍ଶ, ପରମ୍ପରା ଓ ମାନବ ସଭ୍ୟତାକୁ ଏକ ନୂତନ ଚେତନା ଦେଇପାରିବ ବୋଲି ସେ ଆଶା ପ୍ରକାଶ କରିଥିଲେ ।

ଓଡିଆ କବିତା କ୍ଷେତ୍ରରେ କବି ନନ୍ଦକିଶୋର ବଳଙ୍କ ଭୂମିକା ମଧ୍ୟ ଅନସ୍ୱୀକାର୍ଯ୍ୟ । ସେ ଉତ୍କଳୀୟ ପଲ୍ଲୀ ଅଞ୍ଚଳରେ ବାସ କରୁଥିବା ସାଧାରଣ ମଣିଷ ଜୀବନର ଅନେକ ଗୁମ୍ଫିତ ସତ୍ୟ ତଥା ମଣିଷକୁ ଭଲ ପାଇବା କାବ୍ୟବୋଧକୁ ତାଙ୍କର 'ଗ୍ରାମ ଚାଟଶାଳୀ', 'ଗ୍ରାମ ଶ୍ମଶାନ' ଓ 'ଗ୍ରାମ ଖଳା' ଇତ୍ୟାଦି କବିତାରେ ପ୍ରକାଶ କରିଛନ୍ତି । କବି ଗଙ୍ଗାଧର ମେହେର 'ଭାରତୀ ରୋଦନ' (୧୮୯୪)ରେ ଓଡିଶାର ଜାତୀୟତା ଓ ମଣିଷ ପ୍ରତି ତାଙ୍କର ଗଭୀର ଶ୍ରଦ୍ଧା ନିବେଦନ କରିଛନ୍ତି ।

ସତ୍ୟବାଦୀ ଯୁଗର ସାହିତ୍ୟକୁ କେହି କେହି ଦେଶାତ୍ମବୋଧକ ବା ମାନବବାଦୀ ସାହିତ୍ୟ ଭାବରେ ଅଭିହିତ କରିଥାନ୍ତି । ଏହି ସମୟର ସାହିତ୍ୟ ତଥା ସମାଜର ମାନ୍ତ୍ରିକ ଥିଲେ ଉତ୍କଳମଣୀ ଗୋପବନ୍ଧୁ । ତାଙ୍କର 'ବନ୍ଦୀର ସ୍ୱଦେଶ ଚିନ୍ତା,' 'ବନ୍ଦୀର ଆତ୍ମକଥା', 'ଧର୍ମପଦ' ଓ 'କାରା କବିତା' ଇତ୍ୟାଦିରେ ଜାତୀୟ ଜୀବନ ପରିସ୍ଫୁଟନ ହେବା ସଙ୍ଗେ ସଙ୍ଗେ ମାନବବାଦୀ ଦୃଷ୍ଟିକୋଣ ମଧ୍ୟ ପ୍ରକଟିତ

ହୋଇଛି ଏକ ସ୍ୱାଧୀନ ଓ ଶୋଷଣମୁକ୍ତ ଉତ୍କଳର ସ୍ୱପ୍ନ ଦେଖିବାରେ ସେ ଥିଲେ ମୃତ୍ୟୁ ପର୍ଯ୍ୟନ୍ତ ବିଭୋର । ବଢ଼ି, ମରୁଡ଼ି, ବାତ୍ୟାକ୍ଲିଷ୍ଟ ଜନସାଧାରଣଙ୍କ ପାଇଁ ତାଙ୍କର ହୃଦୟ କାନ୍ଦି ଉଠୁଥିଲା ।

''କେତେ ନରନାରୀ କେତେ ଗୋରୁଗାଈ

ମରୁଥିଲେ କଷ୍ଟେ ଆହାର ନ ପାଇ ।

ପଡ଼ିଗଲେ ମନେ ସେ ବେଳ ଘଟଣା

ହୃଦେ ଏବେ ହୁଏ ଦାରୁଣ ବେଦନା ''(ଦାସ ଗୋପବନ୍ଧୁ - ବନ୍ଦୀର ଆତ୍ମକଥା । ପୃ-୨୧-୨୨ ) । ନୀଳକଣ୍ଠ ଦାସଙ୍କ ''କୋଣାର୍କେ'', ଗୋଦାବରୀଶ ମିଶ୍ରଙ୍କ ''କିଶଳୟ'' (୧୯୨୨) ''ଆଲେଖିକା'' (୧୯୨୩) ଓ ''କାଳିଜାଈ'' ପ୍ରଭୃତି କବିତା ସଙ୍କଳନର କବିତାଗୁଡ଼ିକ ଗଭୀର ମାନବପ୍ରୀତିର ସ୍ୱର ବହନ କରି ରଚିତ । ସତ୍ୟବାଦୀ ବନବିଦ୍ୟାଳୟରୁ ଯେଉଁ ଜାତୀୟ ଚେତନା ଓ ମାନବ ମୁକ୍ତିର ସ୍ୱର ଉଠିଥିଲା, ତାହା ଏକ ଐକାନ୍ତିକ ଆତ୍ମନିଷ୍ଠା ଓ ମୂଲ୍ୟବୋଧ ନେଇ ୧୯୦୯ ମସିହାଠାରୁ ୧୯୨୦ ମସିହା ପର୍ଯ୍ୟନ୍ତ ପ୍ରତିଷ୍ଠିତ ହୋଇଥିଲା ।

ପରବର୍ତ୍ତୀ ସମୟରେ ଓଡ଼ିଆ ସାହିତ୍ୟ କ୍ଷେତ୍ରରେ ରୋମାଣ୍ଟିକ୍ ଜାତୀୟବାଦ ଓ ମାନବବାଦକୁ ନେଇ ସାହିତ୍ୟ ରଚନା କରିଥିବା କେତେକ ସାହିତ୍ୟିକ ଏକ କାବ୍ୟଯୁଗର ସୂତ୍ରପାତ କରିଥିଲେ, ଯାହା 'ସବୁଜ ଯୁଗ ନାମରେ ନାମିତ । ଏମାନଙ୍କ ସାହିତ୍ୟରେ ମଣିଷକୁ ଭଲ ପାଇବା ସ୍ୱର ପ୍ରକଟିତ ହୋଇଛି । ସମସ୍ତ ପ୍ରଳୟ' ଭିତରେ ବି ଏମାନେ ଜୀବନର ଓଁକାରକୁ ଅସ୍ୱୀକାର କରି ନାହାଁନ୍ତି । ଏହି ସମୟର ଜଣେ ବିଶିଷ୍ଟ ମାନବବାଦୀ କବି ହେଲେ କାଳିନ୍ଦୀଚରଣ ପାଣିଗ୍ରାହୀ । ତାଙ୍କ କବିତାକୁ ସମାଜବାଦୀ ଓ ସାମ୍ୟବାଦୀ କହିବା ଅପେକ୍ଷା ମଣିଷ ଓ ସମାଜର କାବ୍ୟଇସ୍ତାହାର କହିଲେ କିଛି ଭୁଲ୍ ହେବ ନାହିଁ । ଏହି ସମୟର ଜଣେ ବିଶିଷ୍ଟ ନାରୀକବି କୁନ୍ତଳାକୁମାରୀ ସାବତ୍‌ଙ୍କ କବିତାରେ ଆମେ ମାନବବାଦର ସ୍ୱର ଲକ୍ଷ୍ୟ କରିବା । କୁନ୍ତଳା କୁମାରୀ କହନ୍ତି -

''ଶୁଣ ହେ ମଣିଷ ଭାଇ

ଝୁରି ମରିବାକୁ ବୁଡ଼ି ମରିବାକୁ

ମଣିଷ ଜନମି ନାହିଁ ।'' ( ସାବତ୍ କୁନ୍ତଳା କୁମାରୀ - କୁନ୍ତଳା କୁମାରୀ ଗ୍ରନ୍ଥମାଳା ପୃ-୧୯୩ ) । କୁନ୍ତଳା କୁମାରୀଙ୍କ ପରି କାନ୍ତ କବି ଲକ୍ଷ୍ମୀକାନ୍ତଙ୍କ କବିତାରେ ମଣିଷ ପ୍ରତି ଏକ ଦରଦୀ ହୃଦୟର ପ୍ରାଣଭରା ସ୍ପର୍ଶ ଦେଖିବାକୁ ମିଳେ । ଜୀବନର ସମସ୍ତ ବିରୋଧାଭାଷ ସତ୍ତ୍ୱେ ତାଙ୍କ ରଚନାରେ ଏକ ମୋହାବିଷ୍ଟ ମାନବବାଦୀ ଦୃଷ୍ଟିଭଙ୍ଗୀ ଲକ୍ଷ୍ୟ କରାଯାଏ । ରାଧାମୋହନ ଗଡ଼ନାୟକ 'ଛତରଖାଇ', ଫକିରା ଜେନା, ପ୍ରଧାନ ଘରର ବୋହୂ, ଗରୀବର କୁଟୀର, ଲୁହର ଦାବୀ, ପ୍ରଭୃତି କବିତାରେ ମଣିଷର ଏକ ଶାଶ୍ୱତ ମୂର୍ତ୍ତି ଅଙ୍କନ କରିଛନ୍ତି । ଗଡ଼ନାୟକଙ୍କର 'ଆକାଂକ୍ଷା' କବିତାରୁ ଏକ ଉଦାହରଣ ନିଆଯାଇପାରେ -

''ମଣିଷର ଆନନ୍ଦ ମଧ୍ୟରେ ଗଢ଼ ମୋର

ଆନନ୍ଦ କୁଟୀର ।

ମଣିଷର ବେଦନା ଭିତରେ ଫିଟାଅ ମୋ

ନେତ୍ର ଅଶ୍ରୁଧାର ।'' (ଗଡନାୟକ ରାଧାମୋହନ - ଆକାଂକ୍ଷା । ପୃ-୯୨ ) । ବଞ୍ଚିବାର ସମସ୍ତ ସଙ୍କଟରୁ ଆତ୍ମରକ୍ଷା କରିବା ପାଇଁ ପ୍ରଥମ ପ୍ରଚେଷ୍ଟା ଇଉରୋପର କବିମାନଙ୍କଠାରୁ ଆରମ୍ଭ ହୋଇଥିଲା । ଏକ ଅତିବାସ୍ତବବାଦୀ କାବ୍ୟଚେତନା କ୍ରମଶଃ ପାଶ୍ଚାତ୍ୟ ସାହିତ୍ୟରୁ ପ୍ରସାରିତ ହେବାକୁ ଲାଗିଲା । ଏ ସମୟର କବିମାନଙ୍କ ରଚନାରେ ମଣିଷ ହେଲା ମୁଖ୍ୟ । କବି ହ୍ୱିଟ୍‌ମ୍ୟାନ୍ ଘୋଷଣା କଲେ - " Commrade this is no book

Who touches it touches a man."

ଅନୁରୂପ ଭାବରେ କବି ସଚ୍ଚିଦାନନ୍ଦ ରାଉତରାୟଙ୍କ କବିତାରେ ପ୍ରକାଶ ପାଇଛି -

''ତୁମେ ମୋର ଛପାବହି ଯେତେବେଳେ ଛୁଅଁ

ଛୁଅଁ ନୂଆ ମଣିଷର ଛାତି

ଏହି ପୃଥିବୀର ସବୁ ମଣିଷ ଜାତି

ତା'ର ପ୍ରତିଟି ଖବର ରୂପ ପାଏ

କବିତାରେ ମୋର ।

ମାର୍କସ୍ ଓ ଫ୍ରୟେଡ୍‌ଙ୍କ ଦର୍ଶନ ଋଷର ଅକ୍ଟୋବର ବିପ୍ଳବ ଇତ୍ୟାଦିର ପ୍ରଭାବ କ୍ରମଶଃ ଓଡିଆ ସାହିତ୍ୟରେ ମଧ୍ୟ ଅନୁଭୂତ ହେଲା । ଓଡିଶାର ପ୍ରଗତିଶୀଳ ଲେଖକମାନେ ''ନବଯୁଗ ସାହିତ୍ୟ ସଂସଦ'' ଗଠନ କଲେ । ଅନନ୍ତ ପଟ୍ଟନାୟକ, ଭଗବତୀ ଚରଣ ପାଣିଗ୍ରାହୀ, ସଚ୍ଚିଦାନନ୍ଦ ରାଉତରାୟ ପ୍ରମୁଖ କବିମାନେ ମଣିଷର ଜୟଗାନ କରି କବିତା ରଚନାକଲେ । ''ଟି. ଏସ୍. ଏଲିୟଟଙ୍କ '' ୱେଷ୍ଟଲ୍ୟାଣ୍ଡ''ରେ ପ୍ରତିଫଳିତ କାବ୍ୟ ଦର୍ଶନ ଯଥା ମଣିଷଜୀବନ ପ୍ରତି ଗଭୀର ହତାଶା, ଅବିଶ୍ୱାସ, ସଭ୍ୟତାର ସଙ୍କଟ, ଯୁଦ୍ଧ ବିଭୀଷିକା, ପୃଥିବୀର ବହୁ ମାନବବାଦୀ କବିଙ୍କ ଅନ୍ତରରେ ଗଭୀର ହାହାକାର ଉଠାଇଥିଲା । ଆଲୋଚକ ମାନଙ୍କ ମତରେ ଭାବ ରାଜ୍ୟରେ ମାନବବାଦୀ ଚିନ୍ତାଧାରାର କେବେ ମୃତ୍ୟୁ ଘଟି ନାହିଁ ଏବଂ ସାହିତ୍ୟ ଯୁଗେ ଯୁଗେ ଏଥିପାଇଁ କେତେ ସର୍ତ୍ତହୀନ ଅଶ୍ରୁ, ଆଶା ଓ ଅଭିଳାଷ ନିବେଦନ କରିଆସିଅଛି !'' (ଶତପଥୀ ନିତ୍ୟାନନ୍ଦ - ସବୁଜରୁ ସାମ୍ପ୍ରତିକ । ପୃ-୨୭୪ ) । ତେଣୁ ପ୍ରତ୍ୟେକ ସାହିତ୍ୟର କେନ୍ଦ୍ରବିନ୍ଦୁରେ ମଣିଷ ବିଦ୍ୟମାନ । ମାନବବାଦକୁ ଛାଡି ସାହିତ୍ୟ ରଚନା ଅସମ୍ଭବ ।

ସଚ୍ଚିଦାନନ୍ଦ ରାଉତରାୟ ଓଡିଆ କବିତାର ଆଙ୍ଗିକ ଓ ଆତ୍ମିକ ଶୈଳୀରେ ନୂତନ ପରିବର୍ତ୍ତନ ଆଣିଲେ । ବାକ୍‌ରୀତି ଓ କାବ୍ୟରୀତିର ସମନ୍ୱୟ ସାଥିରେ ମଣିଷର ଅବଚେତନ ମନର ଏକ ସ୍ପଷ୍ଟ ଚିତ୍ର ତାଙ୍କ କବିତାରେ ଦେଖିବାକୁ ମିଳିଲା । କବିଙ୍କର ଉତ୍ତର ଷାଠିଏର ପ୍ରତିମା ନାୟକ, ମାଟିଆ ବୁରୁଜ ଜହ୍ନ, ଭାନୁମତୀର ଦେଶ ଓ କବିତା - ୧୯୬୨, ଇତ୍ୟାଦି କବିତାରେ ମାନବବାଦୀ ଦୃଷ୍ଟିଭଙ୍ଗୀ ପ୍ରକଟିତ ହୁଏ ।

ସଚ୍ଚିଦାନନ୍ଦ ରାଉତରାୟଙ୍କ ପରବର୍ତ୍ତୀ ପ୍ରାୟ ସମସ୍ତ ଆଧୁନିକ କବି ମଣିଷକୁ ଭଲ ପାଇଛନ୍ତି । କବିତା ମାଧ୍ୟମରେ ମଣିଷର ଏକ ପରିଣତ ଆତ୍ମପ୍ରତିଷ୍ଠା ଦାବୀ କରିଛନ୍ତି । ମାନବତ୍ୱର

ପ୍ରତିଷ୍ଠା ପାଇଁ ଏମାନେ ଅତୀତ ଓ ପାରମ୍ପରିକ ବିଶ୍ୱାସକୁ ବର୍ତ୍ତମାନର ଜୀବନ ଶୈଳୀ ସହ ଅନୁବର୍ତ୍ତନ କରିଛନ୍ତି । ଏମାନଙ୍କ କବିତାର ମର୍ମିକଅଭିବ୍ୟକ୍ତି ''ମୃତ୍ୟୁ ର୍ମା ଂ ଅମୃତ ଗମୟଃ'' ପରି ବୈଦିକ ମାନବବାଦୀ ବାଣୀ ଉପରେ ପ୍ରତିଷ୍ଠିତ । ସ୍ୱାଧୀନତା ପରବର୍ତ୍ତୀ ସମୟର କବିମାନେ ସେମାନଙ୍କ କବିତାରେ ମଣିଷର ଏକାକୀତ୍ୱ ମଧ୍ୟରେ ତା'ର ମୂଲ୍ୟବୋଧର ଚିତ୍ର ପ୍ରକଟନ କରିଛନ୍ତି ।

ସତୁରୀ ଦଶକର ଓଡ଼ିଆ କବିତାରେ କବିମାନେ କେତେ ବେଳେ ମଣିଷ ଦୁଃଖରେ ବେଦନାଦଗ୍ଧ ତ କେତେବେଳେ ରୋମାଣ୍ଟିକ୍ ଅନ୍ୱେଷଣରେ ଖୋଜିଛି ମଣିଷ ଜୀବନର ମୂଲ୍ୟବୋଧ । ଏହି ମୂଲ୍ୟବୋଧକୁ ଖୋଜିବାରେ କେବେ ସଫଳ ତ ପୁଣି କେବେ ହତାଶ ହୋଇଛି କବି । ଏହି ସମୟର କବିମାନେ ମଣିଷକୁ ଏକ ଦୁରୂହତମ ଅପାର୍ଥିବ ଉପଲବ୍‌ଧି ଭାବେ ଗ୍ରହଣ କରିଛନ୍ତି । ମଣିଷର ସ୍ଥିତିକୁ କବିତାରେ ସ୍ୱୀକାର କରାଯାଇଛି । ଡଃ ଦାଶରଥି ଦାସଙ୍କ ମତରେ ''କବିତା ସାମାଜିକତାର ନିଦର୍ଶନ ଛନ୍ଦଟିଏ, ଉଚ୍ଚାରଣ କଲାମାତ୍ରେ ଅନ୍ୟ ବ୍ୟକ୍ତିର ସ୍ଥିତି ସ୍ୱୀକାର୍ଯ୍ୟ ।'' (ଦାସ, ଦାଶରଥି - ଚିହ୍ନାମାଟି ଅଚିହ୍ନା ଆକାଶ । ପୃ-୩୩.) । ତେଣୁ କବିତାରେ ମାନବବାଦ ଏକ ଚିରନ୍ତନ ଆବେଦନ । ପ୍ରତ୍ୟେକ କବିତା ସବୁ ସମୟରେ ମଣିଷର କଥାହିଁ କୁହେ ।

ସ୍ୱାଧୀନତା ପୂର୍ବରୁ ଓ ପରେ ଯେଉଁ କବିମାନେ ମାନବବାଦକୁ ଆଧାର କରି କବିତା ଲେଖୁଥିଲେ, ସେମାନେ ମୁଖ୍ୟତଃ ଦେଶପ୍ରୀତି ଓ ଜାତୀୟପ୍ରୀତି ଦ୍ୱାରା ଉଦ୍‌ବୁଦ୍ଧ ହେଉଥିଲେ । କ୍ରମଶଃ ପାଶ୍ଚାତ୍ୟ ସାହିତ୍ୟକୁ ଅନୁଧ୍ୟାନ, ବିଶ୍ୱଯୁଦ୍ଧର ଘନଘଟା, ଗାନ୍ଧୀ, ମାର୍କସ୍ ଓ ଫ୍ରୟେଡ୍‌ଙ୍କର ଆବିର୍ଭାବ ଆଧୁନିକ ମନରେ ଏକ ନୂତନ ଅନ୍ୱେଷା ଜାଗ୍ରତ କଲା । ହାଇଡ୍ ଗାର, ସାର୍ତ୍ତ୍ରେ, କାମ୍ୟୁ, ନିତ୍‌ସେ ଓ କାଫ୍‌କା ପ୍ରମୁଖ ଦାର୍ଶନିକ ମାନେ ମଣିଷର ଏକ ଅନାଲୋଚିତ ବଳୟକୁ ଆବିଷ୍କାର କଲେ । କବି ନନ୍ଦନତତ୍ତ୍ୱ ଭିତରେ ମଣିଷକୁ ଠାବ କରିବାକୁ ଚେଷ୍ଟା କଲା । ମଣିଷ ଆସ୍ତେ ଆସ୍ତେ ହେଲା ଜଟିଳ, ସାମାଜିକତା, ସଂଗଠନ, ଶିଳ୍ପ ଓ ଯୋଜନା ଇତ୍ୟାଦିର ବୈଜ୍ଞାନିକ ପ୍ରୟୋଗ ମଣିଷ ଭିତରେ ଏକ ନୂତନ ଅବବୋଧ ସୃଷ୍ଟିକଲା । ଏଣୁ କବିତା ମାଧ୍ୟମରେ ଜଗତର ନିୟମ ଓ ମଣିଷ ପ୍ରକୃତିର ନିୟମ ମଧ୍ୟରେ ଉପଲବ୍‌ଧି ଓ ଆବିଷ୍କାର କରିବା ଚିନ୍ତାଧାରା ବଢ଼ିଲା । ଏଣୁ ମଣିଷର ସ୍ୱାଧୀନତାକୁ ମଧ୍ୟ କ୍ରମଶଃ କବି ସ୍ୱୀକାର କଲା । ସମସ୍ତ ସାମାଜିକ ତଥା ସବୁ ପ୍ରକାର ମାନବିକ ଅଧିକାରକୁ ଦାବୀ କରିବା ଶିଖିଲା ମଣିଷ । ମଣିଷ ବ୍ୟକ୍ତିରୁ ବିଶ୍ୱରେ ପରିଣତ ହେଲା । ମଣିଷର ଅସ୍ତିତ୍ୱକୁ ସର୍ବତ୍ର ଉପଲବ୍‌ଧି କରାଗଲା । ଫଳରେ କବିର ଅନୁଭୂତିର ଇଲାକା ବିସ୍ତୃତ ହେଲା । ଏକ ଉଦାର ଦୃଷ୍ଟିକୋଣ ନେଇ କବି, ଶିଳ୍ପୀ ଓ କଳାକାର ମଣିଷକୁ ଚିହ୍ନିବାକୁ ଚେଷ୍ଟା କଲେ । ସେହିପରି କବି ପ୍ରସନ୍ନ ପାଟଶାଣୀ ସମଗ୍ର ବିଶ୍ୱର ମଣିଷକୁ ନିଜ ଭିତରେ ଆପଣାର କରି ରଖିଛନ୍ତି । ତା'ର ଭଲ ମନ୍ଦ, ସୁଖ ଦୁଃଖରେ କବି ନିଜେ ହଜିଯିବାକୁ ଚେଷ୍ଟାକରିଛନ୍ତି ।

କବି ଉପନିଷଦୀୟ ଦର୍ଶନ ଅନୁସାରେ ଜାଣନ୍ତି, ଏ' ସମଗ୍ର ଜଗତ ଓ ଜୀବନ ପରମବ୍ରହ୍ମଙ୍କର ସୃଷ୍ଟି । ପ୍ରତ୍ୟେକ ପ୍ରାଣୀ ଭିତରେ ଥିବା ଜୀବବ୍ରହ୍ମ ପରମବ୍ରହ୍ମଙ୍କର ଅଂଶ ବିଶେଷ । ଏହି ମହାଭାବରେ କବି ଯେତେବେଳେ ଦୀକ୍ଷିତ ହୋଇଛନ୍ତି, ସେତେବେଳେ ଲୋପ ହୋଇଛି ତାଙ୍କ ଭିତରୁ ସଂକୀର୍ଣ୍ଣତା, ସ୍ୱାର୍ଥପରତା, ଲୋଭ ଓ ହିଂସା । ବିଶ୍ୱଭ୍ରାତୃତ୍ୱବୋଧ ଚିନ୍ତାଧାରାରେ ସେ ନିଜକୁ ଅନୁପ୍ରାଣିତ କରିଛନ୍ତି । ତାଙ୍କ ଭିତରେ ଦୟା, କ୍ଷମା, ଉଦାରତା, ସହାନୁଭୂତି ଆଦି ମାନବୀୟଗୁଣଗୁଡ଼ିକ ଉଦ୍ରେକ

ହୋଇଛି । ତେଣୁ ସେ ପ୍ରତ୍ୟେକ ମଣିଷକୁ ଭଲ ପାଇଛନ୍ତି । ପ୍ରତ୍ୟେକ ମଣିଷର ଦୁଃଖରେ ସେ ଦୁଃଖୀ ନହୋଇ ରହିପାରି ନାହାନ୍ତି । ସାମ୍ପ୍ରତିକ ସମୟର ଯୁଗଯନ୍ତ୍ରଣାରେ ଘାଣ୍ଟି ହେଉଥିବା ମଣିଷମାନଙ୍କ ପ୍ରତି ତାଙ୍କ ହୃଦୟରେ ବ୍ୟଥା ଭରିଯାଇଛି । ଯଥା -

''ସାରା ପୃଥିବୀଟା ଏକ ହାସ୍‌ପାତାଳ

ମୁଁ ଦେଖୁଛି

ତା' ଭିତରେ ଯନ୍ତ୍ରଣାରେ ଛଟପଟ

ସବୁ ମଣିଷଗୁଡାକ

ରୋଗୀ ଓ ରୋଗୀଣୀ ।'' (ପାଟଶାଣୀ ପ୍ରସନ୍ନ - କିଛି ଲୁହ କିଛି ଲହୁ । ପୃ-୩୫ )। ସମଗ୍ର ପୃଥିବୀର ମଣିଷକୁ କବି ନିଜ ଭିତରେ ଅନୁଭବ କରିଛନ୍ତି । ସାହିତ୍ୟତତ୍ତ୍ୱବିତ୍‌ମାନଙ୍କ ମତରେ କବି ହେଉଛି ବିଶ୍ୱଜୀବନର ଚେତନ ସତ୍ତା, ତେଣୁ କବିର ଅନୁଭୂତିରଇଲାକା ହେଉଛି ଦୁଇଟି । ଗୋଟିଏ ତା'ର ଆତ୍ମାର ଅନ୍ତଃପୁର, ଅନ୍ୟଟି ତା'ର ଚାରିପାଖର ସମାଜ । ଏହା ହିଁ ତାଙ୍କ କବିତାର ମୂଳ ଉପାଦାନ । ତେଣୁ କବି ଜୀବନର କିଛି ନୈରାଶ୍ୟ ଓ ବ୍ୟର୍ଥତାକୁ ଆଘାତ କରି ମଣିଷକୁ ଭଲପାଇବାର ମନ୍ତ୍ରଧ୍ୱନି ଶୁଣାଇଛନ୍ତି ତାଙ୍କ କବିତାରେ । କବି ମାନବୀୟ ଚିନ୍ତାରେ ମଣିଷର ଅସହାୟତା ଓ ନିରୁପାୟହୀନତାକୁ ଶୁଣାଇଛନ୍ତି ତାଙ୍କ କବିତାରେ । ଏପରିକି ଗାଁର ଜଣେ ସାଧାରଣ ମୂଲିଆଣୀ ଜୀବନର ବିପର୍ଯ୍ୟୟକୁ ନିଜ ଭିତରକୁ ନେଇ ବ୍ୟଥିତ ହୋଇଛନ୍ତି । ଯେପରି -

''ମୂଲିଆଣୀ ପିଠିର ଝାଳରେ ଝୁଲେ

ଖରାର ତଲୁଆର /

ମୂଳ ତା'ରି ସାଆଣ ହୁଏ

ଗେଣ୍ଡାର ଆଁରେ /

ଖସିପଡେ ଭିକଥାଳ /

ପ୍ରକମ୍ପିତ କରି ଉଠେ କ୍ଷୁଧାର କପାଳ, '' ( ପାଟଶାଣୀ ପ୍ରସନ୍ନ - ସାପଗାତରେ ସକାଳ । ପୃ-୧୨ )।

ମାନବବାଦୀ କବି ମଣିଷ ସମାଜ ପ୍ରତି ସଚେତନ ହୁଏ । ସମାଜରେ ନ୍ୟାୟ, ଅନ୍ୟାୟ ଓ ଅତ୍ୟାଚାର ପ୍ରତି ସଚେତନ ରୁହେ । ମଣିଷ ସମାଜ ପ୍ରତି ଆନୁଗତ୍ୟ, ସାମାଜିକ ଚଳଣି, ନୀତିନିୟମ ପ୍ରତି ଅନୁରକ୍ତି, ଅନ୍ୟାୟ, ଅତ୍ୟାଚାର ଓ ଶୋଷଣ ବିରୋଧରେ ସ୍ୱର ଉତ୍ତୋଳନ, ସମୂହ ପ୍ରତି ଏକ ଦାୟିତ୍ୱବୋଧ କବିର ଥାଏ । ମଣିଷର ଦୁଃଖ କବିକୁ ଆଘାତ ଦିଏ । ଏହି ପରିପ୍ରେକ୍ଷୀରେ କବି ପାଟଶାଣୀଙ୍କର ବୈପ୍ଳବିକ ଆହ୍ୱାନକୁ ନେଇ ରଚିତ କବିତାଗୁଡ଼ିକ ଉଚ୍ଚମାନବବାଦକୁ ଭିତ୍ତିକରି ପ୍ରକଟିତ । ମଣିଷ ସମାଜରୁ ଶୋଷଣ ଓ ଅତ୍ୟାଚାର ଦୂର କରିବା ପାଇଁ କବି ନିଜ ଜୀବନକୁ ମରଣ ମୁହଁରେ ଠେଲିଦେଇଛନ୍ତି । ଦିନେ ମାୟାକୋଭସ୍କିଙ୍କ କଣ୍ଠରୁ ଶୁଣାଯାଇଥିଲା -

" Where - ever pain is there am I

on every single tear

that is shed

I myself am crucified. " (Mayacovesky - A cloud in trousers. ସେହିପରି କବି ପାଟଶାଣୀ ମଣିଷର ମୁକ୍ତି ଆନ୍ଦୋଳନ ଧାରାରେ ଯେଉଁ ମାନବବାଦୀ ମହାମନୀଷୀ ମାନେ ନିଜ ଜୀବନକୁ ଉତ୍ସର୍ଗ କରିଥିଲେ ସେଇମାନଙ୍କ ଉଦ୍ଦେଶ୍ୟରେ ଗାଇଛନ୍ତି -

- ''ମର ପଛେ ଦିଅ ନାହିଁ ଧରା

ଜୀବନ ସାର୍ଥକ କର ଭାଙ୍ଗିଯାଉ

ଶୋଷଣର କାରା ।'' ( ପାଟଶାଣୀ ପ୍ରସନ୍ନ - ରକ୍ତପଥ । ପୃ-୪୭ ) । ଏ ପ୍ରକାର ସବୁ କବିତାରେ ମଣିଷପ୍ରତି ସାମାଜିକ ଅଙ୍ଗୀକାର ବଦ୍ଧତା ଭିତରେ ଏକ ମାନବିକ ଆବେଦନ ପ୍ରଚ୍ଛନ୍ନ ଭାବରେ ରହିଥିବା ପରିଦୃଷ୍ଟ ହୁଏ । ସବୁ ମଣିଷର ସୁଖ, ଦୁଃଖ, ଆଶା ଓ ନିରାଶାକୁ କବି ନିଜର ବୋଲି ଗ୍ରହଣ କରିନିଏ । ମଣିଷକୁଂ ମୁକ୍ତି ଦେବାର ସ୍ୱପ୍ନ ଦେଖେ । ମଣିଷର ମୁକ୍ତିକାମୀ ଚିନ୍ତାଧାରା କବିତାରେ ଉଚ୍ଚ ମାନବିକତାର ମୂଲ୍ୟବୋଧ ବହନ କରେ । ମଣିଷର ଅସହାୟତାକୁ କବି ପାଟଶାଣୀ ବିଶ୍ୱମାନବୀୟ ଚିନ୍ତାରେ ପରିଣତ କରିଛନ୍ତି । ସକଳ ମଣିଷର ଦୁଃଖକୁ କବି ନିଜ ଭିତରେ ଏକାତ୍ମ କରି ଦେଇଛନ୍ତି । 'ବର୍ଷା' କାବ୍ୟ ଗ୍ରନ୍ଥରେ ବର୍ଷା ଅଗଣିତ ମଣିଷର ଲୁହ ହୋଇ କବିର ଆଖିରୁ ଝରିଯାଇଛି । ଧୂଳି ଧୂସରିତ ପୃଥିବୀ ଉପରକୁ ବର୍ଷା ଏକ ମାନବବାଦୀତାର ରଥ ଘେନି ଓହ୍ଲେଇ ଆସିଛି । କବି ପାଟଶାଣୀ ତାଙ୍କର ''ଅବଧୂତ ଘୋଷଣା ପତ୍ର''ରେ କହିଛନ୍ତି - ''ହେ ମଣିଷ,ମଣିଷ ଭିତରେ ଶୁଭ୍ରସରାଟି ପାଇଁ ମଣିଷକୁ ଭଲପାଏ, ଯେତେବେଳେ ମଣିଷର ବହିର୍ଭାଗ ଘୁଣଖାଏ, ସେତେବେଳେ ତା'ର ସବୁଜ ହେବାର ପ୍ରୟୋଜନ ପଡେ । ତାକୁ ପ୍ରଥମେ ସାଂସ୍କୃତିକ ଚେତନା, ସାଂସ୍କୃତିକରୁ ସମାଜ ଚେତନା ଓ ସମାଜ ବୈପ୍ଳବିକ ଚେତନା ଦେଇ ସ୍ୱାଧୀନତା, ମୁକ୍ତି ଓ ମାନବବାଦର ଅର୍ଥକୁ ରକ୍ତାକ୍ତ ସଂଗ୍ରାମ ମାଧ୍ୟମରେ ଅଣାଯିବା ପ୍ରୟୋଜନ ହୋଇପଡେ । ମାନବ ଜୀବନ ପ୍ରବାହ ଏକାନ୍ତ ସତ୍ୟ । ସାମ୍ପ୍ରତିକ ସଭ୍ୟତାର ଶେଷ ପରୀକ୍ଷା ଓ ଅବକ୍ଷୟ ଭିତରେ ବି ମୁକ୍ତିକାମୀ ମଣିଷର ଶାନ୍ତି ଚିତ୍ର ପରିସ୍ଫୁଟ ହୋଇଛି । + + + ପରମ୍ପରା ଭାଙ୍ଗି ପରମ୍ପରା ଗଢିବା ଆମେ ଜାଣୁନା, ସତ୍ୟପାଇଁ ଅନବରତ ସଂଗ୍ରାମ ଲକ୍ଷ୍ୟରେ ଆମର ଗତି ।'' ( ପାଟଶାଣୀ ପ୍ରସନ୍ନ - ଅବଧୂତ ଘୋଷଣା ପତ୍ର, ଅବଧୂତ ଯୁଗ - vol - I, 1970. ) କବିଙ୍କର ଏହି ଉଦ୍‌ଘୋଷଣା ଅତି ଚମତ୍କାର ଭାବେ ମାନବବାଦୀ ଭାବଧାରାକୁ ଲକ୍ଷ୍ୟ କରି ଉଦ୍‌ଘୋଷିତ । ଏହି ଭାବଧାରାରେ ଦୀକ୍ଷିତ କବି ଚୁପ୍‌ଚାପ୍ ସବୁଜ ଘାସର ଚାଦର ତଳେ ଶୋଇପାରନ୍ତି ନାହିଁ । କାନରେ ତାଙ୍କର କୋଟି କୋଟି ନିରନ୍ନ ଜନତାର ଦୁଃଖ ବେଦନା ଆସି ବାଜୁଥାଏ । ଯେପରି -

'' ଘାସର ଚାଦର ତଳେ ଶୋଇପାରେ ନାହିଁ /

ଉଜାଗର ମାଟି /

କାନର ପରଦା ତଳେ /

ବାଢେ କୋଟିପାଦର ସୁସୁରୀ ।'' (ପାଟଶାଣୀ ପ୍ରସନ୍ନ - ଇସ୍ତାହାର - ନଭେମ୍ବର - ୧୯୭୪) 'ପ୍ରତିଧ୍ୱନି' । ବଞ୍ଚିବା ମଣିଷର ସବୁଠାରୁ ବଡ ସତ୍ୟ । ଯେପରି -

''ସେ ନେଇଛି ଶପଥ

ମରଣର ପୃଷ୍ଠାପରେ

ଲେଖିବାକୁ ବଞ୍ଚିବାର ଭାଷା ।'' (ପାଟଶାଣୀ ପ୍ରସନ୍ନ - 'ଅଗ୍ନିଯୁଗ' । ପୃ-୭୬ ) । ଏସବୁ କବିତାରେ ମଣିଷ ପାଇଁ ସତ୍ୟ ଘୋଷଣାହିଁ କବିଙ୍କର ଲକ୍ଷ୍ୟ । ମାନବର ମୁକ୍ତି ଚିନ୍ତାହିଁ କବିଙ୍କର କବିତାରେ ମୁଖ୍ୟ ଆବେଦନ । ଯେପରି -

''ଜୀବନ ଦେଇ ଲେଖିଥିବା

କବିତାରେ ଦିନେ ଉଠିଥିଲା

ମୁକ୍ତିର ବେଦନା ।'' (ପାଟଶାଣୀ ପ୍ରସନ୍ନ - ବାଘ ଆଁରେ ପିକ୍‌ନିକ୍ । ପୃ-୭ ) । ଉପରୋକ୍ତ କାବ୍ୟ ପଂକ୍ତିରୁ ଜଣାଯାଏ ପାଟଶାଣୀଙ୍କ କବିତାରେ ଜୀବନର ଏକ କ୍ଷୁଦ୍ରତମ ସୂକ୍ଷ୍ମତମ ଅଥଚ ଏକ ମହାନ୍ ସତ୍ତା ଆବିଷ୍କୃତ ହୁଏ । କବି ସୀତାକାନ୍ତ ମହାପାତ୍ର କବି ପାଟଶାଣୀଙ୍କ କବିତାକୁ ''ଏକ ସଙ୍ଗେ ଜୀବନ ଓ ମହାଜୀବନର ଛବି'' ଭାବରେ ଅଭିହିତ କରିଛନ୍ତି ।'' ମହାପାତ୍ର ସୀତାକାନ୍ତ - ଦୀପ୍ତି ଓ ଦ୍ୟୁତି । ପୃ-ଦିଅଣା । ତେଣୁ କବି ମାନବିକ ମୂଲ୍ୟବୋଧ ସମ୍ପନ୍ନ ପରିପୂର୍ଣ୍ଣ ଜୀବନର ପ୍ରତିଷ୍ଠା ପାଇଁ ତାଙ୍କର କାବ୍ୟକୃତିକୁ ମାଧ୍ୟମ କରିଛନ୍ତି ।

ଯେତେବେଳେ ବ୍ରହ୍ମ ସହିତ ଜୀବନର ସମ୍ପର୍କ ଘଟେ, ସେଠାରେ ଏକ ମହାସମ୍ବନ୍ଧ ଜନ୍ମ ହୁଏ । ଯାହାକୁ କବି ନିଜ ଉପଲବ୍ଧି ଜରିଆରେ ଏକ କାବ୍ୟିକ ଚେତନା ବୋଲି ମନେକରେ । ସେଠାରେ ବାହ୍ୟ ଦୃଷ୍ଟି ଅନ୍ତର୍ଦୃଷ୍ଟିରେ ପରିଣତ ହୁଏ । ଫଳରେ ଏକ ସମ୍ବେଦନଶୀଳ ଚିନ୍ତାଧାରା ଉତ୍କୀର୍ଣ୍ଣ ହୋଇ ଶାବ୍ଦିକ ରୂପ ପରିଗ୍ରହଣ କରେ, ତାହା ମଣିଷର ଜୟଗାନ ପାଇଁ ଅଭିପ୍ରେତ ହୋଇଥାଏ । ଦୁର୍ଘଟଣାରେ ଅନ୍ଧ ହୋଇଥିବା ସମୟରେ କବି ତାଙ୍କର ''କିଛି ଲୁହ କିଛି ଲହୁ'' କବିତା ଗ୍ରନ୍ଥ ରଚନା କରିଛନ୍ତି । ଏଥିରେ କବି ନିଜର ଅନ୍ତଃସତ୍ତାକୁ ବାହ୍ୟଜଗତ ସହିତ ଯୋଡିବାର ଯେଉଁ ପ୍ରଜ୍ଞା ନିହିତ ଅଛି, ତାହା ଏଠାରେ ଲକ୍ଷ୍ୟ କରାଯାଏ । ଚକ୍ଷୁ ହରାଇଥିବା ଏକ ନିର୍ଦ୍ଦିଷ୍ଟ ସମୟ ଭିତରେ କବି ବେଶୀ ମାନବୀୟ ଚେତନାରେ ଆପ୍ଳୁତ ହୋଇଥିବାର କାବ୍ୟିକ ନିଦର୍ଶନ ଏହିପରି -

''ମୋ ଦେହର ପୃଥିବୀ ଭିତରେ

ଆଖିର ଡୋଳା ମୋର

ଭାରତୀୟ ମାନଚିତ୍ର ।

ଲୁହର କଣ୍ଟାରେ ଝୁଲୁଛି ।'' (ପାଟଶାଣୀ ପ୍ରସନ୍ନ - କିଛି ଲୁହ କିଛି ଲହୁ । ପୃ-୨୨ ) । ନିଜ ଦେହକୁ ପୃଥିବୀ ସହ ତୁଳନା କରି ଆଖିର ଡୋଳାକୁ ଭାରତର ମାନଚିତ୍ର ଭାବେ ପରିକଳ୍ପନା କରିଛନ୍ତି । ମାନବବାଦୀ କବି ଭୀମଭୋଇ ଯେପରି କହିଛନ୍ତି - ''ମୋ ଜୀବନ ପଛେ ନର୍କେ ପଡିଥାଉ ଜଗତ ଉଦ୍ଧାର ହେଉ ।'' (ଭୋଇ ଭୀମ - ସ୍ତୁତି ଚିନ୍ତାମଣି । ପୃ-୫୩ ) । ସେହିପରି କବି ପାଟଶାଣୀଙ୍କ

କବିତାରେ ଲକ୍ଷ୍ୟ କରାଯାଏ ।

''ଆଜି ମୋର ଦୁଇଡୋଳା/

ଦାନ କଲି ପ୍ରଭୁ /

ବନ୍ଦ ହେଉ ପୃଥିବୀରୁ ଶୋଷଣ ଯାତନା /

ସମସ୍ତଙ୍କୁ ଆନନ୍ଦରେ ରଖ /

ଏତିକି ମୋ କାମନା /,'' (ପାଟଣାଣୀ ପ୍ରସନ୍ନ - କିଛି ଲୁହ କିଛି ଲହୁ । ପୃ-୫୬ ) । କବି ତାଙ୍କର ଆଧିଭୌତିକ ଚେତନା ସମ୍ବଳିତ କବିତା ଭିତରେ ବେଶୀ ବେଶୀ ଜୀବନ ମନସ୍କ ହୋଇଥିବା ଲକ୍ଷ୍ୟ କରାଯାଏ । ହିମାଳୟର ସୂର୍ଯ୍ୟାସ୍ତଠାରୁ ଧର୍ଷିତା ଛବିରାଣୀ ପର୍ଯ୍ୟନ୍ତ ଏକ ବିରାଟ କାବ୍ୟିକ ଜଗତରେ କବିଙ୍କର ବ୍ୟକ୍ତିଗତ ଜୀବନ ମାନବବାଦ ଓ ବୈପ୍ଳବିକ ଚିନ୍ତାଧାରାର ଏକ ସାର୍ଥକ ଚିତ୍ରଣ ଦେଖିବାକୁ ମିଳେ, କବିଙ୍କର 'ଅମରନାଥ', ' The Horizon of my Himalayan dawn ' ଆଦି କବିତା ଗ୍ରନ୍ଥର ଆଧି ଭୌତିକ ଚେତନାରେ ମାନବବାଦୀ ସ୍ୱରଟିକୁ ଅନୁଭବ କରାଯାଇପାରେ । 'ବର୍ଷା' କବିତା ସଙ୍କଳନରେ ପ୍ରକୃତି ବର୍ଣ୍ଣନା ସହିତ ମାବବାଦର ଯେଉଁ ନିଗୂଢ ସମ୍ପର୍କ ସ୍ଥାପନ କରିଛନ୍ତି କବି, ତାହା ସାମ୍ପ୍ରତିକ କବିତାରେ ଏକ ବିସ୍ମୟ । ଏକ ସୁପ୍ତ ମଣିଷକୁ ଜାଗ୍ରତ କରି ତା'ର ପ୍ରାପ୍ୟରୁ ସେ ଯେପରି ବଞ୍ଚିତ ନହେବ । ସମସ୍ତଙ୍କ ପରି ତା'ର ବଞ୍ଚିବାର ଅଧିକାର ରହିବ । ଯେଉଁ ମାନେ କୋଟି କୋଟି ନିରନ୍ନ ଜନତାର ବଞ୍ଚିବାର ଅଧିକାର ଛଡେଇ ନେଇଛନ୍ତି, ସେମାନଙ୍କ ବିରୁଦ୍ଧରେ ଶାବ୍ଦିକ ସଂଘର୍ଷ ହେଲା ମାନବବାଦୀ କବିର ଦୃଷ୍ଟିକୋଣ । କବିଙ୍କର ''ନିଆଁର ବିନ୍ଦୁ ଓ ରକ୍ତବୃତ୍ତର ପରିଧି'' ଗ୍ରନ୍ଥର ମୁଖ ବନ୍ଧରୁ ଏକ ଦୃଷ୍ଟାନ୍ତ ନିଆଯାଇପାରେ ।'' ''ଲୁହା ପାଇଁ ଉହାର ଯେପରି ପ୍ରୟୋଜନ, ମାନସିକ ସ୍ଥାଣୁତ୍ୱ, କ୍ଳୀବତ୍ୱ ତଥା ଅବକ୍ଷୟ ପାଇଁ ସଂଗ୍ରାମଶୀଳ ସାହିତ୍ୟ ସେତିକି ପ୍ରୟୋଜନ ।'' ( ପାଟଣାଣୀ ପ୍ରସନ୍ନ - ନିଆଁର ବିନ୍ଦୁ ଓ ରକ୍ତ ବୃତ୍ତର ପରିଧି । ମୁଖବନ୍ଧ - ପୃ-୨୩ ) । ଦଳିତ ମଣିଷର ମନଭିତରୁ ଭାବାବେଗର ଚିତ୍ରକୁ ଜୀବନ୍ତଭାବେ ବର୍ଣ୍ଣନା କରିଛନ୍ତି କବି । ମଣିଷ ଜୀବନର ଦୁଃଖ, ଯନ୍ତ୍ରଣା, ହତାଶା ଓ କ୍ଷୁଧାହିଁ ତାଙ୍କ କବିତାର ମୁଖ୍ୟ ସ୍ୱର । କବି ତାଙ୍କ 'କବିତା ଏକ ଦର୍ପଣ'ରେ କହିଛନ୍ତି -

''ସ୍ତବ୍ଧ ମୌନ କବିତାରେ ମୋର

ତୁ ଦେଖି ଚାଲିଛୁ ଅନନ୍ତକାଳ

ଏକ ନିର୍ବିକାର ଅଇନା ଭଳି

ଅନାଗତ କ୍ଷୁଧିତ ମଣିଷର ମୁହଁ । '' ( ପାଟଣାଣୀ ପ୍ରସନ୍ନ - ବାଘ ଆଁ ଭିତରେ ପିକ୍‌ନିକ୍ । ପୃ-୨୩ ) । ସ୍ୱାଧୀନତା ପରବର୍ତ୍ତୀ ସମୟରେ ଏହି ଜାତୀୟବାଦ ବା ଜାତୀୟଚେତନାରେ ଉଦ୍‌ବୁଦ୍ଧ ହୋଇଥିବା କବିମାନେ ମଧ୍ୟ ଇତିହାସର ଗୌରବମୟ ଅତୀତ ଦ୍ୱାରା ଉଦ୍‌ବୋଧିତ ହୋଇ ଲେଖନୀ ଚାଳନା କରିଥିଲେ । ଜାତୀୟ ଚେତନାର ସଜ୍ଞା ଓ ସ୍ୱରୂପ ଦେବାକୁ ଯାଇ ଜାତୀୟ ଚେତନାକୁ ଆଧୁନିକ ଯୁଗର ଏକ ଆବେଗପୂର୍ଣ୍ଣ ବିସ୍ଫୋରଣ ବୋଲି କୁହାଯାଇଛି । ଯେପରି -

" Nationalism is a modern fusion and exaggeration of two phenomena." (Hayas. S. H. - 'Nationalism' and 'Patritoism' - p- 5/20.)

ଜାତୀୟତାବାଦର ଆଉ ଏକ ବିଶିଷ୍ଟ ଅଙ୍ଗ ହେଲା ମାନବ ବାଦ । ଏହି ବାଦର ଗୋଟିଏ ପାଦ ବ୍ୟକ୍ତି ଓ ଅନ୍ୟଟି ହେଲା ଗୋଷ୍ଠୀ । ଅନୁରୂପ ଭାବେ ଐତିହାସିକ ପୃଷ୍ଠ ଭୂମିରେ ଆଧାରିତ 'ଖୋର୍ଦ୍ଧାର କବିତା ମୁଁ ପଢେ' ଦୀର୍ଘ କବିତାରେ କିମ୍ବଦନ୍ତୀ ଓ ଲୋକ କାହାଣୀକୁ ନେଇ ସ୍ମୃତି ବିଜଡିତ ଓଡିଶାର ଏକ ଗୌରବମୟ ଇତିହାସହିଁ ଅଙ୍କିତ ହୋଇଛି । ଯଦିଓ ଏବେ ପେଟର ଦାଉରେ ବୀର ପାଇକର ଅଣ୍ଟା ନଇଁ ପଡୁଛି, ଯଦିଓ ସେଠାରେ ଯୌତୁକ ଯାତନାରେ ଅନୂଢା କିଶୋରୀ ଝଡି ପଡୁଛି ଅକାଳରେ । ଶିଶୁର ଦ'ରୋଟି ହସ ଚିରଦିନ ପାଇଁ ଲିଭି ଯାଇଛି । ଶାସକମାନଙ୍କ ଶୋଷଣରେ ଶୋଷିତ ହେଉଛି ଜାତିର ଅହଙ୍କାର, ତଥାପି ବିଦ୍ରୋହୀ ଆତ୍ମା ସ୍ୱତସ୍ଫୂର୍ତ୍ତ ଭାବେ ବିଳପି ଉଠୁଛି । ଯେପରି -

''ଏଇ ମାଟି ଥରୁଟେ ମାତିଲେ

ସିଂହାସନ ଚୂର୍ଣ୍ଣ ହେବ

ଚୂର୍ଣ୍ଣ ହେବ ଶାସକର ଗର୍ବ

ଏଇ ମାଟି ଠାକୁର ସବୁ ସହେ

ସହେ ନାହିଁ ମଣିଷର ଅହଙ୍କାର

ପୁଣିରେ ଖୋର୍ଦ୍ଧା ବୀର

ଉଠା ଉଠା ତୋ ଶାଣିତ ତଲୱାର ।'' (ପାଟଣାଣୀ ପ୍ରସନ୍ନ - ଖୋର୍ଦ୍ଧାର କବିତା ମୁଁ ପଢେ । ପୃ-୬୧ ) । ''ଖୋର୍ଦ୍ଧାର କବିତା ମୁଁ ପଢେ'' ମୁଖବନ୍ଧରେ ଡଃ ଫନୀ ମହାନ୍ତି କହିଛନ୍ତି - ''ତାଙ୍କ କାବ୍ୟିକ ଜୀବନ, କାବ୍ୟାଦର୍ଶ ଓ ଜୀବନାଦର୍ଶର ଏକ ମୃଣ୍ମୟ ସମନ୍ୱୟ କହିଲେ ଅତ୍ୟୁକ୍ତି ହେବ ନାହିଁ ।'' (ମହାନ୍ତି ଡଃ ଫନୀ - ମୁଖବନ୍ଧ ,ଖୋର୍ଦ୍ଧାର କବିତା ମୁଁ ପଢେ ।)ପୃ-୪ ) ।

କବିଙ୍କର ରୋମାଣ୍ଟିକ୍ କବିତାରେ ବଦଳୁଥିବା ଋତୁର ରଙ୍ଗ, ଅମାବାସ୍ୟା ପିଠିରେ ବସିଥିବା ଜହ୍ନ, ପ୍ରଜାପତି, ଚଢେଇର କୂଜନ, ମେଘଳ ଆକାଶ, ଛଳନାହୀନ ପ୍ରେମ, କ୍ଲାନ୍ତିହୀନ ଅନୁଭବ ଭିତରେ ବି ଥାଏ କବିଙ୍କର ଜୀବନ ବାଦିତା ଓ ମାନବବାଦିତା ଦୃଷ୍ଟିକୋଣ । ଯେପରି -

''କଣ୍ଟା ହୋଇ ମୋ ପାଦରେ

ଫୁଟିଯାଉ ତୋ ବେଦନା

ନିଃଶ୍ୱାସ ତୋ ହୋଇଯାଉ

ବଂଶୀର ସ୍ୱର ।'' (ପାଟଣାଣୀ ପ୍ରସନ୍ନ - 'ଦେଖାହେଲେ କହିବି ସେ କଥା' । ପୃ-୧ ) । କବି ତାଙ୍କ ପ୍ରିୟତମା କଣ୍ଠରେ ଗାଇଥିବା କେତେକ କବିତାରେ ମାନବବାଦକୁ ଲକ୍ଷ୍ୟ କରାଯାଇ ପାରେ । ଯେପରି -

''ମୁଁ ଆସିଛିରେ କବି

ନେବା ପାଇଁ ତୁମଠାରୁ ଅଧେ ଅନ୍ଧକାର

ବଦଳରେ ଦେବି ସୁବର୍ଣ୍ଣ କଣ୍ଢେଇ କେତେ

ମିଛ ନୁହେଁ ସତ ସପନର ।'' (ପାଢଶାଣୀ ପ୍ରସନ୍ନ - 'ଦେଖାହେଲେ କହିବି ସେକଥା ।' ପୃ-୪୦ ) । ଗୋଟିଏ ପଟେ ସ୍ୱପ୍ନର ବର୍ଣ୍ଣାଳୀ ଓ ଅନ୍ୟପଟେ ଜୀବନକୁ ବଞ୍ଚିବାର ସଂଗ୍ରାମ । କବିଙ୍କୁ ଅନ୍ୟ କବିମାନଙ୍କ ପରି ଜୀବନର ଅତୃପ୍ତି, ଉଦ୍ଦେଶ୍ୟହୀନତା, ନିଃସଙ୍ଗତା ବୋଧ, ବିଷାଦବୋଧ ଓ ଅଥଳ ଶୂନ୍ୟତା ତାଙ୍କ ଆତ୍ମିକ ସତ୍ତାକୁ ଗ୍ରାସ କରିଛି । ତଥାପି କବିଙ୍କର ସେ ଅମୃତ ସନ୍ଧାନୀ ଦୃଷ୍ଟି ଦେଖେ -

''ନଈ ଭଳି ଛଳଛଳ

ଆକାଶ ଭଳି ନିର୍ମଳ

ଜହ୍ନକୁ ଗେଲ କରାଇ ସାଗର ଜୁଆର

ଲାଜ ତା'ର କୂଳ

ପୂର୍ଣ୍ଣ୍ୟ ଢେଉ ଭଳି ଦିଶେ ଜକ୍‌ଜକ୍ ।''(ପାଢଶାଣୀ ପ୍ରସନ୍ନ - ନୀଳନୂପୁର । ପୃ-୩୨ ) । କଳ୍ପନାରେ କବି ତିଆରି କରିଛନ୍ତି ରୋମାଣ୍ଟିକ୍ ଚେତନାର ଚମତ୍କାର ଚିତ୍ରକଳ୍ପ ।

''ସମୁଦ୍ରର ପଡିଆରେ ଥରେ

ନୀଳ ଆକାଶ ଘାସ ହୋଇ ଉଠେ

ତାରାର ମୁଠାଏ କଉଡି ଧରି

ମରଣ ବି ଖେଳେ ।'' (ପାଢଶାଣୀ ପ୍ରସନ୍ନ - ନୀଳନୂପୁର । ପୃ-୭୨ ) । କବି ଏଠାରେ ନାନ୍ଦନିକ କଳ୍ପନାରେ ବିସ୍ମୃତ, କିନ୍ତୁ ଜୀବନକୁ ସେ ଅସ୍ୱୀକାର କରି ପାରିନାହାନ୍ତି । ପାଢଶାଣୀଙ୍କ କବିତାରେ ଦେହବାଦ ସମସ୍ତ ଭୌତିକତାକୁ ଉଲ୍ଲଙ୍ଘନ କରି ଏକ ନିଃସର୍ଗ କାବ୍ୟାନୁଭୂତି ଉପଲବ୍ଧ ହୁଏ । କବିଙ୍କର ବହୁ ଚର୍ଚ୍ଚିତ ରୋମାଣ୍ଟିକ୍ କବିତା ସଙ୍କଳନ 'ଦେଖା ହେଲେ କହିବି ସେକଥା'ରୁ ଏକ ଉଦାହରଣ ନେଇ ଏହି ବକ୍ତବ୍ୟକୁ ଆହୁରି ସ୍ପଷ୍ଟ କରାଯାଇପାରେ । ଯେପରି -

''କ୍ରୁଶବିଦ୍ଧ ହୋଇଥିଲେ ଯୀଶୁ

ମାତ୍ର ଦିନୁଟିଏ ପାଇଁ

ମୁଁ ଆଜି ଯୀଶୁ ପାଲଟିଛି ତୋ ଦେହକାଠରେ

କ୍ରୁଶ ବିଦ୍ଧ ହେବାପାଇଁ ।'' (ପାଢଶାଣୀ ପ୍ରସନ୍ନ - 'ଦେଖାହେଲେ କହିବି ସେ କଥା ।' ପୃ-୮୦ ) । ପ୍ରତି ଦେହ ଭିତରେ ବିଦେହ । ପ୍ରତି ମୂର୍ତ୍ତ ଭିତରେ ଅମୂର୍ତ୍ତ । ପ୍ରତି ଜଡ ଭିତରେ ଜୀବନର ସଞ୍ଚରଣ ଦେଖିବାରେ କବି ପ୍ରସନ୍ନ ପାଢଶାଣୀଙ୍କ କାବ୍ୟ ଚେତନା ଏକ ସଫଳ ଆସନର ଅଧିକାରୀ । କବି ମାନବବାଦର ସେହି ମହାନ୍ ମନ୍ତ୍ରକୁ ସବୁଠି ଗାନ କରିଛନ୍ତି । କେବେ କେବେ ତାଙ୍କ କବିତାରେ ଏହି ମାନବବାଦର ସ୍ୱର ସିଧାସଳଖ ଭାବେ ପ୍ରତିଫଳିତ ହୋଇଛିତ କେଉଁଠି ଆଧିଭୌତିକ ଚେତନା ମଧ୍ୟରେ ତାହା ଏକ ଶାଶ୍ୱତ ଆତ୍ମା ରୂପେ ପରିକଳ୍ପିତ । କେବେ କେବେ ଜୀବନର ମୋହମୟ ଅନୁଭୂତି ଓ ଅଭିଜ୍ଞତାରେ ତାହା ସାନ୍ଦ୍ର ଓ ନିବିଡ । ମାତ୍ର ସବୁଠାରେ ଏକ ସର୍ଜନଶୀଳତା ଓ ବାକ୍‌ଚାତୁର୍ଯ୍ୟର

ଔଜ୍ଜଲ୍ୟ ଓ ସ୍ୱାଚ୍ଛନ୍ଦ୍ୟ ହିଁ ଲକ୍ଷ୍ୟକରାଯାଏ । ଜଣେ ସାର୍ଥକ କାବ୍ୟଶିଳ୍ପୀ ଭାବେ ସେ ଏକ ନିର୍ଦ୍ଦିଷ୍ଟ ରୀତିରେ ମାନବବାଦକୁ ଉପସ୍ଥାପିତ କରିଛନ୍ତି ଓ ତାହା ସଙ୍ଗେ ସଙ୍ଗେ ଜୀବନ ଓ ପ୍ରକୃତିର ନିବିଡତା ମଧ୍ୟ ଅନୁଭବ କରିଛନ୍ତି । ସତ୍ୟ ଶିବ ସୁନ୍ଦରର ନିରାଜନା କରିଛନ୍ତି କବି ।

ଓଡିଆ କାବ୍ୟଧାରାରେ ବ୍ୟଙ୍ଗ କବିତା ନୂଆ ନୁହେଁ ବା ରାଜନୀତିକ ବ୍ୟଙ୍ଗ ନୂଆ କଥା ନୁହେଁ । ମାତ୍ର ବିଧାନସଭା ଗୃହରେ ବ୍ୟଙ୍ଗାତ୍ମକ କବିତା ପଢି ଶାସକ ଦୃଷ୍ଟିକୁ ଜନସାଧାରଣଙ୍କ ହିତ ପାଇଁ ଆକର୍ଷିତ କରିବା, ଶାସକର ଛନ୍ଦ୍ମତାକୁ ଦର୍ଶାଇବା ଏକ ଅଭିନବ ପ୍ରକ୍ରିୟା । ଏହାର ରଚନା ତାତ୍କାଳିକ । ଫଳରେ ବ୍ୟଙ୍ଗର ତୀକ୍ଷ୍ଣତା ଥିବା ସତ୍ତ୍ୱେ କାବ୍ୟଧର୍ମର ସିଦ୍ଧି ଅନେକତ୍ର ଲକ୍ଷ୍ୟ କରାଯାଇ ନଥାଏ । ତେବେ ଏହି ଧରଣର କବିତା ରଚନା କରିବା କ୍ଷେତ୍ରରେ ପାଢଶାଣୀ ଏକ ଅଭିନବ ମାର୍ଗର ଉନ୍ମୋଚକ । ସେ ନିଜେ କବି ଓ ବିଧାୟକ ହୋଇଥିବା ହେତୁ ଏହା ତାଙ୍କ ପାଇଁ ସମ୍ଭବପର ହୋଇପାରିଛି । ଏହାରି ଭିତରେ ତାଙ୍କର ସାମ୍ୟବାଦୀ ଚେତନା ଓ ମାନବବାଦୀ ଦୃଷ୍ଟିଭଙ୍ଗୀର ଏକ ବିବର୍ତ୍ତିତ ରୂପକୁ ଅସ୍ୱୀକାର କରାଯାଇ ନପାରେ ।

ବିଧାନସଭା କବିତା ଗୁଡିକର ବକ୍ତବ୍ୟ ଭିତରେ ଲେନିନ୍ ଆଦିର ଉଗ୍ରତା ତିରୋହିତ । ରୋମାଣ୍ଟିକ୍ ଭାବାଳୁତା ବାସ୍ତବାୟିତ ଓ କବି ବ୍ୟକ୍ତିଗତ ଆବେଗକୁ ବାଦ୍ ଦେଇ ସାମାଜିକ ଆବେଗର ରୂପାୟନରେ ଏକନିଷ୍ଠ ।

କବିର ବ୍ୟକ୍ତିଚେତନା ସାମାଜିକ, ରାଜନୈତିକ ଓ ସାଂସ୍କୃତିକ ପରିବେଶ ଦ୍ୱାରା ନିୟନ୍ତ୍ରିତ ହୁଏ । ଏତିକି ବେଳେ କବି ନିଜକୁ ଜଣେ Satairist ଭୂମିକାରେ ଅବତୀର୍ଣ୍ଣ କରେ । ତା' ଭିତରର ଚିନ୍ତା ସେହି କବିତା ମାଧ୍ୟମରେ ଉଦ୍ଗିରିତ ହୁଏ । କବିତା ହୁଏ ସ୍ୱତନ୍ତ୍ର । poetry lies in pity ସେହିଠାରୁ ଏକ ନୂଆ ପ୍ରକାଶ ଧାରା ମାଧ୍ୟମରେ ସମାଜ ତଥା ସାମାଜିକ ମୂଲ୍ୟବୋଧର ପରିବର୍ତ୍ତନର କଥା କବି ଚିନ୍ତାକରେ । ଏ କ୍ଷେତ୍ରରେ କବି କବିତାକୁ ଏକ ପବିତ୍ର ଅସ୍ତ୍ରଭାବେ ପ୍ରୟୋଗ କରେ । ଯାହାର ଉପଯୁକ୍ତ ବ୍ୟବହାର ଫଳରେ ପୃଥିବୀର ପଙ୍କୁତାକୁ କିୟଦଂଶରେ ଦୂର କରାଯାଇପାରେ । ଏପରି କବିତା ଭିତରେ ବସ୍ତୁ ସ୍ଥିତିର ଛନ୍ଦ୍ମତା, ବ୍ୟକ୍ତିର ଛଦ୍ମତା ଆଦିର ସୂଚନା ଓ ନୂଆ ଭାବେ ବଞ୍ଚିବାର କମନ ଥାଏ ।

ଇଂରାଜୀ କବିତା କ୍ଷେତ୍ରରେ ପୋପ୍ ଓ ଡ୍ରାଇଡେନ୍ ବ୍ୟଙ୍ଗ କବିତାର ଯେଉଁ ଶାଣିତ ଓ ସାହିତ୍ୟିକ ଶୈଳୀଟି ପ୍ରବର୍ତ୍ତନ କରିଥିଲେ, ତାହାର ପ୍ରଭାବରେ ପ୍ରଭାବିତ ହୋଇ ବୋଧହୁଏ କବିବର ରାଧାନାଥ ରାୟ ରଚନା କରିଥିଲେ ତାଙ୍କର ମହାନ୍ ବ୍ୟଙ୍ଗକାବ୍ୟ ଦରବାର । ମନେହୁଏ ଆଧୁନିକ ଓଡିଆ କବିତା କ୍ଷେତ୍ରରେ ବ୍ୟଙ୍ଗ କବିତା ରଚନାର ପରମ୍ପରା ଅନୁସୃତ ହେଲା ଏହି ସମୟଠାରୁ । ଯାହା ଫକୀର ମୋହନ ସେନାପତିଙ୍କର 'ମୁଁ ହାଟବୋହୁଡା' ଓ 'ଉତ୍କଳ ଭାବନା' ଇତ୍ୟାଦି ମାଧ୍ୟମରେ ପରିପୁଷ୍ଟ ହୋଇ ତାହା ଏକ ନୂତନ ଓ ମାର୍ଜିତ ରୂପ ପରିଗ୍ରହଣ କଲା । ସତ୍ୟବାଦୀ ଯୁଗର କବିମାନଙ୍କର ଜାତୀୟତା ବାଦ ତଥା ମାନବବାଦ ଏଇ ଦୁଇଟିକୁ ଭିତ୍ତି କରି ରଚନା କରିଥିବା କାବ୍ୟମାନସରେ କିଛି ବ୍ୟଙ୍ଗ କବିତାର ଧାରା ପରିଲକ୍ଷିତ ହେଲା । ଯାହା ସେହି ସମୟର ବୈତାଳିକ କବି ଗୋଦାବରୀଶ ମହାପାତ୍ରଙ୍କର ଲେଖନୀରେ ଅତି ମାତ୍ରାରେ ସଫଳ ଓ ଜୀବନ୍ତଭାବେ ପ୍ରକଟିତ ହୋଇଥିବାର ଲକ୍ଷ୍ୟ କରାଯାଏ । ଗୋଦାବରୀଶ ମହାପାତ୍ରଙ୍କ 'ନିଆଁଖୁଣ୍ଟା' ବ୍ୟଙ୍ଗ ପତ୍ରିକା ପ୍ରକାଶିତ ହେଲା ପରେ, ଏହି

କବିତା କ୍ରମଶଃ ଏକ ବୌଦ୍ଧିକତାର ଅବଗାହନକୁ ବାଦ୍ ଦେଇ ସିଧାସଳଖ ପାଠକର ମନୋରଞ୍ଜନ କରିବା ପାଇଁ ଅଭିପ୍ରେତ ହୋଇଥିବାର ଜଣାଯାଏ । ଗୋଦାବରୀଶଙ୍କ ପରବର୍ତ୍ତୀ ସମୟର ପ୍ରମୁଖ କବିଗଣ ବ୍ୟଙ୍ଗ କବିତା ରଚନାର ମାର୍ଗଟିକୁ ଅଉ ଟିକେ ପ୍ରସାରିତ କରି ଏକ ବୌଦ୍ଧିକ ବ୍ୟଙ୍ଗ କବିତା ରଚନାର ଶୈଳୀକୁ ଅନୁସରଣ କଲେ । ଷାଠିଏ ଦଶକର ପ୍ରଥମାର୍ଦ୍ଧଠାରୁ ନବେ ଦଶକ ପର୍ଯ୍ୟନ୍ତ ଆଧୁନିକ ଓଡ଼ିଆ କବିମାନେ ବ୍ୟଙ୍ଗ କବିତା ରଚନା କ୍ଷେତ୍ରରେ ନିଜର ବୈକଲ୍ୟ ମନୋଭାବ ପ୍ରକାଶ କରିଛନ୍ତି । ପାଶ୍ଚାତ୍ୟ ସାହିତ୍ୟରେ ମଧ୍ୟ ଡ୍ରାଇଡେନ୍‌ଙ୍କ ପରବର୍ତ୍ତୀ କବିମାନେ ତାଙ୍କ ଭଳି ବ୍ୟଙ୍ଗ କବିତା ରଚନା କରିବାରେ ଶ୍ରଦ୍ଧା ପ୍ରଦର୍ଶନ କରିଥିବା ଦେଖାଯାଏ ନାହିଁ । ଅନ୍ୟପକ୍ଷରେ ଟି.ଏସ୍. ଏଲିୟଟଙ୍କର କିଛି କବିତାରେ ଆଧୁନିକ ସମାଜ ପ୍ରତି ଥିବା ବ୍ୟଙ୍ଗ ପରିପ୍ରକାଶ ଘଟିଛି । ସଚ୍ଚିଦାନନ୍ଦ ରାଉତରାୟ ତାଙ୍କର 'ପଲ୍ଲୀଶ୍ରୀ' କବିତା ସଙ୍କଳନରେ 'ରେଙ୍ଗୁନ୍ ଯାତ୍ରୀ' ଓ 'ପ୍ରଧାନ ଘର ଷଣ୍ଢ' ଇତ୍ୟାଦି କବିତାରେ ଯେଉଁ ସାମାଜିକ ବ୍ୟଙ୍ଗ କଥା ଉଲ୍ଲେଖ କରିଥିଲେ, ତାହା ତାଙ୍କର 'ଭାନୁମତୀର ଦେଶ', 'କବିତା ୧୯୬୨' ବେଳକୁ ପରିବର୍ତ୍ତିତ ହୋଇଛି । ଯଦିଓ ଓଡ଼ିଆ ଗଦ୍ୟ ରଚନାରେ ଏହି ଧାରା ନବେ ଦଶକ ପର୍ଯ୍ୟନ୍ତ ଜୀବିତ ହୋଇ ରହି ଆସିଛି, ତଥାପି କବିତା ଦୃଷ୍ଟିରୁ ଆସ୍ତେ ଆସ୍ତେ ଏହି ଧାରା କମି ଆସୁଥିବା ଲକ୍ଷ୍ୟ କରାଯାଉଛି । ରବି ସିଂ, ବ୍ରଜନାଥ ରଥ, ପ୍ରସନ୍ନ ପାଟଶାଣୀ ଏହି ବ୍ୟଙ୍ଗ କବିତାର ଧାରାକୁ କିଛି ମାତ୍ରାରେ ସୁରକ୍ଷିତ ରଖିପାରିଛନ୍ତି । କିନ୍ତୁ ସଂଖ୍ୟା ଦୃଷ୍ଟିରୁ ତାହା ଅତ୍ୟନ୍ତ ନଗଣ୍ୟ ।

ଏହି ପରିପ୍ରେକ୍ଷୀରେ କବି ପ୍ରସନ୍ନ ପାଟଶାଣୀଙ୍କ ବ୍ୟଙ୍ଗ କବିତା ବିଚାର୍ଯ୍ୟ । ପ୍ରସନ୍ନ ପାଟଶାଣୀଙ୍କ କବିତ୍ୱର ଆଧାର ସବୁ ସମୟରେ ଏକ ନୁହେଁ ବା ଏହା ଏକ ନିର୍ଦ୍ଦିଷ୍ଟ ବିଷୟ ବସ୍ତୁ ବା ଏକ ନିର୍ଦ୍ଦିଷ୍ଟ ଯୁଗ ଚେତନାକୁ କେନ୍ଦ୍ର କରି ରଚିତ ହୋଇ ନାହିଁ । ତାଙ୍କର କାବ୍ୟଚେତନା ପ୍ରତି ବେଳେ ପୃଥକ ବା ବିଚିତ୍ରବର୍ଣ୍ଣା । ତାଙ୍କର ବିଧାନ ସଭା କବିତା ଗୁଡ଼ିକର ରଚନାକାଳ ୧୯୮୫ ରୁ ୧୯୯୦ । ଏହି ପାଞ୍ଚବର୍ଷ ମଧ୍ୟରେ ଅନୁଷ୍ଠିତ ବିଧାନ ସଭା ଅଧିବେଶନ ଗୁଡ଼ିକରେ କବିଙ୍କର କବିତା ଗୁଡ଼ିକ ରଚିତ । ୧୯୮୫ ମସିହାରୁ ଜଣେ ବିରୋଧୀଦଳର ବିଧାୟକ ଭାବେ ତାଙ୍କର ସମାଜ ଦୃଷ୍ଟି ଅଧିକତର ତୀବ୍ର ଓ ଉଗ୍ର ହୋଇଛି । ଏହି ସମୟରେ ସେ ବିଧାନ ସଭାରେ ସରକାରୀ ଦଳର ମନ୍ତ୍ରୀ ଓ ବିଧାୟକମାନଙ୍କୁ ବ୍ୟଙ୍ଗ କରିବା ସହ ଜନ ସାଧାରଣଙ୍କ ଦୁଃଖକୁ ଉପସ୍ଥାପିତ କରିବା ପାଇଁ ଚେଷ୍ଟିତ ଥିଲେ । ସାମାଜିକ, ରାଜନୈତିକ ସ୍ଥିତି ଏହି କବିତା ଗୁଡ଼ିକୁ ଲେଖାଇଛି । ଏଥିରେ ମଧ୍ୟ କବିଙ୍କ ସହାନୁଭୂତିଶୀଳ କବି ପ୍ରାଣର ଚିତ୍ର ପରିଲକ୍ଷିତ । ଏଥିରେ ମଧ୍ୟ କବିଙ୍କ ସହାନୁଭୂତିଶୀଳ କବି ପ୍ରାଣର ଚିତ୍ର ପରିଲକ୍ଷିତ ହୁଏ । ମାନବବାଦୀ କବିର ଉଚ୍ଚାରଣ ଏଥିରେ ସଂକ୍ଷିପ୍ତ ଅଥଚ ବ୍ୟଙ୍ଗ-ତୀକ୍ଷ୍ଣ । କବି ତାଙ୍କର ମାନବବାଦୀ ଚିନ୍ତାଧାରାକୁ ବିଧାନ ସଭା କବିତାରେ ବାସ୍ତବାୟିତ କରିଥିବା ଲକ୍ଷ୍ୟ କରାଯାଏ । ବିଧାନସଭା କବିତା ଗୁଡ଼ିକ Assembly Reporter ମଧ୍ୟରେ ଲିପିବଦ୍ଧ ହୋଇ ରହିଛି । ଏଗୁଡ଼ିକ ସଙ୍କଳନ ଆକାରରେ ପ୍ରକାଶିତ ହୋଇନାହିଁ । ଏହି ସମୟରେ କବି ପ୍ରାୟ ଏକ ଶହରୁ ଊର୍ଦ୍ଧ୍ୱ କବିତା ସ୍ୱତଃସ୍ଫୂର୍ତ୍ତ ଭାବେ ବିଧାନସଭାରେ ପାଠ କରିଥିଲେ । ସେଥିମଧ୍ୟରୁ ତାଙ୍କର ଅଧିକାଂଶ କବିତାରେ ମାନବିକ ଆବେଦନ ଓ କବିତ୍ୱ ସ୍ପଷ୍ଟଭାବେ ପରିଲକ୍ଷିତ ହୁଏ । ଏହି କବିତା ଗୁଡ଼ିକରେ ରହିଛି - ଦରିଦ୍ର କୃଷକର ଚିତ୍ର, ଧର୍ଷିତା ନାରୀ, ସ୍ୱାଧୀନତା ନାମରେ ଶୋଷଣ ଓ ଲୁଣ୍ଠନ, କଳାହାଣ୍ଡିର ନିରନ୍ନ କଙ୍କାଳସାର ଜନତା, ଶୃଙ୍ଖଳାହୀନ ସମାଜ, ମରୁଡ଼ି, ବାଲିଆ ପାଳର ଦୁର୍ଦ୍ଦଶା, ପରିବେଶ ପ୍ରତି ସଚେତନତା, ଦୁଃଖରେ ଜୀବନ ବିତାଉଥିବା ଓଡ଼ିଶାର ଅସଂଖ୍ୟ ଜନତା, ସମୟର ସୁଅରେ ବେଳକୁ ବେଳ ନଷ୍ଟ ହେଉଥିବା

ଓଡିଶାର ଐତିହ୍ୟ ଓ ପରମ୍ପରା, ସିଂହାସନ ଓ ଗଣତନ୍ତ୍ର, ଖଟିଖିଆ ଶ୍ରମିକର ଚିତ୍ର, ଅତି ସଫଳ ଭାବରେ ଏ ସବୁଥିରେ ପ୍ରତିଫଳିତ ହୋଇଛି । ଏହି ସବୁ କବିତା ଗୁଡିକ ଲୋକ ପ୍ରିୟ; କାରଣ, ଏହାର ଭାଷା ଅତି ସରଳ ଓ ନିରାଡମ୍ବର, ସାଧାରଣ ମଣିଷର ସୁଖ ଦୁଃଖ ଓ ଅଙ୍ଗେ ଲିଭା ଘଟଣା ଓ ତା' ପ୍ରତି ରାଜତନ୍ତ୍ରର ଉଦାସୀନତା ସମ୍ପର୍କରେ ସଚେତନତା ସୃଷ୍ଟି କରିବା ବିଧାନସଭା କବିତାର ଥିଲା ମୁଖ୍ୟ ଉଦ୍ଦେଶ୍ୟ ।

ବେଳେ ବେଳେ କବି କେବଳ ଓଡିଶା ମଧ୍ୟରେ ସୀମାବଦ୍ଧ ନ ରହି ଏକ ବୃହତ୍ ଭାରତବର୍ଷର ଅଖଣ୍ଡତା ସମ୍ପର୍କରେ ମଧ୍ୟ ଏହି ଆଶୁ କବିତାରେ କହିଛନ୍ତି । ଯେପରି -

''କୃଷିର ଦେଶ ମୋ ଭାରତବର୍ଷ

ଭାତରୁ ଭାରତ ଅର୍ଣ୍ଣମୟ କୋଷ

ଏବେ ଭ୍ରଷ୍ଟାଚାର ଦୁର୍ନୀତିରେ ଭରା

ସ୍ୱାଧୀନତା ନାମେ ଯେତେକ ଯାତନା

ଶୋଷଣ କାରା,

ଶୋଷଣ ନାମରେ ଶାସନ ଚାଲିଛି

ଜମିରେ ତ ଆଉ ଫସଲ ଫଳୁନି

ନୀରବେ ମରୁଛି କୃଷକ ସର୍ବହରା ।'' (Assembly Reporter - vol - II, No.16, 24th July 1985.)

ଭାରତର ଲୋକମାନେ କୃଷି ଉପରେ ନିର୍ଭର କରି ବଞ୍ଚନ୍ତି । କୃଷିର ଉନ୍ନତି, କୃଷକର ଉନ୍ନତି ଦୂରେ ଥାଉ ବରଂ ଦେଶର ଶାସକ ଗୋଷ୍ଠୀ ଏ' ଦେଶର ନିରନ୍ନ ସର୍ବହରା କୃଷକକୁ ଶୋଷଣ କରୁଛି । ସ୍ୱାଧୀନତା ନାମରେ ଦୁର୍ନୀତି, ଭ୍ରଷ୍ଟାଚାର ସମଗ୍ର ଦେଶରେ ବ୍ୟାପିଗଲାଣି । ସର୍ବହରା କୃଷକ ପାଇଁ, ଦେଶରେ ସୁସ୍ଥ ରାଜନୀତି ପାଇଁ କବି ପ୍ରାଣର ବିଦ୍ରୋହ ଏ' କବିତାରେ ପରିଲକ୍ଷିତ ହୁଏ ।

''ଆକାଶ କୁଲାରେ ଉଗ୍ର

ଅପାଛୁତା ଖରା

ଜୀବନ ପାଲଟେ ତୋର

କାଚର ଟୁକୁରା ।'' ( Assembly Reporter - vol - IV, No-4, 9th sept. 1986. (4th session) ଏଥିରେ ସାଧାରଣ ଜନତାର ଅସହାୟତା, ଦୁସ୍ଥ ଜୀବନର ଚିତ୍ରକୁ ଚମତ୍କାର ଚିତ୍ରକଳ୍ପ ମାଧ୍ୟମରେ କବି ପ୍ରକାଶ କରିଛନ୍ତି,

''ହୀନ ରାଜନୀତି ଶ୍ରମିକ ଛଟେଇ

ଶ୍ରମିକ ଦାନାରେ ଧୂଳି ଦେଇ ଦେଇ

ବଡାଉନ ତା'ର ମୂଲ

କେତେ ଦିନ ଆଉ ଭୋଟ ନାଆଁରେ

କରୁଥିବ କଲବଲ ।'' (Assembly Reporter - vol-x, No.1, 5th Sept., 1989. )

ପ୍ରଚଳିତ ଶାସନ କ୍ଷେତ୍ରରେ ରାଜନୀତିର ଯେଉଁ ଅବକ୍ଷୟ ଘଟିଛି, ମୁଖ୍ୟତଃ ଏଥିପାଇଁ ରାଜନୈତିକ ନେତାମାନଙ୍କୁ ଦାୟୀ କରାଯାଇଛି । ଶାସକମାନେ ନିଜର ଭୋଗ ବିଳାସ ପାଇଁ ଜନତାର ଏକ ବୃହତର ସ୍ୱାର୍ଥକୁ ବଳି ପକାନ୍ତି । ସମୂହ ସ୍ୱାର୍ଥଠାରୁ ବ୍ୟକ୍ତିଗତ ସ୍ୱାର୍ଥ ରାଜନୈତିକ ଶାସକଗୋଷ୍ଠୀ ମାନଙ୍କ ପାଇଁ ମୁଖ୍ୟ ହୋଇପଡିଛି । ଏହାର ଅଧିକାଂଶ ଉଦାହରଣ ବିଧାନସଭା କବିତାରେ ଲକ୍ଷ୍ୟ କରାଯାଏ । ଏଥିରେ ଶାସକ ଗୋଷ୍ଠୀକୁ ତୀବ୍ର ଭାବରେ ନିନ୍ଦା କରାଯାଇଛି । ଅନ୍ୟ ଏକ କବିତା ପଂକ୍ତିରେ ଲେଖାଯାଇଛି -

''ତମ ଧରଣୀର ମଣିଷ ଘଟରେ

ପଶୁର ଆତ୍ମା ପଶିଛି ଧୀରେ

ତମ ଆଚରଣ ପଶୁ ନଖପରି

ମଥାର ଶଙ୍ଗ ଦିଶୁନି ଦୂରେ ।'' (Assembly Reporter - vol-IX, No. 23, 29th March, 1984.)

ବ୍ୟଙ୍ଗ କବିତା ମାଧ୍ୟମରେ କବି ପାରିପାର୍ଶ୍ୱିକ ସମାଜ ବ୍ୟବସ୍ଥା, ଶାସନ ବ୍ୟବସ୍ଥା, ରାଜନୈତିକ ଅବକ୍ଷୟ ସବୁକୁ ଚିତ୍ରିତ କରିବା ଭିତରେ ବି ମାନବ ଜୀବନ ଦର୍ଶନକୁ ପ୍ରଚ୍ଛନ୍ନଭାବେ ପ୍ରକଟିତ କରିଛନ୍ତି । ଯେଉଁଠାରେ ମଣିଷର ବ୍ୟକ୍ତିସ୍ୱାଧୀନତା ଓ ଗଣତାନ୍ତ୍ରିକ ମୂଲ୍ୟବୋଧର ଅବକ୍ଷୟ ଘଟେ, ତାହାର ସ୍ଫୁରିପ୍ରକାଶ ମଧ୍ୟ ବ୍ୟଙ୍ଗାତ୍ମକ କବିତା ମାଧ୍ୟମରେ ପ୍ରକଟିତ ହୋଇପାରେ । ଯେପରି -

''କେନ୍ଦ୍ର ଯଦି ସାବତ ମାଆ

ଆମେ ସବୁ ତା'ର ପୋଇଲି

+ + + + + + +

କାହା ଡେକିଚିରେ କ୍ଷୀରି ଖେଚେଡି

ଗରିବ ଭାଗ୍ୟରେ ଖାଲି ମରୁଡି ।'' (Assembly Reporter-vol-VII, No.28, 7th April 1988.) ବେଳେ ବେଳେ ବ୍ୟଙ୍ଗକବିର ଦୃଷ୍ଟି ସୁଦୂର ପ୍ରସାରୀ ହୁଏ । କବିତା ଛଳରେ ସେ ଭବିଷ୍ୟତର ଦୃଶ୍ୟପଟ୍ଟ ଗଢେ । ଅନୁରୂପ ଭାବରେ କବି ଡଃ. ପାଢଶାଣୀ ଓଡିଶାର ଭ୍ରଷ୍ଟ ରାଜନୀତି ଶୋଷିତ ମଣିଷ ମାନଙ୍କର ଆତ୍ମଲିପି, ଖଟିଖିଆ ମଣିଷର ଆହ୍ୱାନ ଭିତର ଦେଇ କବିଙ୍କର ମାନବପ୍ରୀତି ଦୃଷ୍ଟିକୋଣଟି ପ୍ରଚ୍ଛନ୍ନ ଭାବରେ ପ୍ରକଟିତ ହୋଇଛି । ଯଥା -

''ଶ୍ରମିକ ଉପରେ ଜୁଲମ ହେବାରେ

ସରକାର ଉଠେ ମାତି

ତାକୁ କ୍ଷମା ଦେବ ନାହିଁ ଜାତି ।'' (Assembly Reporter - vol - VI, No-5, 7th Oct. 1987.) ଏ' ପ୍ରକାରର ଅନେକ କବିତାର କେନ୍ଦ୍ରାନୁଗ ଆକର୍ଷଣରେ ରହିଛି ବିପ୍ଳବ । ଯେଉଁ ବିପ୍ଳବଟ Humanism ଉପରେ ପ୍ରତିଷ୍ଠିତ । ଏହି ପରିପ୍ରେକ୍ଷୀରେ ଅନ୍ୟ କେତେକ ବିଧାନସଭା କବିତାକୁ ଲକ୍ଷ୍ୟ କରାଯାଇପାରେ -

''ଇତିହାସ ରଥ ଚକର ଚାଳକ

ଏ ମଣିଷ ମେହେନତି

ଇତିହାସ ରଥ ପଛକୁ ଚଳେନା

ଆଗକୁ ତାହାର ଗତି ।

ଇତିହାସ ରଥ ଚଳାଉଛି ଭାଇ

ଦେଶର ଶ୍ରମିକ ଜାତି

ଶ୍ରମିକ ଉପରେ ଜୁଲମ ହେବାରେ

ସରକାର ଉଠେମାତି

ତାକୁ କ୍ଷମା ଦେବ ନାହିଁ ଜାତି ।'' (Assembly Reporter - vol-VI, No.5, 7th Oct., 1987. (9th Assembly 6th session) ଯେଉଁ ମେହେନତି ମଣିଷର ହାଡଭଙ୍ଗା ପରିଶ୍ରମରେ ଏ ଦେଶର ପ୍ରଗତି, ଅର୍ଥନୀତି ସୁଦୃଢ ହୁଏ, ସେହିମାନଙ୍କ ଉପରେ ସରକାରଙ୍କ ଜୁଲମ୍ ଅତ୍ୟାଚାରକୁ ଜଣେ ମାନବବାଦୀ କବି ଭାବରେ ପାଟଶାଣୀ ବରଦାସ୍ତ କରିପାରି ନାହାନ୍ତି ।

''ଗଣତନ୍ତ୍ର ନାମେ ଗଣହତ୍ୟାର

କରୁଅଛ ଷଡଯନ୍ତ୍ର

ତମ ଭାବମୂର୍ତ୍ତି ଗାଉଅଛି ସଦା

ଶୋଷଣର ମହାମନ୍ତ୍ର ।'' (Assembly Reporter - vol-II, No-7, llth July, 1985. )

ଦେଶର ଶାସକବର୍ଗ ନିଜର ବ୍ୟକ୍ତିଗତ ସ୍ୱାର୍ଥପାଇଁ ଗଣତନ୍ତ୍ର ନାମରେ ଗଣହତ୍ୟାର ଷଡଯନ୍ତ୍ରକୁ ପଦାରେ ପକେଇ ଦେଇଛନ୍ତି କବି । ଶାନ୍ତ, ସରଳ ମଣିଷମାନଙ୍କ ସହ ପ୍ରବଞ୍ଚନା କରି ସେମାନଙ୍କର ସୁଖଶାନ୍ତିର ଜୀବନ ଭିତରେ କଳହର ବିଷ ମଞ୍ଜି ବୁଣି ଦିଅନ୍ତି ଏହି ତଥା କଥିତ ନେତା ଓ ଟାଉଟର୍‌ଗଣ । ଏମାନଙ୍କର ଏହି ଛଳନାପୂର୍ଣ୍ଣ ମିଥ୍ୟା ଭାବମୂର୍ତ୍ତି ଦିନେ ସମୟ ସୁଅରେ ଖୋଲିଯିବ ବୋଲି କବି ଆଶା ପ୍ରକାଶ କରିଛନ୍ତି । ଯେପରି -

''ସମୟ ସୁଅରେ ତୁମ କାରସାଦି

ଧରା ପଡିଯିବ ଭାଇ ।

ଭାବମୂର୍ତ୍ତି ତୁମ ଟଳି ପଡିଯିବ

ନାରୀ ଓ ମଦର ଛାଇ । ଟାଉଟର ଦଳ ସହରରେ ତୁମେ

କରୁଅଛ ମୁଣ୍ଡମେଳ ।

ଶାନ୍ତ ସରଳ ମଣିଷ ମନରେ

ଲଗାଉଅଛ କନ୍ଦଳ ।

ବଞ୍ଚନା କରି କେତେ କାଳ ତୁମେ

ଗଢିବ ଶାସନ ଗାଦୀ ।'' (Assembly Reporter - vol-II, No.7, llth July, 1985.) ପ୍ରସନ୍ନ ପାଟ୍ଟଶାଣୀଙ୍କର ବିଧାନସଭା କବିତାର ଗୋଟିଏ ପଟେ ଅଛି ସଂଗଠନ, ବିପ୍ଲବ, ଶ୍ଳୋଗାନ, ଲେନିନ୍ ଇସ୍ତାହାର ଆଗ୍ନେୟ ଶପଥ ଓ ଅନ୍ୟପଟେ ଦରଦୀ ମରମୀ ମଣିଷ, ଯାହାର ପ୍ରତି ଉଚ୍ଚାରଣରେ ଅଛି ଆତ୍ମିକ ସ୍ପର୍ଶ । ସମାଜ ଓ ଜୀବନର ଟ୍ରାଜିକ ଉପଲବ୍ଧି ମଧ୍ୟରେ ଏସବୁ କବିତା ରଚିତ । ଏହି କବିତାର eternal beauty ବା ଚିରନ୍ତନ ମୂଲ୍ୟବୋଧ ଯଦିଓ ଗୌଣ, ତଥାପି ଏହାର ଶିଳ୍ପକରଣରେ ଏକ ନୂତନତା ଲକ୍ଷ୍ୟ କରାଯାଏ । ଏହାର କଳାଧର୍ମ ସ୍ୱତନ୍ତ୍ର । ଏହା ଉପସ୍ଥାପନ ପ୍ରବଣ ଅଟେ (Presentative) । ଏହାର ଶୈଳୀ ଓ ସ୍ଥାପତ୍ୟ ବେଶୀ ପରିମାଣରେ Spontaneous ଓ Objective । ଏ' ସବୁଥିରେ ବ୍ୟକ୍ତିତ୍ୱର ପରିପ୍ରକାଶ ଅପେକ୍ଷା ଲୋକମୁଖୀ ଭାଷାରେ ଏକ ନିର୍ଦ୍ଦିଷ୍ଟ ଲକ୍ଷ୍ୟ ସାଧନ ପାଇଁ ଏହା ଅଭିପ୍ରେତ । ଲୋକପ୍ରିୟ ଶୈଳୀରେ ବିଧାନସଭା କବିତା ଆବୃତ୍ତି କରିବାର ସଫଳ ଉଦ୍‌ଗାତା ଭାବରେ କବିଙ୍କ ସ୍ଥାନ ଅନସ୍ୱୀକାର୍ଯ୍ୟ । ଛନ୍ଦ ଓ ଉପଧା ମିଳନ ମାଧ୍ୟମରେ ଗଣମୁଖୀ କବିତା ସୃଷ୍ଟି କରିବାରେ ପ୍ରସନ୍ନ ପାଟ୍ଟଶାଣୀ ଅଶୀଦଶକର କବି ମାନଙ୍କ ମଧ୍ୟରୁ ଅନ୍ୟତମ । ବୈଷ୍ଣବ ପାଣିଙ୍କ ଲୋକବୃତ୍ତ ବା ଛନ୍ଦରେ ଆଧାର କରିଲେଖିଥିବା କବିଙ୍କ ରଚିତ ପଦେ ବିଧାନସଭା କବିତାକୁ ଏଠାରେ ଉଦାହରଣ ସ୍ୱରୂପ ନିଆଯାଇପାରେ -

''କ୍ଷିତି କି ଭାତି ହେଲା ପ୍ରବଳ

ଜାଳକାଠ ସେର ଟଙ୍କାଏ ହୋଇଲା

ତମ୍ଭା ତାର ଚୋରୀ ହେଲା ପ୍ରବଳ ।'' (Assembly Reporter - vol-VIII, No-10, 12th October, 1988.) ସର୍ବୋପରି ଦେଖିଲେ ବିଧାନସଭା କବିତାଗୁଡିକ ସଙ୍ଗୀତ ଧର୍ମୀ, ସମ୍ବେଦନଶୀଳ, ଲଳିତ ଓ ଝଙ୍କାରମୟ, ଏକ କଥନ ଶ୍ରବଣ ରୀତିରେ ବିଧାନସଭା କବିତା ଗୁଡିକ ଗତିଶୀଳ । କେବଳ ଲୋକଭାଷା ଓ ଛନ୍ଦ ଦୃଷ୍ଟିରୁ ଏହି ସବୁ କବିତାଗୁଡିକ ଲୋକପ୍ରିୟ ହୋଇପାରିଛି । ପ୍ରସନ୍ନ ପାଟ୍ଟଶାଣୀଙ୍କ ବିଧାନସଭା କବିତା ପ୍ରତି ଓଡିଶାର ଜନସାଧାରଣଙ୍କର ଏକ ସ୍ୱତନ୍ତ୍ର ଆକର୍ଷଣ ରହିଛି । ସାମାଜିକ ଚେତନା ଓ ନିମ୍ନବର୍ଗର ପ୍ରତିଭୂ ହିସାବରେ କବିଙ୍କର ଉଦାତ୍ତ ସ୍ୱର ଏଥିରେ ବିଦ୍ୟମାନ, ଯେଉଁଥିରୁ ଏକ ମାନବ ବାଦୀ ସମ୍ବେଦନ ଶୀଳତା ପ୍ରଚ୍ଛନ୍ନ ଭାବେ ପ୍ରତିଫଳିତ ହୋଇଥିବା ଅନୁଭୂତ ହୁଏ ।

# ଚତୁର୍ଥ ପରିଚ୍ଛେଦ

# ପ୍ରସନ୍ନ ପାଟ୍ଟଶାଣୀଙ୍କ କବିତାର ଶିଳ୍ପାନୁଶୀଳନ

କବିତାର ଆଙ୍ଗିକ କହିଲେ, ତାହା ସାଧାରଣତଃ ତା'ର ବାହ୍ୟରୂପକୁ ବୁଝାଏ । କବିତାର ରୂପହୀନ ଭାବାନୁଭୂତିର କୌଣସି ମୂଲ୍ୟ ନାହିଁ । କବିର ପ୍ରତ୍ୟୟୀଭୂତ ଭାବାନୁଭୂତି ପ୍ରତୀକାତ୍ମକ ଶବ୍ଦ ମାଧ୍ୟମରେ କବିତାରେ ସଂହତ ରୂପଧାରଣ କରେ । ସେହି ରୂପର ଭାଷା, ଚିତ୍ରକଳ୍ପ ଓ ଏହାର ବ୍ୟଞ୍ଜନା ପ୍ରତୀକ । କବିତାରେ ଭାବାନୁଭୂତିର ମୂର୍ତ୍ତରୂପ ପାଇଁ ଚିତ୍ରକଳ୍ପ ଏକ ଅବିଚ୍ଛେଦ୍ୟ ଅଙ୍ଗ । ଏବେ ଆଧୁନିକ କବିତାରେ ଚିତ୍ରକଳ୍ପ ରଚନାକୁ କବିତ୍ୱର ଚରମ ପରୀକ୍ଷା ଭାବେ ଗ୍ରହଣ କରାଯାଇ ଆସୁଛି । କବି ଚେତନାକୁ ଜଗତ ଓ ଜୀବନ ପ୍ରଭାବିତ କରେ । କବି ସେହି କଥାକୁ ରୂପର ଭାଷାରେ କହିଲେ ତାହା କବିତା ହୁଏ । ଭାବ ସମ୍ବେଗକୁ କବିତାର ରୂପ ଓ ଆକୃତି ଧରିରଖେ । ଯେପରି -

''ଉତ୍କଳ କମଳା ବିଳାସ ଦୀର୍ଘିକା,

ମରାଳମାଳିନୀ ନୀଳାମ୍ବୁ ଚିଲିକା ।'' (ରାୟ, ରାଧାନାଥ - ଚିଲିକା । ପୃ-୧୪୯)। ଏଥିରେ ଚିଲିକାକୁ ଦେଖି କବି ଭିତରର ଭାବନା କାବ୍ୟାତ୍ମକ ରୂପ ଲାଭ କରିଛି । ସେହିପରି କବି ପ୍ରସନ୍ନ ପାଟ୍ଟଶାଣୀଙ୍କ ଦ୍ୱାରା ରଚିତ ''ଦେଖାହେଲେ କହିବି ସେକଥା'' କବିତା ଗ୍ରନ୍ଥରୁ ଏକ ଉଦାହରଣ ନିଆଯାଇ ପାରେ । ଯେପରି-

''ପ୍ରିୟା ପିନ୍ଧିଥିବ ସୁନେଲୀ ଘାଗରା

ଘାଗରାରେ ଥିବ କାଚ ପଥର

ସେହି ପଥରରେ ମୋ ମୁହଁ ଦେଖୁଥାନ୍ତି

ହସୁଥାନ୍ତା ପ୍ରିୟା ଥରକୁ ଥର ।''(ପାଟ୍ଟଶାଣୀ ପ୍ରସନ୍ନ- ଦେଖାହେଲେ କହିବି ସେ କଥା । ପୃଷ୍ଠା-୫) ।

ଏଥିରେ ପ୍ରେମିକା ପିନ୍ଧିଥିବା ଦର୍ପଣକାଚ ବସା ଘାଗରାରେ ପ୍ରେମିକ ମୁହଁ ଦେଖୁଥିବାର ଦୃଶ୍ୟ । ଏହି ଚିତ୍ରକଳ୍ପ ପ୍ରେମିକ ଓ ପ୍ରେମିକା ମଧ୍ୟରେ ଥିବା ନିବିଡ ପ୍ରଣୟଭାବ ସଂବେଗକୁ ମୂର୍ତ୍ତ ରୂପ ଦେଇଛି ।

ବିଶ୍ୱ ସୃଷ୍ଟି ସହିତ କବି ଅନ୍ତରର ଆତ୍ମୀୟତା ହେଉଛି, କବିତା ରଚନା ପାଇଁ କବିର ପ୍ରେରଣା । ବାସ୍ତବରେ କାବ୍ୟ ରୂପକ ପଞ୍ଜୁରୀରେ କବି ସ୍ୱର୍ଗ ଓ ମର୍ତ୍ତ୍ୟକୁ ବନ୍ଦୀ କରି ରଖେ ତା'ର କାବ୍ୟରୂପ ମାଧ୍ୟମରେ ।

କବିତାର ଆଙ୍ଗିକ ଶୈଳୀ କବି ନିର୍ବିଶେଷରେ ଭିନ୍ନ ଭିନ୍ନ ହୁଏ । ଶୈଳୀ ହେଉଛି କବିର ନିଜସ୍ୱ । ଏହା କବିକୁ ଏକ ସ୍ୱତନ୍ତ୍ର ମର୍ଯ୍ୟାଦା ଓ ପରିଚିତି ପ୍ରଦାନ କରେ । କବିର ନିଜସ୍ୱ ବୈଶିଷ୍ଟ୍ୟ ବା ମୌଳିକତା ତା'ର କାବ୍ୟଶୈଳୀ ମାଧ୍ୟମରେ ପ୍ରତିବିମ୍ବିତ ହୁଏ । କବିର କାବ୍ୟଶୈଳୀ ଦ୍ୱାରା ଅନ୍ୟ କବିମାନଙ୍କଠାରୁ ସେ ବାରି ହୋଇପଡେ । ସେହିପରି କବି ପ୍ରସନ୍ନ ପାଟଶାଣୀଙ୍କୁ ତାଙ୍କ କାବ୍ୟଶିଳ୍ପ ଅନ୍ୟ କବିମାନଙ୍କଠାରୁ ଏକ ସ୍ୱତନ୍ତ୍ର ମର୍ଯ୍ୟାଦା ପ୍ରଦାନ କରେ ।

ଓଡିଆ କାବ୍ୟ କବିତାକୁ ପ୍ରାଚୀନ ଯୁଗରୁ ଆଧୁନିକ ଯୁଗ ପର୍ଯ୍ୟନ୍ତ ଅନୁଧ୍ୟାନ କଲେ, ଏହା ବିଭିନ୍ନ ସମୟରେ ଭିନ୍ନ ଭିନ୍ନ ରୂପ ଧାରଣ କରିଥିବାର ସ୍ପଷ୍ଟ ହୁଏ । ପ୍ରାଚୀନ କବିତା ଆଭିଧାନିକ ଶବ୍ଦ, ଯମକ, ଅନୁପ୍ରାସ ଆଦି ଶୃଙ୍ଖଳାରେ ମଣ୍ଡିତ ଥିଲା । ସାରଳା ଦାସଙ୍କ ମହାଭାରତର ବାକ୍‌ଧର୍ମୀ ଭାଷା ଅତିବଡୀ ଜଗନ୍ନାଥ ଦାସଙ୍କ ଭାଗବତ ବେଳକୁ ଲୋକବୋଧ୍ୟ ଗଣଧର୍ମୀ ଭାଷାରେ ପରିବର୍ତ୍ତିତ ହୋଇଛି । ରୀତିଯୁଗରେ ଏହି କାବ୍ୟରୂପ ମଳିନ ପଡିଗଲା । ସମାଜ ସହିତ ସାହିତ୍ୟ ପ୍ରତ୍ୟକ୍ଷ ସମ୍ପର୍କ ରଖିପାରିଲା ନାହିଁ । କବିତା ଏକ ନିର୍ଦ୍ଦିଷ୍ଟ ଶ୍ରେଣୀ ବର୍ଗର ଅବସର ବିନୋଦନ ସାମଗ୍ରୀ ହୋଇଯିବା ଫଳରେ କବିତାର ଆଙ୍ଗିକ ଆବରଣରେ କଠିନ ଓ ଆଭିଧାନିକ ଶବ୍ଦ ସଂଯୁକ୍ତ ହୋଇପଡିଲା । ଜନସମୂହରୁ କାବ୍ୟ ତା'ର ଆକର୍ଷଣ ହରାଉଥିବା ଲକ୍ଷ୍ୟକରି ସମସାମୟିକ କେତେକ ପ୍ରମୁଖ ମଧ୍ୟଯୁଗୀୟ କବି କବିତାରେ ସଂଗୀତକୁ ପ୍ରଧାନ ଆଙ୍ଗିକ ଉପାଦାନ ଭାବେ ଗ୍ରହଣ କରିନେଲେ । ଏହି ସଙ୍ଗୀତହିଁ ଥିଲା ଆଧୁନିକ କବିତା ସୃଷ୍ଟି ପୂର୍ବର ମୂଳ ଉପାଦାନ । ଆଧୁନିକ କବିତା ମଧ୍ୟଯୁଗୀୟ 'ସୌଖୀନଚାଲ' ଛାଡି ନିଜକୁ ଗଣ-ମୁଖ-ନିକଟରେ ନିକଟତର କରିଛି । କବି ନିଜର ମୁଖ୍ୟ ଶୈଳ୍ପିକ ଭିତ୍ତିଭୂମି ଉପରେ ବାକ୍‌ରୀତି ସଙ୍ଗେ କାବ୍ୟିକ ରୀତିର ସମନ୍ୱୟ ଘଟାଇଛି । ଏ'କ୍ଷେତ୍ରରେ ସଚ୍ଚିଦାନନ୍ଦ ରାଉତରାୟଙ୍କ ପଥରେ ଆଧୁନିକ ଓଡିଆ କବିଗଣ ପଥୀକୃତ ହେଲେ । ଏ' ପ୍ରକାର ଶିଳ୍ପରୀତିରେ ନୂଆଚଳନ୍ତି ଓ ସମ୍ବେଦନା ପୂର୍ଣ୍ଣ ଶବ୍ଦ ସବୁ ବ୍ୟବହୃତ ହେଲା, ସେଥିପାଇଁ କବି ସଚ୍ଚିଦାନନ୍ଦ ରାଉତରାୟ କହନ୍ତି ଯେ, ''ବାକ୍‌ରୀତି ସଙ୍ଗେ କାବ୍ୟିକ ରୀତିର ପୂର୍ଣ୍ଣ ସମନ୍ୱୟ ନ ଘଟିବା ପର୍ଯ୍ୟନ୍ତ ସାହିତ୍ୟ ଆମ ଜୀବନର ଅନ୍ତଃପୁରେ ପ୍ରବେଶ କରିପାରିବ ନାହିଁ ।''(ରାଉତରାୟ ସଚ୍ଚିଦାନନ୍ଦ - ସଚ୍ଚିରାଉତ ରାୟ ଗ୍ରନ୍ଥାବଳୀ । ପୃଷ୍ଠା-୧୯) ।

ଉପଧା ଓ ଯତିଯମକର ଆଡମ୍ବରତା ପ୍ରାୟ ଆଧୁନିକ କବିତାରୁ ଲୋପ ପାଇଛି । ଉପଧା ମିଳନ ଗୌଣ ହୋଇଛି । କବିତାରେ ମୁକ୍ତ ଛନ୍ଦ ଓ ଗଦ୍ୟରୀତିକୁ ଆଧୁନିକ କବିମାନେ ଗ୍ରହଣ କରିଛନ୍ତି । ଆଧୁନିକ ଜୀବନର ଭାବସ୍ରୋତ ଯାହା ତା'ର ପାରିପାର୍ଶ୍ୱିକ ଜଟିଳତା ଭିତରେ ପଥରୋଧ ହୋଇପଡିଛି । ତାହାକୁ କବିତାରେ ରୂପଦେବା ପାଇଁ (Pose-Verse) ବା ମୁକ୍ତ କବିତା (Verse libre) ର ପ୍ରୟୋଗ ଦେଖିବାକୁ ମିଳିଲା ।

ଆଧୁନିକ କବିତାର ଶିଳ୍ପରୀତିକୁ ପ୍ରତ୍ୟକ୍ଷ କଲାବେଳେ ପ୍ରଥମରୁ ଗୋଟିଏ କଥା ମନକୁ ଆସେ ଆଙ୍ଗିକରୁ ରୀତି ଯମକର ଯାଦୁକରୀ ପ୍ରଲୋଭନ ତଥା ସ୍ଥିର ଈଶ୍ୱର ବିଶ୍ୱାସ ହରାଇଛି । ସଭ୍ୟତାର ଆରମ୍ଭ କାଳରୁ ଆଜି ପର୍ଯ୍ୟନ୍ତ ସମସ୍ତ ଶିଳ୍ପକଳା ବିକାଶ ଲାଭ କରିଥିଲା ଈଶ୍ୱର ବାଦୀ ସର୍ଜନ- ଶୀଳତାର

ଭିତ୍ତିଭୂମି ଉପରେ । ଈଶ୍ୱର ବିଶ୍ୱାସକୁ ତଡିଦେଇ ବିଜ୍ଞାନକୁ ଅଙ୍ଗୀକାର କରି ପାଶ୍ଚାତ୍ୟ କବିତାରେ ଯେଉଁ ଶୈଳ୍ପିକ ସିଦ୍ଧାନ୍ତ ଆତ୍ମପ୍ରକାଶ କଲା, ତା'ର ପ୍ରଭାବ ବିଶ୍ୱର ଅନ୍ୟାନ୍ୟ ସାହିତ୍ୟରେ ଅନୁଭୂତ ହେଲା । ମଣିଷର ବୁଦ୍ଧି ଓ ସହଜାତ ପ୍ରବୃତ୍ତି ପାଇଁ Analogy ବା ସାଦୃଶ୍ୟ ବର୍ଣ୍ଣନାର ଆବଶ୍ୟକତା ପଡିଲା । ଗଣତନ୍ତ୍ରର ନୂଆ ନୂଆ ଶ୍ରେଣୀ, ସମାଜ ସୃଷ୍ଟି, ମଣିଷର ଅବଚେତନ ମନର ରୂପ କବିତା କ୍ଷେତ୍ରରେ ଏକ ମୃଦୁ ବିବର୍ତ୍ତନ ଆଣିଥିଲା । ସବୁ ନାହିଁ, ନାହିଁ ଚେତନା ( Nihilism) ଭିତରେ କବି ମଣିଷର ଏକ କାବ୍ୟିକ ସ୍ଥିତିକୁ ପ୍ରମାଣ କରିବାକୁ ଚେଷ୍ଟା କରିଛନ୍ତି । ଆଧୁନିକ ସମାଜ ଓ ଜୀବନର ଜଟିଳ ଭାବରାଜିକୁ ପ୍ରକାଶ କରିବାକୁ ଗଲାବେଳେ କବିତାର ପାରମ୍ପରିକ ଶୈଳୀରେ ପରିବର୍ତ୍ତନ ଆସିବା ସ୍ୱାଭାବିକ ।

କବିତାର ଭାଷା ଓ ସାଧୁଭାଷା ମଧ୍ୟରେ ତାରତମ୍ୟ ପରିଲକ୍ଷିତ ହୁଏ । କବିତାର ଭାଷାରେ କେତେକ ନିଜସ୍ୱ ଭାଷିକ ସମ୍ପତ୍ତି ଅଛି । କବିତା-ଭାଷାର ପ୍ରଧାନ କାର୍ଯ୍ୟହେଲା ବକ୍ତବ୍ୟର ଭାଷିକ ରୂପକୁ ପାଠକ ସମ୍ମୁଖରେ ଉପସ୍ଥାପନ କରିବା । ତେଣୁ ଏଥିରେ ବକ୍ତବ୍ୟ ତୁଳନାରେ ବକ୍ତବ୍ୟର ପ୍ରକାଶ ଭଙ୍ଗୀ ଉପରେ ଅଧିକ ଗୁରୁତ୍ୱ ଦିଆଯାଏ । କବିତାରେ ଭାଷାକୁ ସୂକ୍ଷ୍ମକଳା ଦୃଷ୍ଟିରୁ ସୌନ୍ଦର୍ଯ୍ୟବୋଧକ କରି ବ୍ୟବହାର କରାଯାଏ । କଳ୍ପନା ଓ ଆବେଗ ସୃଷ୍ଟିକାରୀ କବିତ୍ୱପୂର୍ଣ୍ଣ ଭାଷା ବ୍ୟବହାର ଦ୍ୱାରା କବିତା ରସସିକ୍ତ ହୁଏ । ଆଳଙ୍କାରିକ ବିଶ୍ୱନାଥ କବିରାଜ କହିଛନ୍ତି ''ବାକ୍ୟଂ ରସାତ୍ମକଂ କାବ୍ୟମ୍'', ଅର୍ଥାତ କାବ୍ୟ ହେଉଛି ରସାତ୍ମକ ବାକ୍ୟ । ପଣ୍ଡିତ ଜଗନ୍ନାଥ ତାଙ୍କ 'ରସଗଙ୍ଗାଧର' ଗ୍ରନ୍ଥରେ କହିଛନ୍ତି - ''ରମଣୀୟାର୍ଥ ପ୍ରତିପାଦକଃ ଶବ୍ଦଃ କାବ୍ୟମ୍'' ଅର୍ଥାତ୍ ରମଣୀୟ ଅର୍ଥଯୁକ୍ତ ଶବ୍ଦ ରଚନାହିଁ କାବ୍ୟ । ତେଣୁ ବେଳେବେଳେ କବିତାରେ ରସ ଅପେକ୍ଷା ରମଣୀୟତାର ପ୍ରାଧାନ୍ୟ ଅନୁଭୂତ ହୁଏ ।

କବିତାରେ ଶବ୍ଦର ଭୂମିକା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । ଶବ୍ଦର ପ୍ରଭାବଶାଳୀ ବ୍ୟବହାର ଉପରେ କବିତାର ଶ୍ରେଷ୍ଠତା ପ୍ରତିପାଦିତ ହୁଏ । ଏହି ସମ୍ପର୍କରେ ବିଶିଷ୍ଟ କାବ୍ୟ ସମାଲୋଚକ ଶ୍ରୀଯୁକ୍ତ ଦାଶରଥି ଦାସ କହନ୍ତି - ''ଶବ୍ଦର ମହତ୍ତ୍ୱରେ ତା'ର କବିତାର ଶ୍ରେଷ୍ଠତ୍ୱ ନିର୍ଭର କରେ । ଅର୍ଥ, ସଙ୍ଗୀତ, ଚିତ୍ର, ସ୍ଫୁର୍ତ୍ତି, ସାରଲ୍ୟ, ଅଳଙ୍କାର, ଭାବ, ଚିତ୍ରକଳ୍ପ, ନାଟକୀୟ ଗତି ବେଗ ଓ ଲିରିକାଲ୍ ସାନ୍ଦ୍ରତା ସବୁକିଛି ଶବ୍ଦର ଦାନ । ବାଚ୍ୟାର୍ଥଠାରୁ ବ୍ୟଙ୍ଗାର୍ଥ ପର୍ଯ୍ୟନ୍ତ ସବୁକିଛି ଶବ୍ଦର କୀର୍ତ୍ତି ।''(ଦାସ, ଦାଶରଥି- ଚିହ୍ନାମାଟି ଅଚିହ୍ନା ଆକାଶ । ପୃଷ୍ଠା-୨୯୯) ।

କବିଙ୍କ ସହ ଏକ ସାକ୍ଷାତ କାରରେ ସେ କବିତାର ସଂଜ୍ଞା ଦେବାକୁ ଯାଇ କହିଛନ୍ତି - ''ଜଗତ ଓ ଜୀବନର ଅସଂଖ୍ୟ ଅନୁଭୂତିର ଶବ୍ଦମୟ ରୂପାନ୍ତରକୁ କବିତା କୁହାଯାଏ ।''(କବି ପ୍ରସନ୍ନ ପାଟଶାଣୀଙ୍କ ସହ ଏକ ସାକ୍ଷାତକାର-(ପରିଶିଷ୍ଟ ଦ୍ରଷ୍ଟବ୍ୟ) । କବିତାରେ ଶବ୍ଦର ପ୍ରାଧାନ୍ୟ ସମ୍ପର୍କରେ କବି ନିଜେ ତାଙ୍କ କବିତାର କେତେକ ସ୍ଥାନରେ ଉଲ୍ଲେଖ କରିଛନ୍ତି । ଉଦାହରଣ ସ୍ୱରୂପ-

''ଶବ୍ଦ ଜଳେ ଶବ୍ଦର ଭିତରେ

ତମ ଭାଷା ଜଳେ

ଅନେକ ଓଠର ଭାଷାରେ ।'' ( ପାଟଶାଣୀ ପ୍ରସନ୍ନ - 'ବର୍ଷା' । ପୃଷ୍ଠା-୧୭)। ଶବ୍ଦ ଭିତରେ ଧ୍ୱନିର ତୀବ୍ର ଗୁଞ୍ଜରଣ କଥା ଏଠାରେ କୁହାଯାଇଛି । ପ୍ରିୟତମା ଓଠର ମଧୁର ଭାଷାପରି

କବିତାର ଭାଷା, ତା'ର ଲାଳିତ୍ୟ ମୂର୍ଚ୍ଛନା ଯୋଗୁଁ ସାଧାରଣ ଜନତାର ଓଠର ଭାଷାରେ ପରିଣତ ହୋଇଯାଏ । ଏକ ଶବ୍ଦମୟ ପୃଥିବୀରେ କବି ସର୍ବଦା ନିମଗ୍ନ ରୁହେ । ଶବ୍ଦର ମାଳା ଗୁନ୍ଥିବାକୁ ତାକୁ ଭଲ ଲାଗେ । ପ୍ରତ୍ୟେକ କବି ସ୍ୱାଭାବିକ୍ ଭାବେ ଶବ୍ଦସାଗରରେ ବୁଡି ରୁହନ୍ତି । ଏହା କବିର ଏକ ମାନସିକ ଧର୍ମ । ଯେପରି-

''କବିତାର ସହସ୍ର ପାଖୁଡା ଫୁଟାଇ ତା'ଭିତରେ/ମୁଁ ନିମଗ୍ନ କବି ।''(ପାଟଶାଣୀ ପ୍ରସନ୍ନ- ରକ୍ତପଥ । ପୃଷ୍ଠା-୨୯) । କବିଙ୍କର ଶବ୍ଦ ପ୍ରୟୋଗ ରୀତିରେ ଏକ ସ୍ୱତନ୍ତ୍ରତା ପରିଲକ୍ଷିତ ହୁଏ । 'ବଖରା, ଟାହିଆ, ଅଣ୍ଟାସୂତା, ପଦ୍ମପାଦ, ଫୁଲଶେଯ, ଅଗଣା, ଓଢଣା, ତୋରଣ, ଚଟାଣ, ଅଭିସାର, ଅତଡା, ସୋହାଗ, କୁଣ୍ଡଳିନୀ, ଆଲିଙ୍ଗନ, ପାର୍ବଣ, ମେଖଳା, କୋହ, ବଟଫଳ, କୋଟିକମ, ଗୋହିରୀ, ସଡକ, ଉହାଡ, ବେଦନା, ଅଭିମାନ, କୁଙ୍କୁମ, କାକଳୀ, ଦହନ, ବିରହ, ଘାଗରା, ନଈପଠା, ସରାଗ, ଶିକୁଳି, ଦୁଆର, ଛନକା, ପଣତ, ଲୁଚକାଳି, ମକଚି, ଉଦାସ, ଅହରହ, ଅଙ୍ଗାର, ବ୍ୟାକୁଳ, ରୁଣୁଝୁଣୁ, କଇଁଳ, ନୀବିବନ୍ଧ, ଖୀଲାଣ, କୁତୁକୁତୁ, ଡେଉଁରିଆ, ସପନ, ପ୍ରଣୟ, କୁହୁଳା, ଆଶଙ୍କା, କାକର, ଚିରକାଳ, ଉବୁଟୁବୁ, ବାଟବଣା, ଥପ୍‌ଥପ୍, ହୁଲିଡଙ୍ଗା, ଜିକିଜିକି, ବେସୁରା, ପ୍ରତାରଣା, ନିରୀହ, ଗୁଞ୍ଜରଣ, କିଚିରିମିଚିରି, କବରୀ, କୋକେଇ, ସବୁଜବନାନୀ, ଖୁଦକଣିକା, ଟୁକୁରା, ଗୋଧୂଳି, ପଞ୍ଜରା, ପାପୁଲି, ବଡଦାଣ୍ଡ, ଇଲାକା, ଚିତ୍ରିତ ଫଗୁଣ, ଝୁଣ୍ଟିଆ, ନୀଳକଇଁ, ଶଙ୍ଖୋଳିବା, କୁଞ୍ଜବନ, ଫେରାଦ, ଜଠର, ଅପବାଦ, ଉପସମ, ନୟନ ପିତୁଳା, କାଠୁରିଆ ବେହାଗ, କୁନ୍ତଳ, ସମର୍ପଣ, ଦୀପାଳୀ, ସମ୍ମୋହନ, କଉଡି, ଅଫୁଟାକଢ, କୋକେଇ, ବିଗୁଲ, ଚିମିନ, ଆୱାଜ, ହାତୁଡି, ଦାଆ, ଶୋଷଣ, ବହ୍ନିମାନ, ଖାଦାନ, ଇନାମ, ନୁଖୁରା ଓ ଚଉରା ପ୍ରଭୃତି ବୈଚିତ୍ର୍ୟପୂର୍ଣ୍ଣ ଶବ୍ଦସବୁ ପ୍ରସନ୍ନ ପାଟଶାଣୀଙ୍କ କବିତାକୁ ଋଦ୍ଧିମନ୍ତ କରିଛି । ଆରିଷ୍ଟଟଲ ତାଙ୍କର 'POETICS' ଗ୍ରନ୍ଥରେ କାବ୍ୟଶିଳ୍ପ ସମ୍ପର୍କରେ ଯାହା କହିଛନ୍ତି- ''USE OF UNFAMILIAR TEARMS AND STRANGE WORDS.'' ଏହା ମଧ୍ୟ ପାଟଶାଣୀଙ୍କର ଶବ୍ଦ ନିର୍ବାଚନ କ୍ଷେତ୍ରରେ କିଛି ପରିମାଣରେ ପ୍ରଯୁଜ୍ୟ ମନେହୁଏ ।

କବି କର୍ମ ଅଲୌକିକ । କବି ସବୁବେଳେ ପ୍ରଚଳିତ ବିଧି ବ୍ୟବସ୍ଥା ମଧ୍ୟରେ ବାନ୍ଧି ହୋଇ ରୁହେ ନାହିଁ । କବିର ଭାଷା ସାଧାରଣ ଭାଷାରୀତିଠାରୁ ସ୍ୱତନ୍ତ୍ର । କବିତାର ଭାଷାସାଧାରଣ ଭାଷାର ଏକ ଶୈଳୀ ବୋଲି କୁହାଯାଇପାରେ । ବିଶିଷ୍ଟ ଭାଷାତତ୍ତ୍ୱବିତ୍ ଡକ୍ଟର ଖଗେଶ୍ୱର ମହାପାତ୍ରଙ୍କ ମତରେ ''ସାଧାରଣ ଭାଷା ଝରକାର କାଚ ପରି । କିନ୍ତୁ କବିତାର ଭାଷା ଦର୍ପଣର କାଚପରି ।'' ( ମହାପାତ୍ର, ଡକ୍ଟର ଖଗେଶ୍ୱର ଓ ପଟେଲ୍ ଡକ୍ଟର ବିଶ୍ୱମ୍ଭର - 'କାବ୍ୟିକ ଭାଷା' । ପୃଷ୍ଠା-୧୯ ) । ତେଣୁ କବିତାର ଭାଷା ହେଉଛି, ଭାବ ପ୍ରକାଶର ଏକ ପ୍ରତିବିମ୍ବିତ ରୂପ ।

ବ୍ୟଞ୍ଜନାତ୍ମକ ଅଭିବ୍ୟକ୍ତିରେ କବିତା ହୁଏ ସାର୍ଥକ । କବିତାରେ ବ୍ୟଞ୍ଜନା ସୃଷ୍ଟି କରିବା କବିର ଦକ୍ଷତା ଉପରେ ନିର୍ଭର କରେ । ମନୁଷ୍ୟ ଜୀବନର ବିଭିନ୍ନ ଅବସ୍ଥାକୁ କବି ବ୍ୟଞ୍ଜନା ମାଧ୍ୟମରେ କବିତାରେ ବ୍ୟକ୍ତ କରନ୍ତି । ପିଲାଦିନ ଅବସ୍ଥାକୁ କବି ପ୍ରସନ୍ନ ପାଟଶାଣୀ ଏକ ବ୍ୟଞ୍ଜନାତ୍ମକ ଶୈଳୀରେ ପ୍ରକାଶ କରିଛନ୍ତି, ଯଥା-

''ପିଲାଦିନ ଆଙ୍ଗୁଠି ଚିହ୍ନରେ

ମୋ ଚାହାଣୀ ଝୁଲେ

ଆସାମୀର ବେକ ପରି

ଫାଶୀ ଦଉଡିରେ ।'' ( ପାଟ୍ଟଶାଣୀ ପ୍ରସନ୍ନ - ନାଳନୂପୁର । ପୃ-୧୮ ) । ବୈସାଦୃଶ୍ୟ ଥାଇ ସୂକ୍ଷ୍ମଭାବକୁ ସ୍ଥୂଳଭାବ ସହ ସମ୍ପର୍କିତ କରିଛନ୍ତି କବି । ଅତୀତର କରୁଣସ୍ମୃତି ଦେହରି ଏକ ଆହ୍ଳୁତା ଚିହ୍ନରେ ବ୍ୟଞ୍ଜିତ ହୋଇଛି । କବିତାରେ ବ୍ୟଞ୍ଜନାର ଏକ ପରିମଣ୍ଡଳ ପାଠକ ଅନୁଭବ କରେ । କବି ଗୋଟିଏ ବିଷୟ ପ୍ରକାଶ କରନ୍ତି । କିନ୍ତୁ ବହୁ ତଥ୍ୟ ସମ୍ବଳିତ ବିଷୟ କବିତାର ଅନ୍ତର୍ନିହିତ ସୌନ୍ଦର୍ଯ୍ୟ ଭିତରେ ଲୁଚାଇ ରଖେ କବି । କବିତାର ସାର୍ଥକତା କବିର ଭାବ ବ୍ୟଞ୍ଜନା ଉପରେ ନିର୍ଭର କରେ । କବିଙ୍କର କେତେକ କବିତା ପୁସ୍ତକର ନାମ କରଣ ଯଥା - ''ଅମାବାସ୍ୟା ବସିଛି ଜହ୍ନର ପିଠିରେ'', ''ବାଘ ଆଁ ଭିତରେ ପିକ୍‌ନିକ୍'' ଇତ୍ୟାଦିରେ କବି ଏକ ବିରୋଧାଭାସ ଭିତରେ ଆତ୍ମୀୟତାର ବ୍ୟଞ୍ଜନାତ୍ମକ ପରିମଣ୍ଡଳଟିଏ ତିଆରି କରିଛନ୍ତି । ଯଥା -

''କେବେ ଆସିଲେ କହିବି ସେକଥା

ପାଗଳ ପ୍ରଜାପତିଟିଏ

କିପରି ଖୋଜେ ନଈପଠା ।'' (ପାଟ୍ଟଶାଣୀ ପ୍ରସନ୍ନ - ''ଦେଖାହେଲେ କହିବି ସେ କଥା ''ପୃ-୧) । ଏଠାରେ ପାଗଳ ପ୍ରଜାପତି ନଈପଠା ଖୋଜିବା ଦୃଶ୍ୟ ଭିତରେ କବିର ପ୍ରିୟତମା ପ୍ରତି ଥିବା ନିବିଡ ପ୍ରେମାନୁରାଗ ବ୍ୟଞ୍ଜିତ ହୋଇଛି ।

ଉନବିଂଶ ଶତାବ୍ଦୀର ମଧ୍ୟଭାଗ ବେଳକୁ କବିତାରେ ଚିତ୍ରକଳ୍ପ ଉପରେ ବିଶେଷ ଗୁରୁତ୍ୱ ପ୍ରଦାନ କରାଯାଇଛି । ଚିତ୍ରକଳ୍ପ ସୃଷ୍ଟି କବିର କଳ୍ପନା ଶକ୍ତି ଉପରେ ନିର୍ଭର କରେ । T. E. Hume ଙ୍କ ମତରେ-" Each word must be an image seen, not a counter ". (Robberts, Michle - Notes on language and style, Appendix - 3, page - 292.) ସଚ୍ଚିଦାନନ୍ଦ ରାଉତରାୟଙ୍କ ମତରେ - '' କେବେ ହେଲେ ସାଧାକଥା କହିବ ନାହିଁ, ଏହାର କିଛି ଫଳ ହୁଏ ନାହିଁ ।'' (ରାଉତରାୟ ସଚ୍ଚିଦାନନ୍ଦ - ଗ୍ରନ୍ଥାବଳୀ । ପୃ-୩୦୧) । ଭାଷାରେ ଭାବକୁ ଦୃଢଭାବେ ଧରି ରଖେ ଚିତ୍ରକଳ୍ପ । " People can talk to each other most deeply in images." (Hall Donald-Introduction to contemporary American Poetry. Page-33.) ସମୟର ସ୍ୱର ଓ ଜୀବନର ମୂଲ୍ୟ ବୋଧର ବିବର୍ତ୍ତନ ସହିତ କବିର କାବ୍ୟ ଶିଳ୍ପରେ ପରିବର୍ତ୍ତନ ଘଟିଛି । ''ଚିତ୍ରକଳ୍ପ ଚେତନାର ବାହକ । ଚିତ୍ରକଳ୍ପ ଭାବକୁ ଓ ଅର୍ଥକୁ ବହୁ ପ୍ରସାରିତ କରିଥାଏ ।'' କବିତାରେ ଚିତ୍ରକଳ୍ପ ଦ୍ୱାରା ଇନ୍ଦ୍ରିୟୋତ୍ତର ଉପଲବ୍ଧି ସମ୍ଭବ ହୋଇଥାଏ । ଏହି ଚିତ୍ରକଳ୍ପ ଶବ୍ଦଚିତ୍ର ଇନ୍ଦ୍ରିୟ ବୋଧର ସ୍ୱାଦ ଫୁଟାଇବା ତାହାର ବିଶେଷତ୍ୱ '' ( ଦାସ, ଡଃ. ଦାଶରଥି - ଆଧୁନିକ କାବ୍ୟ ଜିଜ୍ଞାସା: ଚିତ୍ରକଳ୍ପ । ପୃ-୬୪ ) ।

ଓଡିଆ ସାହିତ୍ୟରେ ନୂତନ କାବ୍ୟଶୈଳୀର ପ୍ରବର୍ତ୍ତକ ସଚ୍ଚିଦାନନ୍ଦ ରାଉତରାୟଙ୍କ ଠାରୁ ଆରମ୍ଭ କରି ଶ୍ରୀ ଗୁରୁପ୍ରସାଦ ମହାନ୍ତି, ସୀତାକାନ୍ତ ମହାପାତ୍ର ଓ ଶ୍ରୀ ରାମାକାନ୍ତ ରଥଙ୍କ ପର୍ଯ୍ୟନ୍ତ କବିଗଣ କବିତାରେ ଚିତ୍ରକଳ୍ପ ପ୍ରୟୋଗ କରି ସୁପ୍ରତିଷ୍ଠିତ ହୋଇ ସାରିଛନ୍ତି । ଶ୍ରୀ ରମାକାନ୍ତ ରଥଙ୍କ କବିତାରୁ ଏକ ଚିତ୍ରକଳ୍ପର ଉଦାହରଣ ନିଆଯାଇପାରେ ।

''ରାତିର ଆକାଶ ଦେହେ

ପ୍ରସ୍ଥ ପ୍ରସ୍ଥ ଧୂସର ବାଦଲ

ଗୋଟେ ଅଧେ ଢକ୍‌ଢକ୍ ତରା ମୋ କଲେଜ ବେଲୁ ଚାହିଁଛନ୍ତି

ବାଳଶ୍ରୀ ବିଧିବା ପରି କପଟ ଖୁସିରେ ।''

( ରଥ ରମାକାନ୍ତ - ସନ୍ଦିଗ୍ଧ ମୃଗୟା । ପୃ-୯୦ । ) ଅତୀତ ଜୀବନର ସ୍ମୃତିକୁ ବାଳଶ୍ରୀ ବିଧବା ପରି କପଟ ଖୁସିରେ ଚାହିଁଥିବା ଢକଢକ ତାରା ଚିତ୍ରକଳ୍ପ ଜରିଆରେ ପ୍ରକାଶ କରିଛନ୍ତି । ପ୍ରସ୍ଥ ପ୍ରସ୍ଥ ଧୂସର ବାଦଲକୁ ଜୀବନର କ୍ଲାନ୍ତି ଓ ନୈରାଶ୍ୟର ଚିତ୍ରକଳ୍ପ ଭାବେ ଗ୍ରହଣ କରିଛନ୍ତି କବି ।

କବି ପ୍ରସନ୍ନ ପାଟ୍ଟଶାଣୀ ଗୋଟିଏ ପ୍ରକାର ଚିତ୍ରକଳ୍ପକୁ ବିଭିନ୍ନ ସମୟରେ ବିଭିନ୍ନ ଭାବବୋଧର ପରିପ୍ରେକ୍ଷୀରେ ପ୍ରୟୋଗ କରିଥାନ୍ତି । ତାଙ୍କ ଚିତ୍ରକଳ୍ପ ରଚନା ସହିତ ଏକ ଆବେଗିକ ଅବବୋଧ ମିଶି ରହିଥାଏ । ହୃଦୟର ସୂକ୍ଷ୍ମ ଅନୁଭୂତିକୁ ଚିତ୍ରକଳ୍ପ ଜରିଆରେ ଜୀବନ୍ତ ଭାବରେ ପ୍ରକାଶ କରନ୍ତି । କବି ବାହ୍ୟ ପ୍ରକୃତି  ଅନ୍ତଃ ପ୍ରକୃତି ଉଭୟରୁ ଚିତ୍ରକଳ୍ପ ଗ୍ରହଣ କରନ୍ତି । ତାଙ୍କର ଚିତ୍ରକଳ୍ପ ଗୁଡିକ ପ୍ରାୟତଃ ପ୍ରକୃତି ଜଗତରୁ ଗୃହୀତ କିନ୍ତୁ ଏହାର ପ୍ରୟୋଗବିଧି ବିଭିନ୍ନ ଭାବରେ ହୋଇଥାଏ ।

ଦୃଶ୍ୟ ସମ୍ପର୍କିତ ଦୃଶ୍ୟ ଚିତ୍ରକଳ୍ପରେ ଗୋଟିଏ ଦୃଶ୍ୟକୁ ଅନ୍ୟ ଗୋଟିଏ ଦୃଶ୍ୟ ଭିତରେ ରଖି ତାହାର ଭାବଭୂମିକୁ ଅଧିକ ଶକ୍ତିଶାଳୀ କରିଥାନ୍ତି । ଯେପରି -

''ଛେଳି ପଲ ଦୂର କିଆରୀରୁ ମାଡି

ଆସିଲା ପରି ରାତି ମାଡି ଆସୁଛି ।'' (ପାଟ୍ଟଶାଣୀ ପ୍ରସନ୍ନ - ଅମାବାସ୍ୟା ବସିଛି ଜହ୍ନର ପିଠିରେ । ପୃ-୬୨ ) ।

ଦୃଶ୍ୟ ସମ୍ପର୍କିତ ଚେତନା ଚିତ୍ରକଳ୍ପରେ କବି ତାଙ୍କ ମାନସିକ ଚେତନା ସହିତ ପ୍ରାକୃତିକ ଦୃଶ୍ୟକୁ ସମ୍ପର୍କିତ କରି ପ୍ରକାଶ କରନ୍ତି । ଏଥିରେ ଦୃଶ୍ୟରେ ସୂକ୍ଷ୍ମଭାବକୁ କାବ୍ୟ ଚେତନା ଉପରେ ଆରୋପ କରାଯାଏ । ଯଥା -

''ଦେହର ଗଛରେ ବୁଢିଆଣୀ ପରି ଆତ୍ମା

ଏକ ନିବିଡ ଗୁହାରେ ଜାଲ ବୁଣେ ।'' (ପାଟ୍ଟଶାଣୀ ପ୍ରସନ୍ନ - ନୀଳନୂପୁର । ପୃ-୪୨ ) । ବୁଢିଆଣୀ ଜାଲ ଦୃଶ୍ୟ ଉପରେ ଆତ୍ମାର ରହସ୍ୟ ଚେତନାକୁ ସଂଯୁକ୍ତ କରାଯାଇଛି । ଏଥିରେ ପ୍ରାକୃତିକ ଦୃଶ୍ୟ ଭିତରୁ ମାନବୀୟ ଚେତନାର ପରିସ୍ଫୁଟନ ଘଟିଛି ।

ଚେତନା ସମ୍ପର୍କିତ ଦୃଶ୍ୟ ଚିତ୍ରକଳ୍ପରେ ମଣିଷର ସୂକ୍ଷ୍ମ ଭାବସତ୍ତା ଦୃଶ୍ୟ ସହିତ ସଂଯୁକ୍ତ ହୋଇ ପ୍ରକାଶିତ ହୁଏ । ଯଥା -

''ମୋ ହୃଦୟଟା ଗୋଟିଏ

ଲଣ୍ଠନ ହୋଇ ଜଳୁଛି

ତା'ରି ଭିତରେ ଦାଉ ଦାଉ

ମୋ ଆତ୍ମାର ଶିଖା ।'' (ପାଢଶାଣୀ ପ୍ରସନ୍ନ - କିଛି ଲୁହ କିଛି ଲହୁ । ପୃ-୫୧) ।

ଚେତନା ସମ୍ପର୍କିତ ଚେତନା ଚିତ୍ରକଳ୍ପରେ ଦୁଇଟି ଚେତନା ଦୁଇଟି ଦୃଶ୍ୟ ଭିତରେ ରହି ଏକ ଶକ୍ତିଶାଳୀ କାବ୍ୟଅବୋଧ ସୃଷ୍ଟି କରନ୍ତି । ଯେପରି -

''ରକ୍ତ ଜୁଡୁବୁଡୁ ରାତିଟାକୁ

ସିନ୍ଦୂର କରି ମୁଁ ସାଇତି ରଖିଛି

ମୋ ପ୍ରେମିକାର ଫରୁଆରେ ।''(ପାଢଶାଣୀ ପ୍ରସନ୍ନ - କିଛି ଲୁହ କିଛି ଲହୁ । ପୃ-୪୮) । କବି ପ୍ରସନ୍ନ ପାଢଶାଣୀ ଚିତ୍ରକଳ୍ପ ପ୍ରୟୋଗରେ ନିଜର ଅସାଧାରଣ ଦକ୍ଷତା ପ୍ରଦର୍ଶନ କରି ଓଡିଆ କାବ୍ୟ ସାହିତ୍ୟରେ ଏକ ଗୌରବମୟ ଆସନର ଅଧିକାରୀ ହୋଇ ପାରିଛନ୍ତି । ବେଳେବେଳେ ଏକାଧିକ ଚିତ୍ରକଳ୍ପର ଏକତ୍ର ସମାବେଶ ପ୍ରସନ୍ନ ପାଢଶାଣୀ କବିତାରେ ପରିଲକ୍ଷିତ ହୁଏ । ଏହାକୁ ବିଶିଷ୍ଟ ଆଲୋଚକ ଡକ୍ଟର ଦାଶରଥି ଦାସଙ୍କ ମତରେ ଯୁଗ୍ମ ଚିତ୍ରକଳ୍ପ ବୋଲି କୁହାଯାଏ । ''ଯୁଗ୍ମ ଚିତ୍ରକଳ୍ପ '' (coupling images) କବିତାର ଅଙ୍ଗ ସଂସ୍ଥାନରେ ବଡ ଗୁରୁତ୍ୱ ପୂର୍ଣ୍ଣ ଭୂମିକା ଗ୍ରହଣ କରିଛନ୍ତି । ଶବ୍ଦ ବିନ୍ୟାସ ଲୀଳାରେ ପ୍ରଥମେ ଗୋଟିଏ ଚିତ୍ରକଳ୍ପ ଆତ୍ମ ପ୍ରକାଶ କରେ - ରୂପ ରସ ରଙ୍ଗ ଗନ୍ଧ ସ୍ପର୍ଶରେ ତାହା ମୂର୍ତ୍ତ ଓ ଇନ୍ଦ୍ରିୟଗ୍ରାହ୍ୟ ହୋଇ ଉଠିଥାଏ । କବି ସତର୍କତାର ସହିତ ତାହାରି ପାଖରେ ଏକାଧିକ ଚିତ୍ରକଳ୍ପ ଖଞ୍ଜି ଦିଅନ୍ତି - ଫଳରେ ବିଚ୍ଛିନ୍ନ ପ୍ରତ୍ୟେକ ଚିତ୍ରକଳ୍ପର ଯେଉଁ ଅର୍ଥ ଓ ଆବେଦନ ନଥାଏ ତାହାହିଁ ଯୁଗ୍ମ ଚିତ୍ରକଳ୍ପ ବ୍ୟବସ୍ଥାରୁ ଆତ୍ମପ୍ରକାଶ କରେ । ସେଗୁଡିକର ସଂଯୋଗ ସୂତ୍ରରୁ ନୁହେଁ, କେବଳ ଧାରାବାହିକ ସଂପର୍କ ସୂତ୍ରରୁ ଅର୍ଥ ଓ ଆବେଦନ ପ୍ରସରି ଯାଏ ।'' । (ଦାସ ଦାଶରଥି - ଆଧୁନିକ କାବ୍ୟ ଜିଜ୍ଞାସା : ଚିତ୍ରକଳ୍ପ । ପୃ-୧୨୦) । ଏହି ପରିପ୍ରେକ୍ଷୀରେ କବି ପାଢଶାଣୀଙ୍କ କବିତାରୁ ଏକ ଉଦାହରଣ ନିଆଯାଇପାରେ ।

''ମନର ପୋଡା ଚମରେ ଧଳା ଛଉ ପରି

ଜହ୍ନ ମାଡିଯାଏ ପୋଖରୀରେ ଧଳା କଇଁ ପରି

ସଞ୍ଜର ନାଡରେ ଛନ୍ଦି ହୋଇଯାଏ ଯୌବନ

ଉପରେ ଦିଗ୍‌ବିଜୟୀ ତାରାର ସ୍ମୃତି

ଚେତନାରେ ଲାଲ୍ ସ୍ୱପ୍ନର ନିଦ

ସେକୁ ଅଛି ଦେହ ।'' । (ପାଢଶାଣୀ ପ୍ରସନ୍ନ - ସାପ ଗାତରେ ସକାଳ । ପୃ-୬୨) । ମନର ପୋଡାଚମ, ଧଳାଛଉ ପରି ଜହ୍ନ, ପୋଖରୀରେ ମାଡିଥିବା ଧଳାକଇଁ, ତାରାର ସ୍ମୃତି, ଲାଲ୍ ସ୍ୱପ୍ନର ନିଦ - ଏସବୁ ଗୋଟିଏ ସୂତ୍ରରେ ବାନ୍ଧି ହୋଇ ରହିଥିବା ଯୁଗ୍ମଚିତ୍ରକଳ୍ପ । ବେଳେବେଳେ କବିଙ୍କ କବିତାରେ ଚିତ୍ରକଳ୍ପ ଏକ ସୀମାବଦ୍ଧତା ଭିତରେ କବିତାର ଏକ ସ୍ଥାନରେ ଏକାଧିକ ଚିତ୍ରକଳ୍ପ ରହି ମଣିଷର ଜୀବନର ନୈରାଶ୍ୟ ଓ ଅସହାୟତାକୁ ସୂଚାଉଅଛି ।

ପ୍ରତୀକ ବସ୍ତୁ ବିଶେଷର ପ୍ରତିନିଧିତ୍ୱ କରେ । ତେଣୁ ଏହା ଏକ ଏକାର୍ଥବୋଧକ ହୋଇଥାଏ । ଦୁଇଟି ବସ୍ତୁ ମଧ୍ୟରେ ସମ୍ପର୍କ ସୂତ୍ର ସ୍ଥାପନ କରେ ପ୍ରତୀକ । ପ୍ରତୀକକୁ ସାରସ୍ୱତ ଜଗତର ଦ୍ୱିତୀୟ ସୃଷ୍ଟି କୁହାଯାଏ । ଚିନ୍ତା ଓ ଚେତନାର ରୂପ, ଗୁଣ ଭାବଗତ ସାମ୍ୟ କିମ୍ବା ବୈଷମ୍ୟକୁ ନେଇ

ପ୍ରତୀକ ଏକୀଭୂତ ହୁଏ । ଇନ୍ଦ୍ରୀୟାନୁଭବ, ଅଦୃଶ୍ୟ ସତ୍ତାକୁ ଦୃଶ୍ୟ ମାଧ୍ୟମରେ ପ୍ରକଟ କରାଯାଏ । ବାହ୍ୟରୂପ ପ୍ରତୀକ ଆକାରରେ ପ୍ରକାଶିତ ହୁଏ । ପ୍ରାଣର ଅଦୃଶ୍ୟ ଅନୁଭବ ପ୍ରତୀକାତ୍ମକ ପ୍ରତୀକ ମାଧ୍ୟମରେ ପୁରାତନର ନବୀକରଣ ହୁଏ ଅମୂର୍ତ୍ତ ଚିନ୍ତାକୁ ପ୍ରତୀକ ମୂର୍ତ୍ତ କରେ । " A symbol is nothing more than a vehicle for imagination experience. What is essential is that it should correspond to the motion evocked." (Turnel Martine - the heirs of Boudlaire. Page - 608-609.) କଳ୍ପିତ ଅନୁଭୂତିର ବାହକ ହେଉଛି ପ୍ରତୀକ । ପ୍ରତୀକାତ୍ମକ ରୂପରେ କବିତା ପାଠକର ପ୍ରାଣକୁ ଗଭୀର ଭାବରେ ପ୍ରଭାବିତ କରେ । କଳାକୁ ବିଶିଷ୍ଟ ସମାଲୋଚକ କବି ସୌରୀନ୍ଦ୍ର ବାରିକ କହିଛନ୍ତି ଜୀବନର ପ୍ରତୀକୀକରଣ । । ''ସବୁ କଳା ଜୀବନକୁ ନିଜସ୍ୱ ଭାବେ ରୂପ ଦେବାର ପ୍ରୟାସୀ । କଳା ଅନୁଭୂତିକୁ ପ୍ରତୀକାୟିତ କରେ । ତେଣୁ କଳା ଜୀବନର ନିଛକ ଅନୁକରଣ ନୁହେଁ । ଏହା ଜୀବନର ପ୍ରତୀକୀ କରଣ ।'' ( ବାରିକ ସୌରୀନ୍ଦ୍ର - ଚେତନାର ଚୌହଦୀ । ପୃ-୯୮ ) । ମଣିଷର ମନ, ଅନୁଭୂତି ପ୍ରତୀକରେ ନିହିତ ରହି ପ୍ରକାଶିତ ହେବାର ଏକ ଚିରନ୍ତନ ବ୍ୟାକୁଳତା ମଣିଷ ଭିତରେ ଥାଏ । କବିତାରେ ସାଧାରଣତଃ ଚାରି ପ୍ରକାର ପ୍ରତୀକ ଅନୁଭୂତ ହୁଏ । ଯଥା :-୧- ଚିରାଚରିତ ପ୍ରତୀକ (ଚନ୍ଦ୍ର, ପଦ୍ମ), ୨- ଅବଚେତନରୁ ସୃଷ୍ଟି ପ୍ରତୀକ (ଗଛ, ପୃଥିବୀ, ସମୁଦ୍ର) ୩-ମଣିଷର ଅନୁଭୂତି ଭିତରୁ ସୃଷ୍ଟ ଦେବଦେବୀ ପ୍ରତୀକ । ୪- ବ୍ୟକ୍ତିଗତ ପ୍ରତୀକ (ସଚ୍ଚି ରାଉତରାୟଙ୍କର ମେଲ୍‌ବୋର୍ଣ୍ଣ ନଗର, ଏଲିଅଟଙ୍କ ଲଣ୍ଡନ ପୋଲ ଇତ୍ୟାଦି) । ବ୍ୟକ୍ତିଗତ ପ୍ରତୀକ ସାର୍ବଜନୀନ ହେଲେ  କବିତା ସାର୍ଥକ ହୁଏ । ଇନ୍ଦ୍ରିୟାତୀତ ଜଗତର ଭାଷା କେବଳ ପ୍ରତୀକ ମାଧ୍ୟମରେ ପ୍ରକାଶ କରି ହୁଏ ।

ଆଧୁନିକ ଓଡିଆ କବିତାରେ କବି ସଚ୍ଚିଦାନନ୍ଦ ରାଉତରାୟଙ୍କ ଠାରୁ ଆରମ୍ଭ କରି ଗୁରୁ ପ୍ରସାଦ ମହାନ୍ତି, ରମାକାନ୍ତ ରଥ, ସୀତାକାନ୍ତ ମହାପାତ୍ର, ରାଜେନ୍ଦ୍ର ପଣ୍ଡା, ସୌଭାଗ୍ୟ ମିଶ୍ର, କମଳା କାନ୍ତ ଲେଙ୍କା, ଗିରୀବାଳା ମହାନ୍ତି, ପ୍ରତିଭା ଶତପଥୀଙ୍କଠାରୁ ଆରମ୍ଭ କରି  ପ୍ରସନ୍ନ ପାଟଶାଣୀଙ୍କ ପର୍ଯ୍ୟନ୍ତ କବିଗଣ ପ୍ରତୀକ ବ୍ୟବହାର ସାର୍ଥକ ଭାବେ ସମ୍ପାଦନ କରିପାରିଛନ୍ତି । କବି ପ୍ରସନ୍ନ ପାଟଶାଣୀ ତାଙ୍କର ବ୍ୟକ୍ତିଗତ ଜୀବନର ଭୂମିକା ଯଥା - ବିପ୍ଳବୀ, ଯୋଗୀ, ପ୍ରେମିକ, ମନ୍ତ୍ରୀ, ଶିକ୍ଷାବିତ୍ ଭାବେ ଅର୍ଜନ କରିଥିବା ଯେତେ ସବୁ ଅନୁଭୂତି ସେ ସବୁର ପ୍ରତୀକ ତାଙ୍କ କବିତାରେ ଭିନ୍ନ ଭିନ୍ନ ଭାବରେ ପ୍ରୟୋଗ କରାଯାଇ ଥିବା ଲକ୍ଷ୍ୟ କରାଯାଏ ।

ଭାରତୀୟ ଧର୍ମୀୟ ପରମ୍ପରା, ସଂସ୍କୃତି ଓ ଦର୍ଶନ ଦେବ ଦେବୀମାନଙ୍କ ଭିତରୁ କବି ତାଙ୍କର ଆଧ୍ୟାତ୍ମିକ ପ୍ରତୀକ ଗୁଡ଼ିକୁ ଗ୍ରହଣ କରିଛନ୍ତି । ଯେପରି ତାଙ୍କର ଅମରନାଥ, ଆଖି ଫୁଟି ଯାଇଥିବା ସତ୍ୟ ବାନ୍‌ଟିଏ, କିଛି ଲୁହ କିଛି ଲହୁ, ପ୍ରଭୃତି ଗ୍ରନ୍ଥରେ ଥିବା ସହସ୍ରା ଶତଦଳ ପଦ୍ମ, କୁଣ୍ଡଳିନୀ ଇଡା, ପିଙ୍ଗଳା, ସୁଷୁମ୍ନା ନାଡି, ମୂଳାଧାର ଚକ୍ର ଓ ନାଦବ୍ରହ୍ମ ଇତ୍ୟାଦିରେ ସେ ବସ୍ତୁ ଓ ଭାବର ଅଭେଦ ପରିକଳ୍ପନା କରି ପ୍ରତିକ ରଚନା କରିଛନ୍ତି ।

ବାହ୍ୟ ଜଗତର ପ୍ରକୃତି ଭିତରୁ କବି ଗ୍ରହଣ କରିଥିବା ପ୍ରତୀକ ଯଥା- ପାହାଡ - ତପସ୍ୱୀ ରୂପ ଓ ସ୍ଥିତ ପ୍ରଜ୍ଞତାର ପ୍ରତୀକ, ନଦୀ - ଜୀବନ ଧାରାର ପ୍ରତୀକ, ବନ୍ୟା - ବିପ୍ଳବ ଓ ଯୌବନର ପ୍ରତୀକ, ତାରା - ସ୍ମୃତି ଓ ଶାଶ୍ୱତାଲୋକର ପ୍ରତୀକ, ଅଗ୍ନି - ଜ୍ଞାନର ପ୍ରତୀକ, ମେଘ - ଚେତନାର ପ୍ରତୀକ, ବର୍ଷା - ସୃଜନୀ ଶକ୍ତିର ପ୍ରତୀକ ଓ ବରଗଛ ନିର୍ବାଣର ପ୍ରତୀକ ଭାବେ କବି ଗ୍ରହଣ କରିଛନ୍ତି ।

ପେଚା - ଅଶୁଭ ସଙ୍କେତର ପ୍ରତୀକ, ବାଘ - ହିଂସ୍ରତାର ପ୍ରତୀକ, ସାପ - ସାଧନା ଶକ୍ତିର ପ୍ରତୀକ, ଶଙ୍ଖ - ସୁଖ ଓ ପବିତ୍ରତାର ପ୍ରତୀକ, କଇଁଛ - ସ୍ଥିତ ପ୍ରଜ୍ଞତାର ପ୍ରତୀକ, ବୁଢିଆଣୀ ରହସ୍ୟମୟତାର ପ୍ରତୀକ, ମୂଷା - ବ୍ୟଭିଚାରୀ ଓ ଧନିକ ଶ୍ରେଣୀର ପ୍ରତୀକ ଏଣ୍ଡୁଅ - ଦ୍ୱୈତ ଭୂମିକାରେ ଥିବା ମଣିଷର ପ୍ରତୀକ ଭାବେ କବି ଗ୍ରହଣ କରିଛନ୍ତି ।

ବସ୍ତୁ ଭିତରେ ପ୍ରତୀକାତ୍ମକ ପ୍ରତ୍ୟୟ ଥାଏ । ଆମେ ଦୈନନ୍ଦିନ ଜୀବନରେ ବ୍ୟବହାର କରୁଥିବା ପଦାର୍ଥ ମଧ୍ୟରେ ଯେଉଁ ବୃହତ୍ତମ ସତ୍ତା ଜୀବନଗତ ବ୍ୟଞ୍ଜନା ସୃଷ୍ଟି କରେ ତାହାକୁ କବିତାରେ ପ୍ରତୀକ ଭାବେ ନିଆଯାଇଛି । ବସ୍ତୁର ଗୁଣ ଉପରେ ଗୁରୁତ୍ୱ ଦିଆଯାଏ, ବସ୍ତୁର ବସ୍ତୁତ୍ୱ ଉପରେ ନୁହେଁ । ଏ ପ୍ରକାର ପ୍ରତୀକ ଏକ ବ୍ୟାପକ ମାନସିକ ପ୍ରତ୍ୟୟ ନେଇ ପାଠକ ପାଖରେ ପହଞ୍ଚେ । ଯେପରି, ଦର୍ପଣ - ମନର ପ୍ରତୀକ, ଦାଆ - ମାର୍କସୀୟ ଚେତନାର ପ୍ରତୀକ, ତାତିଲା ତାଉଆ - କ୍ଷୁଧାର ପ୍ରତୀକ, କାଚ ଜାର୍ - ଧନତନ୍ତ୍ରର ପ୍ରତୀକ, ସୋଡା ବୋତଲ - ବିପ୍ଳବୀର ପ୍ରତୀକ, ଭଙ୍ଗାପିକ ଦାନୀ - ଦଳିତ ଜୀବନର ପ୍ରତୀକ ଓ ପେପରୱେଟ୍ - ଚେତାବନୀର ପ୍ରତୀକ ଭାବେ ନେଇଛନ୍ତି ।

କବିତାରେ ମିଥ୍ ପ୍ରୟୋଗ ଏକ ଆଧୁନିକ କାବ୍ୟ ଶୈଳୀ । ମିଥ୍ର ଆଭିଧାନିକ ସଂଜ୍ଞା ଓ ସ୍ୱରୂପ ବିଂଶ ଶତାବ୍ଦୀର ସମାଲୋଚକ ମାନଙ୍କ ଦୃଷ୍ଟିରେ ପରିବର୍ତ୍ତିତ ହୋଇଥିବା ଲକ୍ଷ୍ୟ । କରାଯାଏ । ପ୍ରାଚୀନ ଯୁଗରେ ମିଥ୍କୁ ଲୋକମାନେ ସତ୍ୟ ଇତିହାସ ଓ ପବିତ୍ର କାହାଣୀ ଭାବରେ ବିଚାର କରୁଥିଲେ । " They have accpeted it as it was understood in the arachy society where on the contrary 'myth' means true story that is must possession. Because it is sacred example significant." (Trask. W. R. (Translate) - Myth and reality. Page - 1.)

ବିଂଶ ଶତାବ୍ଦୀରେ ମିଥ୍ର ସ୍ୱରୂପକୁ ବ୍ୟାପକ ଓ ବହୁଦିଗରୁ ଆଲୋକପାତ କରାଯାଇଛି । ବିଶିଷ୍ଟ ସମାଲୋଚକ ଡକ୍ଟର ଗିରୀଶ ମିଶ୍ରଙ୍କ ମତରେ - ‘‘ଏହାର ମୁଖ୍ୟ କାରଣ ହେଲା, ପ୍ରତ୍ନତାତ୍ତ୍ୱିକ ଅଧ୍ୟୟନରେ ବୈଜ୍ଞାନିକ ଅଧ୍ୟୟନ ଏବଂ ମନସ୍ତାତ୍ତ୍ୱିକ ବିଶ୍ଳେଷଣ ପରିପ୍ରେକ୍ଷୀରେ ମିଥ୍ର ଅଧ୍ୟୟନ ।’’ ( ମିଶ୍ର ଗିରୀଶ - ଆଧୁନିକ ଓଡିଆ କବିତାରେ ମିଥ୍ ପ୍ରସଙ୍ଗ - ପୃ-୩୦) ।

ପାଶ୍ଚାତ୍ୟ ଆଲୋଚକମାନଙ୍କ ଦୃଷ୍ଟିରେ ଈଶ୍ୱରଙ୍କ କାହାଣୀ, ପ୍ରାଚୀନ ମଣିଷ ତଥା ସାମାଜିକ ଚଳଣିକୁ ନେଇ ମିଥ୍ ଗତିଶୀଳ । ପ୍ରାଚୀନ ଗ୍ରୀକ୍ମାନେ ମିଥ୍କୁ ଆଧିଭୌତିକ ପରମ୍ପରା ବୋଲି କହୁଥିଲେ । " Myth creates a world of its own with accordance with spiritual principle." Thomas A Sebeok - Myth a symposium Bibliographical and special series of the American Folk-lore society. (vol-V) . P-3.)

କବିତା ଓ ମିଥୋଲୋଜିର ସମ୍ପର୍କ ଅତି ପ୍ରାଚୀନ । ବିସ୍ମୟ ବୋଧରୁ ଏ ଦୁହିଁଙ୍କର ସୃଷ୍ଟି । ମିଥ୍କୁ ଆଧାର କରି କବିବର ରାଧାନାଥ ରାୟ ଓଡିଆର ପ୍ରଚଳିତ କିମ୍ବଦନ୍ତୀକୁ କବିତାରେ ଆରୋପ କରି ଉତ୍ତର ସୂରୀମାନଙ୍କ ପାଇଁ ମାର୍ଗ ପ୍ରଦର୍ଶନ କରିଛନ୍ତି । ଯେତେବେଳେ ପାଶ୍ଚାତ୍ୟ କବିତାରେ ଆବେଗଧର୍ମୀଭାବେ ମିଥ୍ର ପ୍ରୟୋଗ କରାଗଲା, ସେତେବେଳେ ଅନୁରୂପ ଭାବେ ଓଡିଆ କବିତା

କ୍ଷେତ୍ରରେ କବି ସଚ୍ଚିଦାନନ୍ଦ ରାଉତରାୟ ତାଙ୍କର ''ପାଣ୍ଡୁଲିପି'' ଗ୍ରନ୍ଥରେ ମିଥ୍‌ର ସେହି ଧାରାକୁ ଉପସ୍ଥାପନ କଲେ । ପରବର୍ତ୍ତୀ ସମୟରେ ଗୁରୁ ପ୍ରସାଦ ମହାନ୍ତି, ସୀତାକାନ୍ତ ମହାପାତ୍ର, ରମାକାନ୍ତ ରଥ, ବେଣୁଧର ରାଉତ, ସୌଭାଗ୍ୟ ମିଶ୍ର, ରାଜେନ୍ଦ୍ର ପଣ୍ଡା, ପ୍ରସନ୍ନ ପାଟଶାଣୀ ପ୍ରମୁଖ କବିମାନେ ମିଥ୍‌କୁ କବିତାର ଏକ ବିଶିଷ୍ଟ ଅଙ୍ଗଭାବେ ଗ୍ରହଣ କରିନେଇ ଓଡିଆ କବିତାରେ ଏକ ନୂତନ ଦିଗନ୍ତର ସନ୍ଧାନ ଦେଇଛନ୍ତି ।

ଆଧୁନିକ ମଣିଷର ପାରସ୍ପରିକ ସନ୍ଦେହ, ଅବିଶ୍ୱାସ ଓ ବ୍ୟକ୍ତି କୈନ୍ଦ୍ରିକ ଚିନ୍ତାଧାରା ଯୋଗୁ ଭାରତୀୟ ପାରିବାରିକ ଚିନ୍ତାଧାରା ଛିନ୍ନ-ବିଚ୍ଛିନ୍ନ ହୋଇଛି । ଆଧୁନିକ ମଣିଷ ଏକ ଛଦ୍ମ ବେଶରେ ପରିଚିତ ହେବାକୁ ଚେଷ୍ଟା କରୁଛି । ଫଳରେ ମଣିଷ ଅନ୍ତର୍ମୁଖୀ ହୋଇଛି । ଜୀବନର ମୂଲ୍ୟବୋଧ ପ୍ରତି ପୋଷଣ କରୁଛି ନେତି ବାଚକ ଦୃଷ୍ଟିଭଙ୍ଗୀ । ଆଜିର କାବ୍ୟପୁରୁଷ ନିଜେ କିଛି କରିପାରୁନି । କବି ମନର ଦ୍ୱନ୍ଦ୍ୱ ଓ ବିଭିନ୍ନ ସ୍ତର ଏକକ ବ୍ୟକ୍ତି କୈନ୍ଦ୍ରିକ ସ୍ଥିତି ଭିତରେ ପ୍ରକାଶ କରି ହେଉନାହିଁ । ତେଣୁ ସେ ତା'ର ବକ୍ତବ୍ୟକୁ ପ୍ରକାଶ କରିବା ପାଇଁ କବିତାରେ ବିଭିନ୍ନ ପରୀକ୍ଷା ନିରୀକ୍ଷା କରୁଛି । ଏହି ପ୍ରସଙ୍ଗରେ [illegible] କବି ପାଇଁ ମିଥ୍‌ର ବ୍ୟବ[illegible]ବାର୍ଯ୍ୟ ହୋଇ ପଡିଛି ।

ଏହି ପରିପ୍ରେକ୍ଷୀରେ କବି ପ୍ରସନ୍ନ ପାଟଶାଣୀଙ୍କର ଏକ କାବ୍ୟମିଥ୍‌କୁ ବିଚାରକୁ ନିଆଯାଇପାରେ ।

''ସମୁଦ୍ର ମନ୍ଥରେ ଜୀବନ ହେଉ ରାଧା /

କୃଷ୍ଣ ହେଉ ମୃତ୍ୟୁ/

ସଂଗ୍ରାମ ହେଉ କଦମ୍ବ ଗଛ ।'' ( ପାଟଶାଣୀ ପ୍ରସନ୍ନ - ''ଅମାବାସ୍ୟା ବସିଛି ଜହ୍ନର ପିଠିରେ ।'' ପୃ-୪୪ ) ।

ସଂଗ୍ରାମର କଦମ୍ବ ଗଛ ମୂଳେ ଜୀବନ ରାଧା ଓ କୃଷ୍ଣ ହେଉଛି ମୃତ୍ୟୁ, ଏହାହିଁ ଜୀବନର ଲକ୍ଷ୍ୟ । ଏହି ମିଥ୍‌ଟି ଜୀବନର ସର୍ବଶ୍ରେଷ୍ଠ ସାର୍ଥକତାକୁ ପରିବ୍ୟାପ୍ତ କରି ଦେଇଛି । କବିଙ୍କର ଆଧ୍ୟାତ୍ମିକ ଜୀବନ ଜିଜ୍ଞାସା ଏହି ରାଧାକୃଷ୍ଣ ମିଥ୍ ମାଧ୍ୟମରେ ପରିପ୍ରକାଶ ଲାଭ କରିଛି ।

କବିଙ୍କର ''ଆଉ ଜଣେ ଧୃତରାଷ୍ଟ୍ର'' କବିତାଟି ଏକ ସାର୍ଥକ ମିଥ୍ ଧର୍ମୀ କବିତା । ଏଥିରେ ପୁରାଣ ଯୁଗର ଗାନ୍ଧାରୀ ଓ ଧୃତରାଷ୍ଟ୍ର ମଧ୍ୟରେ ଥିବା ତ୍ୟାଗପୂତ ଦାମ୍ପତ୍ୟ ପ୍ରେମଭାବକୁ କବି ସାମ୍ପ୍ରତିକ ଦାମ୍ପତ୍ୟ ପ୍ରେମ ଭିତରକୁ ଟାଣି ଆଣିଛନ୍ତି ।

''ମୋ ଆଖିରେ କଷ୍ଟ ହେଲେ

ତୁ ଦଳି ପକାଉଛୁ ତୋ'ଆଖି

ଖୁଣ୍ଟ ବାଡାରେ ମୁଁ ଝୁଣ୍ଟି ପଡିଲେ

ରକ୍ତ ଝରୁଛି ତୋ' ପାଦରେ ।

+ + +

ମୁଁ ତ ଅନ୍ଧ ଧୃତରାଷ୍ଟ୍ର

ତୁ ବି ହୋଇଯା ଗାନ୍ଧାରୀ

ମୁଁ ତ ଅନ୍ଧ ଧୃତରାଷ୍ଟ୍ର

ତୁ ବି ହୋଇଯା ଗାନ୍ଧାରୀ ।''(ପାଟଶାଣୀ ପ୍ରସନ୍ନ- 'ଦେଖାହେଲେ କହିବି ସେ କଥା'- ପୃଷ୍ଠା-୬୮) ।

ସେହିପରି 'ଦେଖାହେଲେ କହିବି ସେ କଥା' କବିତା ଗ୍ରନ୍ଥରେ 'ଅନନ୍ତ ଶୟନ', 'ମୁଁ ଆଜି ଯୀଶୁ ପାଲଟିଛି' ପ୍ରଭୃତି ଏକ ଏକ ସାର୍ଥକ ମିଥ୍‌ଧର୍ମୀ କବିତା । 'ଆଖି ଫୁଟିଯାଇଥିବା ସତ୍ୟବାନଟିଏ' କବିତା ଗ୍ରନ୍ଥରୁ ଆଉ ଏକ ମିଥକୁ ଏଠାରେ ଉଦ୍ଧାର କରାଯାଇପାରେ । ଯେପରି-

'ଓହ୍ଲାଇ ଆସୁଛି ସାବିତ୍ରୀ

ହାତରେ ତା' ମାଟିର ଅମୃତଫଳ

ଜୀବନ ଆଉ ପାଲଟିବନି ମୃତ୍ୟୁ

ମଶାଣି ଆଉ ଅନ୍ଧାରର ଚିତ୍ର । (ପାଟଶାଣୀ ପ୍ରସନ୍ନ- ଆଖି ଫୁଟିଯାଇଥିବା ସତ୍ୟବାନଟିଏ । ପୃଷ୍ଠା-୭ )

ସାବିତ୍ରୀ ମିଥ୍ ମାଧ୍ୟମରେ କବି ମଣିଷ ପାଇଁ ଅମରତ୍ୱର ସନ୍ଧାନ କରିଛନ୍ତି । ଜୀବନରୁ ମୃତ୍ୟୁର ଭୟ ଆଶଙ୍କାକୁ ଦୂରେଇ ଦେଇ, ଅମୃତ ପ୍ରଦାନ କରିଛନ୍ତି ମଣିଷ ପାଇଁ ।

ବାର୍ତ୍ତାଶୈଳୀ କବିର ଅନ୍ତର୍ଦୃଷ୍ଟିକୁ ସ୍ୱତନ୍ତ୍ରଭାବରେ ସୂଚାଇଥାଏ । ସାମୂହିକ ଅଭିରୁଚି ଭିତରେ ଏକ ସାର୍ବଜନୀନ ସତ୍ୟ ପ୍ରକଟିତ ହୁଏ । ଏଥିରେ ନାଟକୀୟତା ଥାଏ । ଅନୁଶୀଳନାତ୍ମକ ଓ ବ୍ୟଙ୍ଗାତ୍ମକ ଶୈଳୀ, ସମାଜ ଓ ଏହାର ସମାଧାନର ସୂତ୍ର କବିତାରେ ପ୍ରକାଶ ପାଏ । ଏ ପ୍ରକାର ଶୈଳୀ ବ୍ୟବହାରରେ କବି ପ୍ରସନ୍ନ ପାଟଶାଣୀ ସ୍ୱତନ୍ତ୍ର । ବାର୍ତ୍ତା ଶୈଳୀର ବହୁଳ ବ୍ୟବହାର କବିଙ୍କର 'ଶହେ ଏକ କବିତା ' 'କିଛି ଲୁହ ଓ କିଛି ଲହୁ' କବିତା ପୁସ୍ତକରେ ଲକ୍ଷ୍ୟ କରାଯାଏ । ''କିଛି ଲୁହ ଓ କିଛି ଲହୁ ପୁସ୍ତକରେ ଥିବା କବିତା ''ଗୁଡ଼ିକରେ କବିଙ୍କର ଦୈନନ୍ଦିନ ଜୀବନର କେତେକ ମେସେଜ୍ ବିଭିନ୍ନ ଭାବଧାରାରେ ପ୍ରକାଶିତ ।

''ଈଶ୍ୱର !

ତମେ ସେହି ଦିଗନ୍ତରେ ଅଛ

ଯେଉଁଠାରେ ଆଲୋକର ଶିଖାନୁହେଁ

ବାଜୁଥାଏ କାନେ ତୁମ ଅନ୍ଧର ଜଣାଣ

ଏତିକି ମୀନତି ପ୍ରଭୁ

ଅନ୍ଧଟିଏ କରି ମୋତେ

ଭକ୍ତଟିଏ କରି ମୋତେ ରଖ ଚିରଦିନ ।''(ପାଟଶାଣୀ ପ୍ରସନ୍ନ- 'କିଛିଲୁହ କିଛିଲହୁ । ପୃଷ୍ଠା-୧ ) ।

ଈଶ୍ୱରଙ୍କ ପ୍ରତି କବିଙ୍କର ଏହା ଏକ ବାର୍ତ୍ତା । କବି ଅନ୍ଧ ହୋଇଯିବା ପରେ ଭକ୍ତିଭାବରେ ବିଭୋର ହୋଇ ପଡିଛନ୍ତି । ଅନୁଭବ କରିଛନ୍ତି ଅନ୍ଧଆଖିରେ ଲାଖିଥିବା ଅନ୍ଧାରକୁ । ଘନ କୃଷ୍ଣ ଅନ୍ଧାର ଭିତରେ ଅନ୍ଧ ହୋଇ ରହିବାକୁ ସେ ନିବେଦନ କରିଛନ୍ତି ଈଶ୍ୱରଙ୍କୁ । କବି ଅନୁଭବ କରିଛନ୍ତି - ସତେ ଯେପରି ଈଶ୍ୱରଙ୍କ ସାନ୍ନିଧ୍ୟ ଲାଭ କରିବା ପାଇଁ ସେ ଅନ୍ଧ ହୋଇଛନ୍ତି । ମନର ପୂର୍ଣ୍ଣଭାବକୁ ପ୍ରକଟ କରିବା ପାଇଁ ବାର୍ତ୍ତାଶୈଳୀ କବିର ଏକ ଉତ୍କୃଷ୍ଟ ମାଧ୍ୟମ ହୋଇ କବିତାରେ ପ୍ରକାଶିତ ହୋଇଛି ।

କବିତାରେ ଗୀତଧର୍ମିତାର ନାମାନ୍ତର ହେଉଛି ସାଙ୍ଗୀତିକତା । ସଙ୍ଗୀତ ମନକୁ ଆନନ୍ଦ ମୁଖର କରେ । ମାନବର ସ୍ଥୂଳଚେତନା ସୂକ୍ଷ୍ମଚେତନା ସହ ସମତାଳରେ ଗତି କରେ । କବିତାରୁ ଏକ ନୈସର୍ଗିକ ଅନୁଭୂତି ସୃଷ୍ଟି ହୁଏ । ଏକ ଆବେଗିକ ସଂପୃକ୍ତି ମଧ୍ୟରେ କବିତାର ବୌଦ୍ଧିକ ସତ୍ତାକୁ ଉପଲବ୍ଧି କରିହୁଏ । ପାଠକର ଅନୁଶୀଳନାତ୍ମକ ମସ୍ତିଷ୍କ ସହିତ ଆବେଗାତ୍ମକ ହୃଦୟକୁ ସଂଯୁକ୍ତ କରେ ସଙ୍ଗୀତ-ଧର୍ମ । ଫଳରେ ପାଠକର ମାନସିକ ସୌନ୍ଦର୍ଯ୍ୟ ବହୁଗୁଣରେ ପରିବର୍ଦ୍ଧିତ ହୁଏ । ଗୀତ ଧର୍ମିତାଯୋଗୁଁ ପାଠକ କାବ୍ୟାନନ୍ଦ ଲାଭ କରେ ।

ଆଧୁନିକ କବିତାର ଅନ୍ତଃସ୍ୱର ହେଉଛି ଗୀତିଧର୍ମିତା । ଅନ୍ତର୍ନିହିତ ଛନ୍ଦ ଶକ୍ତି ଦ୍ୱାରା କାବ୍ୟ ପଂକ୍ତିରେ ଶବ୍ଦ ପରସ୍ପର ବାନ୍ଧି ହୋଇ ରୁହନ୍ତି । ଗୀତିଧର୍ମିତା ଯୋଗୁଁ କବି ପାଠକ ସହ ସହଜରେ ଭାବ ବିନିମୟ କରିପାରେ ।

ପ୍ରଥମେ ସଚ୍ଚିଦାନନ୍ଦ ରାଉତରାୟ ଓଡିଆ କବିତାରେ ଗତାନୁଗତିକ ମେଦଯୁକ୍ତ କବିତା ପରିବର୍ତ୍ତେ ମୁକ୍ତଛନ୍ଦ, ଗଦ୍ୟଛନ୍ଦ ବା ବାକ୍‌ଛନ୍ଦ ପ୍ରୟୋଗ ଆରମ୍ଭ କରିଥିଲେ । ପରବର୍ତ୍ତୀକାଳରେ ଏହି ଶୈଳୀକୁ ବହୁ ତରୁଣ କବି ଅନୁସରଣ କରିଥିଲେ । ତେଣୁ ଆଧୁନିକ କବିତାରୁ ଗୀତି ମୟତା ହ୍ରାସ ପାଇଲା । କବିତାର ଗୀତିଧର୍ମିତା ଅପେକ୍ଷା ଚିତ୍ରଧର୍ମିତା ଉପରେ ଗୁରୁତ୍ୱ ପ୍ରଦାନ କରାଯାଇଥିଲା । ଏଇବେଳେ କେତେକ ତରୁଣ କବି ଲକ୍ଷ୍ୟ କରିଥିଲେ ଯେ ପାଉଣ୍ଡ ଓ ଏଲିଅଟଙ୍କ ପ୍ରଦର୍ଶିତ କାବ୍ୟମାର୍ଗରେ ସୃଷ୍ଟି ହୋଇଥିବା ଆଧୁନିକ ଓଡିଆ କବିତା ତା'ର ପାଠକୀୟତା ହରାଇ ବସୁଛି । ତେଣୁ ସେମାନେ ପ୍ରାଚ୍ୟ ଓ ପାଶ୍ଚାତ୍ୟ ଉଭୟବିଧ କାବ୍ୟଧାରାକୁ ସମନ୍ୱୟ କରି ଏକ ନୂତନ କାବ୍ୟଶୈଳୀ ନିର୍ମାଣ କଲେ । ଏହି ଶୈଳୀରେ ସାଙ୍ଗୀତିକତା ଥିଲା ଏକ ମୁଖ୍ୟ ବିଭବ । ଏହି ତରୁଣ କବିମାନଙ୍କ ମଧ୍ୟରୁ ଅନନ୍ତ ପଟ୍ଟନାୟକ, ମନମୋହନ ମିଶ୍ର, ରବି ସିଂ, ହରପ୍ରସାଦ ପରିଚ୍ଛାପଟ୍ଟନାୟକ ଓ ପ୍ରସନ୍ନ ପାଟଶାଣୀ ପ୍ରଭୃତି ଥିଲେ ଅନ୍ୟତମ । ଏହି ମର୍ମରେ ଆଲୋଚକ ଶ୍ରୀ ଶରତ ଚନ୍ଦ୍ର ପ୍ରଧାନଙ୍କ ମତ ଉଦ୍ଧାର କରାଯାଇପାରେ । ''ପାଉଣ୍ଡ ଓ ଏଲିଅଟ୍ ପ୍ରଦର୍ଶିତ କାବ୍ୟମାର୍ଗ ଛାଡି ଆଉ କେତେକ ଆଧୁନିକ ଓଡିଆ କବି ଉଭୟବିଧ କାବ୍ୟଧାରା ସମନ୍ୱୟରେ ଏକ ନୂତନ କାବ୍ୟସରଣୀ ଦେଖିପାରିଛନ୍ତି । ଉତ୍ତର ଷାଠିଏରେ ପୃଥିବୀର ବିଭିନ୍ନ ଦେଶର କବିମାନେ ପୁଣି - ଗୀତିମୟତାର କୁଞ୍ଜବନକୁ ଫେରିବାକୁ ଆରମ୍ଭ କଲେଣି । ଆମ ଓଡିଆ ସାହିତ୍ୟରେ ଯେଉଁ କବିମାନେ ବିଂଶ ଶତକର ଷଷ୍ଠ ଓ ସପ୍ତମ ଦଶନ୍ଧିରେ କବିତାରେ ଗଦ୍ୟଧର୍ମିତାକୁ କାବ୍ୟର ଏକମାତ୍ର ବୈଶିଷ୍ଟ୍ୟ ବୋଲି ମନେ କରୁଥିଲେ । ସେମାନେ ଗୀତିଧର୍ମିତା ପ୍ରତି ପ୍ରବଣତା ପ୍ରଦର୍ଶନ କରିବା ଏକ ଶୁଭ ଲକ୍ଷଣ । ଆଲୋଚ୍ୟ କାଳରେ ଆଧୁନିକ ଓଡିଆ କବିତାରେ ସାମ୍ୟବାଦୀ ସ୍ୱର, ଜୀବନାଭିମୁଖୀ ସ୍ୱର ଓ ଅବକ୍ଷୟ ସମାଜର ଧ୍ୱନି ବିଶେଷଭାବେ ଶ୍ରୁତ ହୁଏ । ( ରାୟ ଅପୂର୍ବ ରଞ୍ଜନ (ସମ୍ପାଦକ)- ଆଧୁନିକ କବିତାର ଦିଗ୍‌ଦର୍ଶନ । ପୃଷ୍ଠା-୧୦୯) ।

ଏହି ସମୟରେ କବି ପ୍ରସନ୍ନ ପାଟଣାଣୀଙ୍କର ସାମ୍ୟବାଦୀ ଚିନ୍ତା ସମ୍ବଳିତ ଗୀତିମୟ କାବ୍ୟସ୍ୱର ପାଠକର ଚିତ୍ତ ଆକର୍ଷଣ କରିଥିଲା । ସାମ୍ୟବାଦୀ ଚେତନାକୁ ପାଠକର ନିକଟବର୍ତ୍ତୀ କରିବା ପାଇଁ ସାଙ୍ଗୀତିକତା ଥିଲା ତାଙ୍କ ପାଇଁ ଏକ କାବ୍ୟକୌଶଳ । କବିତାରେ ପ୍ରତିଫଳିତ ହେଉଥିବା ଅବକ୍ଷୟ ଜୀବନର ସ୍ୱର ଭଙ୍ଗାସ୍ୱପ୍ନ ସାଙ୍ଗୀତିକତାର ସ୍ପର୍ଶରେ ଲାବଣ୍ୟମୟ ତଥା ହୃଦୟସ୍ପର୍ଶୀ ହୋଇପାରିଲା । କବି ପାଟଣାଣୀଙ୍କର 'ଲେନିନ' ଗ୍ରନ୍ଥରୁ କେତେକ ଉଦାହରଣକୁ ଲକ୍ଷ୍ୟ କଲେ ତାଙ୍କ କବିତାର ଗୀତି-ଧର୍ମିତା ସମ୍ପର୍କରେ ସ୍ପଷ୍ଟ ହେବ ।

''ଲେନିନ ତ ନୁହଁ କେବେ ତ୍ୟକ୍ତ ଦୁର୍ଗମାଳା,
ଲେନିନ୍ ତ ନୁହେଁ କେବେ ଜରାଜୀର୍ଣ୍ଣଶୀଳା
ଲେନିନ୍‌ର ଜନ୍ମ ଏଠି ଭାଙ୍ଗିବାକୁ ପୁଞ୍ଜି ସୌଧମାଳା ।
ମୋଡିବାକୁ ଶୋଷଣର ଗଳା ।'' ( ପାଟଣାଣୀ ପ୍ରସନ୍ନ - ଲେନିନ୍ । ପୃଷ୍ଠା-୭) ।

ଏଥିରେ କବି ସାମ୍ୟବାଦୀ ଚେତନାକୁ ଗୀତିମୟ କରି ପାଠକର ନିକଟ ବର୍ତ୍ତୀ କରିବାକୁ ପ୍ରଯତ୍ନ କରିଛନ୍ତି ।

''ଲେନିନ ଲେନିନ୍ ଏକ ଦୂର ଗାଆଁ ନଈ
ସବୁଜ ପ୍ରାନ୍ତର ଦେହେ ଧୀରେ ଯାଏ ବହି
ନିର୍ଭୟରେ ଚରେ କାହା ଦୁଧିଆଳୀ ଗାଈ
ପାରି ହୋଇ ପିଚୁ ରାସ୍ତା ପାଖ ରେଳପଇ ।''(ପାଟଣାଣୀ ପ୍ରସନ୍ନ- ଲେନିନ୍ । ପୃ-୬)।

ଏହି ଧରଣର କବିତାରେ ଜୀବନଧର୍ମୀ ସ୍ୱର ପ୍ରାଣକୁ ଅଭିଭୂତ କରେ । ଏହି ପରି ଭାବେ କେବଳ ଲେନିନ୍ ନୁହେଁ, ତାଙ୍କର ରକ୍ତପଥ ଓ ଅଗ୍ନିଯୁଗ-ଆଦି ସାମ୍ୟବାଦୀ କାବ୍ୟଗ୍ରନ୍ଥରେ ସାଙ୍ଗୀତିକତା ଥିବାରୁ ସେଗୁଡ଼ିକ ଓଡିଶାର ପାଠକ ମହଲରେ ବହୁଳ ଜନପ୍ରିୟତା ଲାଭ କରିଛି ।

କବିଙ୍କର ୧୯୯୨ ମସିହା ଓଡିଶା ସାହିତ୍ୟ ଏକାଡେମୀ ପୁରସ୍କାର ପ୍ରାପ୍ତ ଅନ୍ୟ ଏକ କବିତା ଗ୍ରନ୍ଥ ''ଦେଖାହେଲେ କହିବି ସେ କଥା '' ରୁ ଏକ କବିତାକୁ ଏଠାରେ ନମୁନା ସ୍ୱରୂପ ଉଲ୍ଲେଖ କରାଯାଇପାରେ ।

''ଥରଟିଏ ପାଇଁ ଆଖି ଖୋଲିଦିଅ
ଦେଖିବାକୁ ଚାହେଁ ମୋ ପ୍ରିୟା ନଈ
କିପରି ପ୍ରିୟାର ଟୋପାଏ ଲୁହରେ
ଫୁଟୁଚି ସେଠାରେ ଗୋଟିଏ କଇଁ ।
ଦେଖିବାକୁ ଚାହେଁ ନୀଳ ପରବତ
ଦେଖିବାକୁ ଚାହେଁ ଦୂର ଜଙ୍ଗଲ
ମୋ' ଆଖି ପରି ଚାରିପଟେ ତା'ର

କିପରି ଘେରିଚି ଘନ ଅନ୍ଧାର

ଆକାଶର ମଝି ଆଙ୍ଗୁଳି ଭିତରେ

ସୂର୍ଯ୍ୟର ମୁଦି କେମିତି ପଶେ

ଦେଖିବାକୁ ଚାହେଁ ଆଲୋକର ପାଦ

ସାଗରର ଢେଉ କିପରି ଦିଶେ ।

ନାଲି ନେଳି ରଙ୍ଗଧରି ଆସେ ଋତୁ

ଛଅ ବେଶ ଛଅ ପୋଷାକ ତା'ର

ଆଖି ଥିଲେ ସିନା ସେସବୁ ଦେଖନ୍ତି

କେମିତି ଦିଶୁଚି ସଞ୍ଜ ସକାଳ ।

ସବୁଜ ଘାସରେ ଲାଗି ରହିଥିବ

ଟୋପା ଟୋପା କେତେ କାକର ମୋତି

ସେ କାକର ମୋର ବୁକୁର ଅକ୍ଷର

ଇଚ୍ଛା ହୁଏ ତାକୁ ପଢୁଥାଆନ୍ତି ।

ଥରଟିଏ ମୋର ଆଖି ଖୋଲ ପ୍ରଭୁ

ପ୍ରିୟତମା ମୁହଁ ଦେଖିବା ପାଇଁ

ବେଦନାର ମେଘ ଭିତରୁ ସେ ମୁହଁ

ଉଠିଆସେ ନୀଳ ଜହ୍ନଟେ ହୋଇ ।

ପ୍ରିୟା ପିନ୍ଧିଥିବ ସୁନେଲୀ ଘାଗରା

ଘାଗରାରେ ଥିବ କାଚ ପଥର

ସେହି କାଚରେ ମୋ ମୁହଁ ଦେଖୁଥାନ୍ତି

ହସୁଥାନ୍ତା ପ୍ରିୟା ଥରକୁ ଥର ।

ଥରଟିଏ ଆଖି ଖୋଲି ଦିଅ ପ୍ରଭୁ

ତୁମ ପାଇଁ ନୁହେଁ ଏ କଥା ବଡ

ଦେଖନ୍ତି ପ୍ରିୟାକୁ ଚୁପଚାପ୍ ହୋଇ

ଦେଖନ୍ତି ସତେ ସେ କେତେ ସୁନ୍ଦର ।'' (ପାଟଶାଣୀ ପ୍ରସନ୍ନ- ''ଦେଖାହେଲେ କହିବି ସେ କଥା '' ପୃଷ୍ଠା-୪-୫) ।

ଏହି କବିତାଟି ଏହାର ସାଙ୍ଗୀତିକତା ଯୋଗୁଁ ହୃଦୟସ୍ପର୍ଶୀ ହୋଇପାରିଛି । ପ୍ରିୟାପ୍ରତି ଥିବା କବିର ପ୍ରେମାନୁରାଗ ଆବେଗାତ୍ମକ ଶୈଳୀରେ ପ୍ରତିଫଳିତ । ଏହା ପ୍ରତ୍ୟେକ ସ୍ତରର ପାଠକ ହୃଦୟକୁ ସ୍ପର୍ଶ କରିବା ପାଇଁ ସମର୍ଥ । ଏହା ବ୍ୟତୀତ 'ଦେଖାହେଲେ କହିବି ସେ କଥା' କବିତା ଗ୍ରନ୍ଥର ପ୍ରତ୍ୟେକ କବିତା ଭିତରେ ଗୀତି-ଧର୍ମିତା ରକ୍ଷା କରିଛନ୍ତି କବି । କବିଙ୍କର ଅନ୍ୟାନ୍ୟ ଗଦ୍ୟ-କବିତା ଗ୍ରନ୍ଥରେ କାବ୍ୟ ପଂକ୍ତିରେ ଅନ୍ତର୍ଛନ୍ଦ ଶବ୍ଦ ସମୂହକୁ ନିବିଡ ବନ୍ଧନରେ ବାନ୍ଧି ରଖିଥିବା ଦେଖାଯାଏ । ଫଳରେ ତାହା ସବୁ ହୃଦୟ ଉଲ୍ଲାସକ ଓ କର୍ଣ୍ଣରୋଚକ ହୋଇପାରିଛି । ଡକ୍ଟର ଶରତଚନ୍ଦ୍ର ପ୍ରଧାନଙ୍କ ମତରେ 'ଆଧୁନିକ କବିତାରେ ଗୀତି-ଧର୍ମିତା ଏକ କାବ୍ୟବିଳାସ ନୁହେଁ, ପରନ୍ତୁ କବି ସତ୍ତାର ପାଠକ ଗୋଷ୍ଠୀ ସହ ଏକାତ୍ମ ହେବାର ଏକ ପ୍ରକୃଷ୍ଟ ମାର୍ଗ ।'' ( ରାୟ ଅପୂର୍ବ ରଞ୍ଜନ (ସଂପାଦକ) - ଆଧୁନିକ କବିତାର ଦିଗ ଦର୍ଶନ । ପୃଷ୍ଠା - ୧୦୩ ) ତେଣୁ କବି ପାଢଶାଣୀଙ୍କ କବିତାରେ ଗୀତି-ଧର୍ମିତା ତାଙ୍କ କାବ୍ୟ ସାଧନାର ପରିପନ୍ଥୀ ହୋଇ ପାରିଥିବାରୁ ସେ ଓଡିଶାରୁ ବିପୁଳ ପାଠକୀୟତା ହାସଲ କରିପାରିଛନ୍ତି । ଏପରିକି ଓଡିଶାର ଗାଁ ଗହଳିରେ କବି ପାଢଶାଣୀ ପ୍ରତିଷ୍ଠା ଲାଭ କରିଛନ୍ତି ।

ପରିଶେଷରେ କବି ଶ୍ରୀଯୁକ୍ତ ପ୍ରସନ୍ନ ପାଢଶାଣୀଙ୍କ କବିତାର ଆଙ୍ଗିକ ଶିଳ୍ପାନୁଶୀଳନରୁ ଜଣାଯାଏ ଯେ, ସେ ତାଙ୍କ କାବ୍ୟ ରଚନାରେ ଆଧୁନିକ କବିତାର ସମସ୍ତ ଶିଳ୍ପବିଧିକୁ ପ୍ରୟୋଗ କରିଛନ୍ତି । ତାଙ୍କ ରଚନା ସମୟ, ପରିବେଶ ଓ ପାଠକୀୟ ରୁଚିକୁ ଆଖି ଆଗରେ ରଖି ତାଙ୍କର କାବ୍ୟଶିଳ୍ପ ବିବର୍ତ୍ତିତ ହୋଇଛି । ଆଧୁନିକ ଓଡିଆ କବିତା ସାଧାରଣ ପାଠକୀୟତା ହରାଇ ବସୁଥିବା ବେଳେ ସେ ତାଙ୍କ କବିତାରେ ଗୀତି-ଧର୍ମିତାକୁ ପ୍ରାଧାନ୍ୟ ଦେଇଛନ୍ତି । କବିଙ୍କ ଜୀବନ ଧାରାରେ ପରିବର୍ତ୍ତନ ସହିତ କବିତାରେ ପରିବର୍ତ୍ତନ ଆସିଛି । ସେହି ଅନୁସାରେ କବିତାର ଆଙ୍ଗିକ ରୂପ ମଧ୍ୟ ବଦଳିଛି । କବିଙ୍କର ସାମ୍ୟବାଦୀ କବିତାର ଆଙ୍ଗୀକ ରୀତି ଯଥା- ଶବ୍ଦନିର୍ବାଚନ, ଚିତ୍ରକଳ୍ପ, ପ୍ରତୀକ ପ୍ରୟୋଗ ଆଧ୍ୟାତ୍ମିକ କବିତା ବେଳକୁ ଭିନ୍ନରୂପ ଗ୍ରହଣ କରିଛି । ସେହିପରି ଭିନ୍ନ ଭିନ୍ନ ଭାବର କବିତା ପାଇଁ କବିଙ୍କର ଭାଷା ବ୍ୟବହାର ଶୈଳୀ ଭିନ୍ନଭିନ୍ନ ରୂପ ଧାରଣ କରିଛି । ଯଦିଓ କବି ଶ୍ରୀଯୁକ୍ତ ପ୍ରସନ୍ନ ପାଢଶାଣୀ ଏଲିଅଟ୍ ଓ ସଚ୍ଚିଦାନନ୍ଦ ରାଉତରାୟଙ୍କ ଦ୍ୱାରା ପ୍ରବର୍ତ୍ତିତ ପାଶ୍ଚାତ୍ୟ କାବ୍ୟ ଶୈଳୀକୁ ଗ୍ରହଣ କରିଛନ୍ତି , ତଥାପି ସେ ପ୍ରାଚ୍ୟ-କାବ୍ୟଶୈଳୀକୁ ଛାଡି ପାରିନାହାନ୍ତି । ତେଣୁ କବି ଓଡିଶାର ଅଗଣିତ ପାଠକ ସମାଜ ଆଗରେ ପ୍ରାଚ୍ୟ ଓ ପାଶ୍ଚାତ୍ୟ କାବ୍ୟ ଶୈଳୀର ସଂଯୋଗ ସେତୁ ରୂପେ ଠିଆ ହୋଇ ରହିଛନ୍ତି ।

# ପଞ୍ଚମ ପରିଛେଦ

# ଉପସଂହାର

ସତୁରୀ ଦଶକରୁ ଏ ପର୍ଯ୍ୟନ୍ତ ଓଡିଆ କବିତାର ଉତ୍ତରଣ ପର୍ଯ୍ୟାୟରେ କବି ପ୍ରସନ୍ନ ପାଟଶାଣୀଙ୍କ କାବ୍ୟକୃତିକୁ ବିଚାର କରି ଦେଖାଯାଏ, ତାଙ୍କ କବିତା ପାଠକମାନଙ୍କୁ ଏକ ନୂତନ ତଥା ଭିନ୍ନ ସ୍ୱାଦର ଅନୁଭବ ପ୍ରଦାନ କରିଛି । ଏହି ସମୟରେ ଯେଉଁ ସବୁ କବିମାନେ ପାଶ୍ଚାତ୍ୟ କାବ୍ୟସ୍ୱର ଭିତରେ ସମ୍ପୂର୍ଣ୍ଣ ଭାବେ ବୁଡି ନ ରହି ନିଜସ୍ୱ ବିଚାରଧାରାକୁ ସଜୀବ କରାଇଥିଲେ, ସେମାନଙ୍କ ମଧ୍ୟରୁ କବି ପ୍ରସନ୍ନ ପାଟଶାଣୀ ହେଉଛନ୍ତି ଅନ୍ୟତମ । ସେ ତାଙ୍କ କବିତାରେ ସରଳତା ଓ ମୌଳିକତାର ଅନୁବର୍ତ୍ତନ କରି ଓଡିଶାରେ ବିପୁଳ ପାଠକ ଗୋଷ୍ଠୀ ସୃଷ୍ଟିକରିଛନ୍ତି । ତାଙ୍କ କବିତା ସବୁ ଶ୍ରେଣୀର ଲୋକଙ୍କ ହୃଦୟରେ ଆଦୃତ ହୋଇଛି । ଓଡିଆ କାବ୍ୟ ପରମ୍ପରାରେ କବି ଏକ ଅସାଧାରଣ କବିତ୍ୱର ସ୍ୱାକ୍ଷର ବହନ କରିଛନ୍ତି । ତିନି ଦଶନ୍ଧି ଧରି ତାଙ୍କର ବିଭିନ୍ନ କବିତା ସଙ୍କଳନ ଓଡିଆ କାବ୍ୟ ସାହିତ୍ୟକୁ ଋଦ୍ଧିମନ୍ତ କରିଛି । ଏହି ପ୍ରସଙ୍ଗରେ କବିଙ୍କ କାବ୍ୟସୃଷ୍ଟି ସମ୍ପର୍କରେ କବି ତଥା କାବ୍ୟ ଆଲୋଚକ ସୀତାକାନ୍ତ ମହାପାତ୍ର ତାଙ୍କର 'ଦୀପ୍ତି ଓ ଦ୍ୟୁତି' ପୁସ୍ତକରେ ଯାହା କହିଛନ୍ତି ତାହା ଯଥାର୍ଥ ମନେ ହୁଏ । 'କବି ପାଟଶାଣୀ ମଣିଷର ବେଦନାକୁ ଯେଉଳି ଭାବରେ ଆମୃଷ କରିଛନ୍ତି , ସେହିପରି ମଧ୍ୟ ଆକାଶର ଗ୍ରହ ନକ୍ଷତ୍ର, ସବୁଜବିଲ, ବନଝରଣା ଓ ପାହାଡ ତାଙ୍କ ସୃଷ୍ଟିରେ ପ୍ରାଣବନ୍ତ ହୋଇପାରିଛି । ରୂପମୟ ଏଇ ଜଗତ, ଜୀବନ ଓ ଜୀବନାତୀତର ଏକ ଆଶ୍ଚର୍ଯ୍ୟ ଆଲେଖ୍ୟ ଆଙ୍ଗିକ ଉପସ୍ଥାପନରେ ଏବଂ ବକ୍ତବ୍ୟ ଓଡିଆ ସାହିତ୍ୟରେ ତାଙ୍କର ଏକାନ୍ତ ନିଜସ୍ୱ ଓ ଅଭିନବ । ଏକ ସଙ୍ଗେ ଜୀବନ ଓ ମହାଜୀବନର ପ୍ରତିଛବି ।''(୧)- ମହାପାତ୍ର, ସୀତାକାନ୍ତ- ଦୀପ୍ତି ଓ ଦ୍ୟୁତି । ମୁଖଶାଳା ଲିପି । ପୃଷ୍ଠା-୨ ଅଣା । କବି ସୀତାକାନ୍ତ ମହାପାତ୍ରଙ୍କର କବି ପ୍ରସନ୍ନ ପାଟଶାଣୀଙ୍କ କାବ୍ୟସୃଷ୍ଟି ସମ୍ପର୍କିତ ଉକ୍ତିରେ ସତ୍ୟତା ବହୁପରିମାଣରେ ରହିଛି ।

ଓଡିଶାରେ ଜଣେ ପ୍ରସିଦ୍ଧ ତଥା ଲୋକପ୍ରିୟ କବି ଭାବରେ ପ୍ରସିଦ୍ଧି ପାଇଁ ତାଙ୍କର ଘଟଣା ବହୁଳ ବିଚିତ୍ର ଅନୁଭୂତି ପୂର୍ଣ୍ଣ ଜୀବନ ଓ କାବ୍ୟ ଦୃଷ୍ଟିର ଗଭୀରତାହିଁ ଦାୟୀ । ଜୀବନଯାପନର ପ୍ରବହମାନତାରେ କବି ମାନସର କିଭଳି ପରିବର୍ତ୍ତନ ହୁଏ, ତାହାର ଏକ ଜ୍ୱଳନ୍ତ ଦୃଷ୍ଟାନ୍ତ ହେଉଛନ୍ତି କବି ପ୍ରସନ୍ନ ପାଟଶାଣୀ । ନକ୍ସଲପନ୍ଥୀଠାରୁ ଆରମ୍ଭ କରି ସନ୍ନ୍ୟାସୀ ହେବା ପର୍ଯ୍ୟନ୍ତ ପୁଣି ସନ୍ନ୍ୟାସରୁ ରାଜନୀତିର ସିଂହାସନ ଯାଏ ବହୁ ବିଚିତ୍ର ତଥା ବର୍ଣ୍ଣିଳ ଅଭିଜ୍ଞତାରେ ତାଙ୍କର କବିତ୍ୱ ପରିପୁଷ୍ଟ । ସେହି ସବୁ ଅଭିଜ୍ଞତା ଓ ଅନୁଭବର ମୂର୍ତ୍ତରୂପ ହେଉଛି ତାଙ୍କର ସମସ୍ତ କବିତା ।

ପ୍ରସନ୍ନ ପାଟଶାଣୀଙ୍କ କବିତାର କାବ୍ୟିକ ବିବର୍ତ୍ତନ ଧାରାଟି ତାଙ୍କ ଭଳି ବହୁରୂପି ଜୀବନଚର୍ଯ୍ୟା ଯୋଗୁଁ ସମ୍ଭବ ହୋଇଛି । ଦଣ୍ଡକାରଣ୍ୟରେ ପୋଲିସକୁ ଲୁଚିଲୁଚି ଅଜ୍ଞାତବାସରେ ସମୟ ବିତାଉଥିବା

କବିଙ୍କର କାବ୍ୟମାନସ, ଚିଲିକାର ନୀରବତାର ଓଁକାର ଖୋଜୁଥିବା କାବ୍ୟଚେତନାଠାରୁ କେତେ ଅଲଗା ? ଯେଉଁ କବି ଜଣେ ବିପ୍ଳବୀହୋଇ ତାଙ୍କର ସାମ୍ୟବାଦୀ କାବ୍ୟ ସ୍ୱରରେ ନିଆଁ ଝୁଲ ହୋଇ ଝରି ପଡନ୍ତି । ସେହି ପୁଣି ଭାରତର ମୁନିଋଷିମାନଙ୍କର ସାଧନାସ୍ଥଳୀ ହିମାଳୟର ଗୁମ୍ଫା ଭିତରେ ବସି ଆମକୁ ଗୈରିକ କବିତ୍ୱର ଧ୍ୱନି ଶୁଣାଇଛନ୍ତି । ଦିନେ କବିଙ୍କ କାବ୍ୟିକ ଚେତନାରେ ଥିବା ରକ୍ତାକ୍ତ ବିପ୍ଳବ ଆଧ୍ୟାତ୍ମିକ ବିପ୍ଳବ ଭିତରେ ନିଜର ଲକ୍ଷ୍ୟ ସାଧନର ଉପାୟ ଖୋଜିଛି ।

କବିଙ୍କ ଭିତରେ ଥିବା ବିଭୁଚେତନା ତାଙ୍କୁ ଅଧିକରୁ ଅଧିକ ସୌନ୍ଦର୍ଯ୍ୟ ଦୃଷ୍ଟି ପ୍ରଦାନ କରିଛି । ପ୍ରକୃତି ପ୍ରେମ ଓ ନାରୀର ଚିରନ୍ତନତା ଉପରେ ସେ ଗଭୀର ବିଶ୍ୱାସ ରଖିଛନ୍ତି । ଭାବରାଜ୍ୟରେ ନୈରାଶ୍ୟର ସୀମାରେଖା ଡେଇଁ ପ୍ରଣୟର ସିଂହାସନରେ ନିଜକୁ ଅଭିଷିକ୍ତ କରିଛନ୍ତି । ଫଳରେ କାବ୍ୟ ଚେତନାରେ ରୋମାଣ୍ଟିକ ଭାବ ସାର୍ଥକଭାବେ ଫୁଟି ଉଠିଛି । ପ୍ରକୃତି ଭିତରେ ଜୀବନର ଛବି ପ୍ରତିଫଳିତ ହୋଇଥିବା ଲକ୍ଷ୍ୟ କରିଛନ୍ତି । ଏହି ପ୍ରସଙ୍ଗରେ ବିଶିଷ୍ଟ କାବ୍ୟ ଆଲୋଚକ ଡକ୍ଟର ନିତ୍ୟାନନ୍ଦ ଶତପଥୀ କବିଙ୍କ କାବ୍ୟସୃଷ୍ଟି ଉପରେ ଦେଇଥିବା ମତ ଉଦ୍ଧାର କରାଯାଇପାରେ । "ପ୍ରକୃତି ଭିତରେ ସେ ଯେଉଁ ନିଗୂଢ ରସତତ୍ତ୍ୱକୁ ଉନ୍ମୋଚିତ କରିଛନ୍ତି । ତାହା ବୋଧେ ଏବେକାର କବି ଏତେ ନିଷ୍ଠାର ସହିତ ସମାପନ କରିନାହାନ୍ତି ।" (୨) - ପାଢଶାଣୀ ପ୍ରସନ୍ନ- ଆକାଶର କାଠଗଡାରେ ବନ୍ଦୀ ସୂର୍ଯ୍ୟଙ୍କୁ ଜେରା । (ମୁଖବନ୍ଧ- ଡକ୍ଟର ନିତ୍ୟାନନ୍ଦ ଶତପଥୀ ) ବାସ୍ତବରେ ଏହାର ସତ୍ୟତା କବିଙ୍କର ସ୍ୱୈରବାଦୀ କବିତା ଗୁଡିକରୁ ପ୍ରତିପାଦିତ ହୁଏ । ସାମୟିକ ଭାବରେ ଦୁର୍ଘଟଣା ଜନିତ ଅନ୍ଧତ୍ୱ ଭିତରେ ପ୍ରେମ ଓ ଈଶ୍ୱରଙ୍କୁ ପ୍ରତୀକ୍ଷା କରିବାର ନିବିଷ୍ଟତା ମଧ୍ୟରେ ସ୍ୱୈରବାଦୀ କବିତାଗୁଡିକ ମୁଖରିତ ।

କବିଙ୍କର ମାନବବାଦୀ କବିତା ଗୁଡିକରେ ବିଶ୍ୱମାନବପ୍ରତି କବିର ଦରଦୀହୃଦୟ ସହିତ ଏକ ସାର୍ବଜନୀନ ଭାବାନୁଭୂତି ପରିଦୃଷ୍ଟ ହୋଇଛି । ବିଧାନ ସଭା ଗୃହରେ ବ୍ୟଙ୍ଗାତ୍ମକ କବିତା ପଢି ଶାସକ ଦୃଷ୍ଟିକୁ ଜନସାଧାରଣଙ୍କ ହିତପାଇଁ ଆକର୍ଷିତ କରିବା ଓ ଶାସକର ଛଦ୍ମତାକୁ ଦର୍ଶାଇବା କବିଙ୍କର ଏକ ଅଭିନବ ପ୍ରକ୍ରିୟା । ଏହାର ରଚନା ତାତ୍କାଳିକ । କବି ନିଜେ ବିଧାୟକ ଥିବାରୁ ତାଙ୍କ ପାଇଁ ଏହା ସମ୍ଭବପର ହୋଇପାରିଛି । ଏହାରି ଭିତରେ ତାଙ୍କର ସାମ୍ୟବାଦୀ ଚେତନା ଓ ମାନବବାଦୀ ଦୃଷ୍ଟିଭଙ୍ଗୀର ଏକ ବିବର୍ତ୍ତିତ ରୂପକୁ ଲକ୍ଷ୍ୟ କରାଯାଇଛି । ଏଠାରେ ସେ ଅଗଣିତ ନିଷ୍ପେଷିତ ଜନତାର ଅନ୍ତରର ପ୍ରତିଧ୍ୱନି ହୋଇଠିଆ ହୋଇଛନ୍ତି ଜଣେ ମାନବବାଦୀ କବିଭାବରେ ତାଙ୍କ କବିତା ଭିତରେ ।

କେଉଁଠି କବି ବେଳେବେଳେ Rational Reality କୁ ଡେଇଁ ଯାଉଥିଲେ ମଧ୍ୟ ବାସ୍ତବତାର ବିରୋଧ କରିନାହାନ୍ତି । ବୌଦ୍ଧିକ ଜଟିଳତାରେ ତାଙ୍କ କବିତା ଭାରାକ୍ରାନ୍ତ ନୁହେଁ । ସରଳତା ଦ୍ୱାରା ତାଙ୍କ ବୌଦ୍ଧିକ କାବ୍ୟଚିନ୍ତା ବଳୟ ଉଦ୍‌ଭାସିତ । ବିଶ୍ୱ ଜୀବନ ସହିତ ବ୍ୟକ୍ତି ଜୀବନ ଯୋଡି ହୋଇଯାଏ । ତାଙ୍କ କବିତାକୁ ଗୋଟିଏ ଦିଗରୁ Art for Art shake କୁହାଗଲେ ଅନ୍ୟ ଦିଗରୁ Art for life shake ମଧ୍ୟ କୁହାଯିବ । କବିତାରେ ଜୀବନ ଓ କଳାର ବାସ୍ତବ ସମନ୍ୱୟ ଘଟାଇଛନ୍ତି କବି । ଏକ ମିଶ୍ରିତ ଆବେଗରେ ତାଙ୍କ କବିତା ଗୁଡିକ ପାଠକୀୟ ଆବେଦନକୁ ବହୁଗୁଣିତ କରିଛି । କବି ପାଢଶାଣୀଙ୍କ କବିତାର କାବ୍ୟିକ ବିବର୍ତ୍ତନ ପୂର୍ବରୁ ଆଲୋଚିତ ହୋଇ ଆସିଥିବା ସମସ୍ତ କାବ୍ୟ ସତ୍ୟକୁ ସ୍ୱୀକାର କରେ ।

ଯୁଗ ବା ସମୟର ଆବଶ୍ୟକତା ଅନୁସାରେ କବିଙ୍କର କାବ୍ୟ କୃତିକୁ ଆଲୋଚନା କରାଯାଇଛି । ନଚେତ୍ ପ୍ରସନ୍ନ ପାଟଶାଣୀଙ୍କ କାବ୍ୟକୃତି, କାବ୍ୟମାନସର ଆଶା ଓ ଜୀବନ ପ୍ରତି ସମର୍ପିତ ମନୋଭାବକୁ ପାଠକ ଆତ୍ମୀୟଭାବ ଯୋଗେ ଉପଲବ୍ଧି କରିବା ଆବଶ୍ୟକ । ପରିଶେଷରେ ଶ୍ରବଣ ଓ ହୃଦୟ ଉଭୟ ଆଧାରରେ ସାଧାରଣ ପାଠକଠାରୁ ବୌଦ୍ଧିକ ପାଠକ ପର୍ଯ୍ୟନ୍ତ ସମସ୍ତଙ୍କୁ ପ୍ରସନ୍ନ ପାଟଶାଣୀଙ୍କ କବିତା ଆନନ୍ଦ ପ୍ରଦାନ କରିଥାଏ ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ ।

## ପୁରସ୍କାର / ଡିଗ୍ରୀ / ଡିପ୍ଲୋମା / ଅଭିନନ୍ଦନ ଓ ଅନ୍ୟାନ୍ୟ

କବି ପ୍ରସନ୍ନ ପାଟଶାଣୀ ତାଙ୍କ ଯୁବକ ଅବସ୍ଥାରୁ ଆନ୍ଦୋଳନ ଓ ସଂଘର୍ଷ ମଧ୍ୟରେ ବୁଡ଼ି ରହିଥିଲେ ମଧ୍ୟ ୧୯୬୯ ମସିହାରେ ଆଇନ୍‌ରେ ଦ୍ୱିତୀୟ ଶ୍ରେଣୀରେ ସେ ଉତ୍ତୀର୍ଣ୍ଣ ହୋଇଛନ୍ତି । ଘରୋଇ ଭାବେ ପବ୍ଲିକ୍ ଆଡମିନିଷ୍ଟ୍ରେସନ୍‌ରେ ସ୍ନାତକ ଡିଗ୍ରୀ ହାସଲ କରିଛନ୍ତି । ୧୯୮୪ ମସିହାରେ 'ପୃଥିବୀରୁ ଅପରାଧ ପ୍ରବଣତା ହ୍ରାସ' ସମ୍ପର୍କରେ ସନ୍ଦର୍ଭ ଲେଖି ସୁଇଜରଲ୍ୟାଣ୍ଡ ମହର୍ଷି ଇଉରୋପିୟାନ ରିସର୍ଚ୍ଚ ଇଉନିଭରସିଟି ତରଫରୁ ଡି.ଏସ୍.ସି. ସମ୍ମାନ ଲାଭ କରିଛନ୍ତି । ୧୯୮୮ ମସିହାରେ ''ପୂର୍ବ ଭାରତୀୟ ରାମାୟଣରେ ଲୋକ ପରମ୍ପରାର ଚିତ୍ର'' ଶୀର୍ଷକ ନିବନ୍ଧ ଲେଖି ଉତ୍କଳ ବିଶ୍ୱବିଦ୍ୟାଳୟରୁ ଡି.ଲିଟ୍. ଉପାଧି ପାଇଛନ୍ତି । ୧୯୯୧ ମସିହାରେ OXFORD UNIVERSITY ପକ୍ଷରୁ କବି 'Messenger of Peace' ବା 'ଶାନ୍ତିଦୂତ'ଉପାଧି ଲାଭ କରିଛନ୍ତି । ଏହି ଉପାଧି ପାଇବାରେ କବି ହେଉଛନ୍ତି ଓଡ଼ିଶାର ପ୍ରଥମ ବ୍ୟକ୍ତି । ୧୯୯୨ ମସିହାରେ କଲିକତାର ମହାବୋଧି ସୋସାଇଟି ତରଫରୁ 'ସାହିତ୍ୟ ସେତୁ' ପୁରସ୍କାରରେ କବି ପୁରସ୍କୃତ ହୋଇଛନ୍ତି । ହିନ୍ଦୀଦୈନିକ ପତ୍ରିକା 'ରୂପଲେଖା' ତରଫରୁ କବିଙ୍କୁ 'ରୂପଲେଖା ହିନ୍ଦୀ ସେବା ପୁରସ୍କାର' ୧୯୯୨ ମସିହାରେ ପ୍ରଦାନ କରାଯାଇଛି । ଏତଦ୍ ବ୍ୟତୀତ ତାଙ୍କ କବିତାର ସାମଗ୍ରିକ କୃତି ଉପରେ 'ଗୋକର୍ଣ୍ଣିକା' ଓଡ଼ିଆ ସାହିତ୍ୟ ପତ୍ରିକା ତରଫରୁ କବି ୧୯୯୨ ମସିହାରେ 'ଗୋକର୍ଣ୍ଣିକା ସମ୍ମାନ ଓ ସମ୍ବର୍ଦ୍ଧନା' ଲାଭ କରିଛନ୍ତି । ୧୯୯୪ ମସିହା ଜୁଲାଇ ୧୩ ତାରିଖରେ ଶ୍ରୀଲଙ୍କାର କଲମ୍ବୋସ୍ଥିତ ବନ୍ଦର ନାୟକ ଆନ୍ତର୍ଜାତିକ ସ୍ମାରକୀ ସମ୍ମିଳନୀ ଭବନଠାରେ ଏକ ବିଶ୍ୱ ବୃତ୍ତିଗତ ସାମାଜିକ କର୍ମୀ ସମ୍ମିଳନୀ ଅନୁଷ୍ଠିତ ହୋଇଥିଲା । ଏଥିରେ କବି ''ପୂର୍ବ ସହ ପାଶ୍ଚାତ୍ୟର ମିଳନ : ଏକ ବିଂଶ ଶତାବ୍ଦୀ'' ଶୀର୍ଷକ ଏକ ପ୍ରବନ୍ଧ ପାଠ କରିଥିଲେ । ସେଠାରେ କବିଙ୍କର ଏହି ପ୍ରବନ୍ଧଟି ଉଚ୍ଚ ପ୍ରଶଂସିତ ହେବା ସଙ୍ଗେ ସଙ୍ଗେ ତାଙ୍କୁ ସ୍ୱର୍ଣ୍ଣପଦକ ଓ ମାନପତ୍ର ପ୍ରଦାନ ପୂର୍ବକ ସମ୍ମାନିତ କରାଯାଇଥିଲା । କବିଙ୍କର ଭାରତୀୟ ସାହିତ୍ୟ ଓ ସଂସ୍କୃତି ପ୍ରତି ଯଥେଷ୍ଟ ଅବଦାନ ଯୋଗୁଁ ସେ ୧୯୯୨ ମସିହାରେ ଭୁବନେଶ୍ୱରର ଅଗ୍ରଣୀ ସାମାଜିକ ଓ ସାଂସ୍କୃତିକ ଅନୁଷ୍ଠାନ 'ଜନନୀ ସେବାସଦନ' ତରଫରୁ ମାନପତ୍ର ଓ ଉପଢୌକନ ଦ୍ୱାରା ସମ୍ବର୍ଦ୍ଧିତ ହୋଇଛନ୍ତି । କବିଙ୍କର ଶ୍ରେଷ୍ଠ କବିତା ସଙ୍କଳନ 'ଦେଖା ହେଲେ କହିବି ସେକଥା' ପାଇଁ ସେ ୧୯୯୨ ମସିହାରେ 'ଓଡ଼ିଶା ସାହିତ୍ୟ ଏକାଡେମୀ ପୁରସ୍କାର ଲାଭ କରିଛନ୍ତି ।'

# ପାଚେରୀ

ଅଳ୍ପିଷ ସଳିତ, ର ଅଙ୍କୁରନ୍ତ ତାରୁଣ୍ୟର ହସ ବୋଲା ଗୀତ ଜନାରେ ଜନ୍ମୋ ତାରୁଣ୍ୟର ଅଳିଷ ସଳିତା. ଭାଷ ଅନୁଭୂତି ର ତାରୁଣ୍ୟର ରକ୍ତ

ଦେହ କାନ୍ଥରୁ ଚୂନ ଖସିଲା ଇଟା ଦିଶିଲା ବସ୍ତ୍ର କାନିଲା ମରଣ ଟିତା ଅପରାଜିତା ଅପରାଜିତା

ପାଚେରୀ ଦେହରେ ଜୀବନ ବୋଲି ସ୍ପୁରୁକ ଗୁଟିଲା ରକ୍ତଚିତ୍ରା। ଅନ୍ଧାର ହେଲା ମୋ'ଗାଁ ତୋଟା।

ପାଚେରୀ ଦେହେ ଲେଖିଲା କିଏ

ହଟା ହଟା ନାଜିବାଦ୍
ଫୁଟା ୪ ସମାଜବାଦ



ଭୋଟ ଅର୍ଜନ
ମୁକ୍ତି ଅର୍ଜନ

ପୁଞ୍ଜିବାଦ ମୁର୍ଦାବାଦ



ସାମ୍ୟବାଦ ଜିନ୍ଦାବାଦ-



ସଶସ୍ତ୍ର ବିପ୍ଳବୀ
ପକା କଦମ

ମାର୍କସ୍‌ବାଦ୍, ଲେନିନ୍‌ବାଦ୍,

ଲେଖିଲା କିଏ ପାଚେରୀ ଦେହେ

